ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈ ପ୍ରଭୁଦତ୍ତେନ ମାଳା 'ଭଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

[ଦ୍ୱିପଞ୍ଚାଶଦ୍ ଖଣ୍ଡ]

ଲେଖକ

ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ

ଶ୍ରୀ ଭଗବାନ ପଣ୍ଡା

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

# ଭାଗବତ କଥା—୫୩

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୯୬

ମୁଦ୍ରଣ :
ଟେକନ୍ ସର୍ଭିସେସ୍, ଏଣ୍ଡ ପ୍ରିଣ୍ଟୋଗ୍ରାଫିକ୍ସ, କଟକ

ମୂଲ୍ୟ : ଟ. ୩୦.୦୦

**BHAGABAT KATHA**

Sri Prabhudatta Brahmachari

Principal Adviser:
Sri R.P. Misra

Publisher:
Sri N.P. Misra
Cuttack Students' Store
Balubazar, Cuttack-753002

First Edition-1996

Printing:
TEKON Services & Printographics, Cuttack

Price: Rs. 30.00



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

# ସୂଚୀ

# ଭୂମିକା

# ଭକ୍ତର ଭଗବାନ

ନା ହମାତ୍ମାନମାଶାସେ ମଦ୍‌ଭକ୍ତୈଃ ସାଧୁଭିର୍ବିନା ।
ଶ୍ରିୟଂ ଚାୟନ୍ତିକୀଂ ବ୍ରହ୍ମନ୍ ଯେଷାଂ ଗତିରହଂ ପରା ॥ ★

[ଶ୍ରୀଭା. ୯ମ ସ୍କ. ୪ଅ. ୬୪ ଶ୍ଳୋକ]

### ଛପ୍‌ପୟ

ଜୋ ଜଗ କୋ ତଜି ନେହ ନେହ ହରି ମାହିଁ ଲଗାବେ ।
ଉନକୁଁ ମୋହନ ମଦନ ପ୍ରେମ କରିକେ ଅପନାବେ ॥
ସବ କୁଛ ବେ ବନି ଜାୟଁ ସଗେ ସମ୍ବନ୍ଧୀ ଭ୍ରାତା ।
ସେବକ, ସ୍ୱାମୀ, ସଖା, ସୁହୃଦ, ସୁତ, ପତି, ପିତୁ ମାତା ॥
ସରନାଗତ କେ ସକଲ ଦୁଖ, ସବ ବିଧିତୈ ଶ୍ରୀହରି ହରେ ।
ଲୋକ ଔର, ପରଲୋକକେ, ସବ କାରଜ ବେଶ କରେ ॥

ଜୀବର କୌଣସି ଏକ ଆଶ୍ରୟ ଆବଶ୍ୟକ । ଗାଁମାନଙ୍କରେ ସରକାରଙ୍କ ତରଫରୁ ଜଣେ ପ୍ରହରୀ ବା ଚୌକିଦାର ଥାଆନ୍ତି । ଚୌକୀଦାରକୁ ମାସିକ ବେତନ କେତେ ମିଳୁଥିବ ? ଏଇ ଦଶ ପଚିଶ ଟଙ୍କା । କିନ୍ତୁ ସେ ପାଇଥାଏ ଏକ ରାଜକୀୟ ଅଧିକାର । ଏହି ଅଧିକାର ବଳରେ ସେ ବଳୀୟାନ । ସେ ଅଧରାତିରେ ବି ନିର୍ଭୟରେ ବୁଲାଚଲା କରେ । ଲୋକମାନେ ତାକୁ ଡରନ୍ତି । ତା'ର ଏଇ ସାହସ, ପ୍ରଭାବ- ଏ ସବୁ ତା' ନିଜର ନୁହେଁ, ସେ ଯାହା କରେ ରାଜ୍ୟସରକାରଙ୍କ ବଳରେ ହିଁ କରୁଥାଏ । କାରଣ ତା' ପଛରେ ଶକ୍ତିଶାଳୀ ରାଜ୍ୟସରକାର ଅଛି, ଯିଏ ତାକୁ ସର୍ବତୋଭାବେ ରକ୍ଷା କରିବ ବୋଲି ତା'ର ବିଶ୍ୱାସ ଥାଏ । ଜଣେ ବଡ଼ ଧନୀ ଲୋକ ଯଦି ଆମକୁ କହେ, ''ତୁମେ ଚିନ୍ତାକର ନାହିଁ । ଯାହା ଯାହା ଦରକାର ସବୁ

---



| | | | |
|---|---|---|---|
| ମୁଁ ଯେ ଭକତ ପରାଧୀନ | । | ମୋ ତହୁଁ ଭକ୍ତ ନୋହେ ଭିନ୍ନ | ॥ |
| ସାଧୁଙ୍କ ହୃଦେ ମୁଁ ସେବଇ | । | ତାଙ୍କ ଭକତ ଭାବ ବହି | ॥ |
| ଯେ ପଶେ ମୋହର ଶରଣେ | । | ସମ୍ପଦ ତୁଚ୍ଛ ପ୍ରାୟ ମଣେ | ॥ |
| ଦାରା ମନ୍ଦିର ସୁତ ଧନ | । | କେବେହେଁ ନ କଳେ ତା ମନ | ॥ |
| ମୋ ତହୁଁ ନ ଜାଣନ୍ତି ଆନ | । | ମୁହିଁ ତାହାଙ୍କର ଅଧୀନ | ॥ |

[ଭାଗବତ : ଜଗନ୍ନାଥ ଦାସ : ୯ମ ସ୍କନ୍ଧ. ୪ର୍ଥ ଅ.]

ମୁଁ ଦେବି।'' ସେତେବେଳେ ଆମକୁ ସତେ କେଡ଼େ ଆଶ୍ୱସ୍ତ ନ ଲାଗେ ! ଆମେ ନିଶ୍ଚିନ୍ତ ହୋଇଯାଉ। ଆମର ସାହସ ବଢ଼ିଯାଏ। ପରେ ସେହି ଧନୀ ଲୋକ ହୁଏତ ଆମକୁ ସାହାଯ୍ୟ ନ କରି ପାରେ, କିନ୍ତୁ ଆମକୁ ପ୍ରଥମେ ଚିନ୍ତାଶୂନ୍ୟ ତ କରିଦିଏ। ଯେତେବେଳେ ଏପରି ଅଳ୍ପାୟୁ, ସ୍ୱଳ୍ପସାମର୍ଥ୍ୟ ଥିବା ସଂସାରୀ ଧନୀଙ୍କ, ଶାସକଙ୍କ କଥାରେ ଆମେ ବଳୀୟାର, ନିର୍ଭୟ ତଥା ନିଶ୍ଚିନ୍ତ ହୋଇଯାଇ ପାରୁଛେ, ଯିଏ ସମସ୍ତଙ୍କର ଈଶ, ଚରାଚର ସ୍ୱାମୀ ଧେଣ୍ଡୁରା ପିଟି କହୁଛନ୍ତି- ''ତୁମେମାନେ ସବୁ ଛାଡ଼ିଦିଅ, ମୋର ଶରଣ ଗ୍ରହଣକର, ମୁଁ ସମସ୍ତ ଦୁଃଖ ଦୂର କରିଦେବି, ତୁମେ ସାମାନ୍ୟମାତ୍ର ଚିନ୍ତା କରନାହିଁ।'' ଆମେ କିନ୍ତୁ ତାହା ଶୁଣୁ ନଥାଉ। ଭଗବାନଙ୍କର ଏପରି ଓଜପୂର୍ଣ୍ଣ ବାଣୀକୁ ଆମେ ବିଶ୍ୱାସ କରୁନାହେଁ, ଫଳରେ ଆମେ ଭକ୍ତିମାର୍ଗର ବହୁ ଦୂରରେ ହିଁ ରହିଛେ। ଭଗବାନ କହୁଥାନ୍ତି- ''ମୋତେ ସମସ୍ତ ଭୂତର ସୁହୃଦ୍ ବୋଲି ଗ୍ରହଣ କଲେ ତୁମେ ପରମଶାନ୍ତି ପାଇପାରିବ।''

ଭକ୍ତିମାର୍ଗରେ ନିଜର କର୍ତ୍ତବ୍ୟ ବୋଲି କିଛି ରହେନାହିଁ କି ନିଜପାଇଁ ପୁରୁଷାର୍ଥ ନଥାଏ। ଯଦି କର୍ତ୍ତବ୍ୟ ବୋଲି କିଛିଥାଏ, ତାହା ହେଉଛି ନିଜ ଇଷ୍ଟ ପାଇଁ କର୍ମ କରିବା। ଯଦି କିଛି ପୁରୁଷାର୍ଥ ଥାଏ ତାହା ହେଉଛି ନିଜର ଯୋଗକ୍ଷେମର ଚିନ୍ତାକୁ ସର୍ବାତ୍ମଭାବରେ ତାଙ୍କ ଉପରେ ନ୍ୟସ୍ତ କରିଦେବା। ଭଗବାନଙ୍କୁ ଆପଣାର କରିଦେବା। ତାଙ୍କ ସହିତ ନିଜକୁ ଭଲଲାଗୁଥିବା ଭଳି କୌଣସି ପ୍ରକାର ଏକ ସମ୍ବନ୍ଧ ସ୍ଥାପନ କରିଦେବା। ଭଗବାନ ଏଡ଼େ ସରଳ ଯେ, ତାଙ୍କୁ ଯିଏ ପିତା କରେ ସେ ପିତା ହୋଇଯାଆନ୍ତି, ମାତା କଲେ ମାତା ହୋଇଯାଆନ୍ତି; ଏପରିକି ଭାଇ, ବନ୍ଧୁ, ସଖା, ସୁହୃଦ, ସୁତ ତଥା ପତ୍ନୀ ବି ହୋଇଯାଆନ୍ତି। ଦାର୍ଢ୍ୟତାଭକ୍ତି ତଥା ଭକ୍ତମାଳାରେ ଏପରି ଅନେକ କଥା ଅଛି। ସେଇ କଥା ଭିତରେ ଗୋଟିଏ ବୁଢ଼ୀର କଥା ଅଛି।

ବୁଢ଼ୀଟି ବାଳଗୋପାଳଙ୍କୁ ପୁଅ କରିଥାଏ। ପୁଅଭଳି ଦେଖାଶୁଣା କରେ। ସକାଳୁ ଉଠିବାକ୍ଷଣି ବାଳଗୋପାଳଙ୍କ ମୁହଁ ହାତ ଧୋଇ ଦିଏ। ଲହୁଣୀ ଆଣି ଖୁଆଏ। ବସ୍ତୁତଃ ସେ ଗୋପାଳଙ୍କ ସହିତ ନିଜ ଘର ଅଗଣାରେ ଖେଳେ, କଥାବାର୍ତ୍ତା କଳିତକରାଳ ବି କରେ। ବୁଢ଼ୀ ଯଦି ତରକାରି ପତ୍ର, ଭଜାଭଜି ନ କରେ ତେବେ ଗୋପାଳ ତା' ଉପରେ ଚିଡ଼୍‌ଚିଡ଼୍ ହୁଅନ୍ତି। ବୁଢ଼ୀ ରାଗେ। ଗୋପାଳଙ୍କୁ ଏଣୁ ତେଣୁ କହେ। କହେ, 'ମୁଁ ବୁଢ଼ୀ ହେଲିଣି। ତୁ ତ ରୋଜଗାର ପତ୍ର କରୁନାହୁଁ, ମୋତେ ଖାଲି ଦୁଃଖ ଦେବାରେ ଲାଗିଛୁ। ମୁଁ ଯାହା ରୋଷେଇ କରିଛି ତୋତେ ତାହା ହିଁ ଖାଇବାକୁ ପଡ଼ିବ। ଏହିଭଳି ମା'-ପୁଅଙ୍କ ଭିତରେ ପ୍ରତିଦିନ ପ୍ରେମ-କଳହ ଚାଲିଥାଏ। ଦିନକର କଥା। ବୁଢ଼ୀ ଶୁଣିଲା ତା' ଗାଁକୁ ଗୋଟିଏ ପିଲାଖିଆ ଗଧିଆବାଘ ପଶି ଆସିଛି। ଦିନ ତମାମ ଗାଁ ପାଖ ଜଙ୍ଗଲରେ ରହୁଛି। ନିଛାଟିଆ ସମୟରେ, ଆଉ ନିସ୍ତବ୍ଧ ରାତିରେ ଛୋଟ ଛୋଟ ପିଲାଙ୍କୁ ନେଇ ଖାଉଛି। ବାସ୍ ! ଏତିକି ଶୁଣିବା ପରଠାରୁ ବୁଢ଼ୀକୁ ଦେଖ ! ତା' ଗୋପାଳ ତ ଛୋଟ ବାଳକ, ପୁଣି ଭାରି ନଟଖଟିଆ। ବୁଢ଼ୀ ଆଉ ରାତିରେ ନ ଶୁଏ। ଠେଙ୍ଗାଟିଏ ଧରି ରାତିସାରା ଘରେ ଜଗିବସିଥାଏ। ଏପରି କେତେଦିନ ଗଲା। ବୁଢ଼ୀର ଏପରି କଷ୍ଟ ଭଗବାନ ଅବା ସହନ୍ତେ କେତେ। ସେ ଜଣେ ଗ୍ରାମୀଣ ଲୋକର ବେଶ ଧରି ବୁଢ଼ୀପାଖକୁ ଆସିଲେ, ଆଉ କହିଲେ, ''ମା ! ତୁମେ କ'ଣ ଜାଣିନାହଁ, ସେଇ ପିଲାଖିଆ ଗଧିଆକୁ ଲୋକମାନେ ମାରିଦେଇଛନ୍ତି। ଆଉ ଗଧିଆ ଭୟ ନାହିଁ। ମୋ କଥାକୁ ବିଶ୍ୱାସ କର।'' ଏହା ପରଠାରୁ ବୁଢ଼ୀ ଟିକିଏ ନିଶ୍ଚିନ୍ତ ହେଲା, ଆଉ ରାତିରେ ଶାନ୍ତିରେ ଶୋଇପାରିଲା।

କଥାଟି ଅତି ପୁରୁଣା । କିନ୍ତୁ ଏଥିରେ ଥିବା ଭାବ ହେଉଛି ନିତ୍ୟ । ଏବେ ବି ଏପରି ଭକ୍ତ ଅଛନ୍ତି, ଭବିଷ୍ୟତରେ ଏପରି ଅନେକ ଭକ୍ତ ବି ହେବେ ।

ଏଇ ଅଳ୍ପଦିନ ତଳର କଥା । ବରେଲୀରେ ବୁଢ଼ୀଟିଏ ଥିଲା । ସେ ବି ବାଳଗୋପାଳଙ୍କୁ ପୂଜା କରିଥାଏ । ଗୋପାଳ ତା' ଘରେ ଖେଳନ୍ତି, ବୁଢ଼ୀ ସହିତ କଥାବାର୍ତ୍ତା କରନ୍ତି । ଆମ ପ୍ରୟାଗରେ ଜଣେ ସୁନାମଧନ୍ୟା ମହିଳା ଥିଲେ । ତାଙ୍କ ନାମ ଯଶୋଦା ଦେବୀ । ଯଶୋଦା ଦେବୀ ସେ ବୁଢ଼ୀର ଦୂର ସମ୍ପର୍କୀୟା ଥିଲେ । ଏବେ ସେ ମରିଗଲେଣି ।

ବୁଢ଼ୀ ଓ ଗୋପାଳ ବରେଲୀରେ ଥାଆନ୍ତି । ମକର ସଂକ୍ରାନ୍ତିରେ ତ୍ରିବେଣୀ ସ୍ନାନ କରିବା ପାଇଁ ଥରେ ବୁଢ଼ୀର ମନ ହେଲା । ତେଣୁ ସେ ତା' ଗୋପାଳଙ୍କୁ କହିଲା, 'ଦେଖ ! ମୁଁ ପ୍ରୟାଗ ସ୍ନାନ ପାଇଁ ଯିବି । ତୁ ଘରେ ରହିବୁ । ସେଠି ବହୁତ ଭିଡ଼ ହେବ । ତୁ ଗଲେ ଚିପି ହୋଇଯିବୁ ।'

ଏପରି କଥା ଶୁଣି ଗୋପାଳ କହିଲେ, ''ନାଇଁ ନାଇଁ ମା ! ମୁଁ ବି ଯିବି । ମୁଁ ଏଠି ରହିବି ନାହିଁ ।''

ବୁଢ଼ୀ କହିଲା, ''ତୁ ଏମିତି ଜିଦି କରନା । ତୋ'ର ଏଇ ଜିଦି ଯୋଗୁଁ ମୁଁ ହୀନସ୍ତା ହେଉଛି । ମୋ କଥା ଶୁଣ ।''

ଗୋପାଳ କିନ୍ତୁ ନଛୋଡ଼ବନ୍ଧା । ତାଙ୍କର ଏକା ଜିଦ୍ ସେ ଯିବେ । ତେଣୁ ସେ କହିଲେ, ''ମୁଁ ତ ନିଶ୍ଚୟ ଯିବି । ମୁଁ ନିଶ୍ଚେ ସ୍ନାନ କରିବି ।''

ବୁଢ଼ୀ ବିରକ୍ତ ହୋଇ କହିଲା, ''ତୁ ମୋ ପଛରେ କାହିଁକି ଲାଗିଛୁ । ମୁଁ ତୋତେ କଦାପି ନେବି ନାହିଁ ।'' ଏପରି କହି ବୁଢ଼ୀ ତା' ଘରପୂଜା ପାଇଁ ଜଣଙ୍କୁ ଦାୟିତ୍ୱଦେଇ ପ୍ରୟାଗ ଉଦ୍ଦେଶ୍ୟରେ ଘରୁ ବାହାରିପଡ଼ିଲା । ସେ ଘୋଡ଼ାଗାଡ଼ିରେ ବସିଗଲା । କିଛି ବାଟ ଆସିଛି, ଦେଖିଲା, ତା' ଗୋପାଳ ଗାଡ଼ି ପଛେ ପଛେ ଦୌଡ଼ୁଛି । ବୁଢ଼ୀ ଗୋପାଳଙ୍କୁ ଦେଖି ପାଟି କରିବାରେ ଲାଗିଲା, 'ଆରେ ତୁ କୁଆଡ଼େ ଆସୁଛୁ । ଖାଲି ପାଦରେ ତୋତେ ଦୌଡ଼ିବାକୁ କିଏ କହିଲା ? ପଳା ଘରକୁ ।' ଏପରି ପାଟି କରିକରି ବୁଢ଼ୀ ଅଧୀରା ହୋଇଗଲା । ସେ ଗାଡ଼ିକୁ ଅଟକାଇଲା । ଗାଡ଼ି ରହିବା ଦେଖି ଗୋପାଳ ସଙ୍ଗେ ସଙ୍ଗେ ଦୌଡ଼ି ଚମ୍ପଟ । ଏଥର ଗାଡ଼ି ଚାଲିଲା । କିଛି ବାଟ ଯିବାପରେ ବୁଢ଼ୀ ଦେଖିଲା ଗୋପାଳ ପୁଣି ଗାଡ଼ି ପଛେ ପଛେ ଦୌଡ଼ିବାରେ ଲାଗିଛି । ବୁଢ଼ୀ ପୁଣି ପାଟିକରିବାରେ ଲାଗିଲା । ଅନ୍ୟ ସହଯାତ୍ରୀମାନେ ଏ ଦୃଶ୍ୟ ଦେଖିପାରୁ ନଥିଲେ । ବୁଢ଼ୀର ପାଟି ଶୁଣୁଥିଲେ । ଆଉ ଭାବୁଥିଲେ, ବୁଢ଼ୀ ମିଛରେ ଏମିତି ପାଟିତୁଣ୍ଡ କରୁଛି । ତେଣୁ କେହି ଗାଡ଼ିକୁ ରଖିବାକୁ ଦେଲେନାହିଁ । ଘୋଡ଼ାଗାଡ଼ି ଷ୍ଟେସନରେ ରହିଲା । ଯାତ୍ରୀମାନେ ରେଳଗାଡ଼ିରେ ଚଢ଼ିଲେ । ବୁଢ଼ୀ ରେଳଗାଡ଼ିରେ ଚଢ଼ିବାକୁ ଯାଉଛି, ଦେଖିଲା, ତା' ଗୋପାଳ ରେଳଡବାର ଦୁଆର ମୁହଁରେ ଠିଆହୋଇ ମୁରୁକି ମୁରୁକି ହସୁଛନ୍ତି । ବୁଢ଼ୀ କୌଣସିପ୍ରକାର ଗୋପାଳଙ୍କୁ ଧରିପକାଇ କୋଳରେ ବସାଇଦେଲା । ଗାଡ଼ି ଯଥାସମୟରେ ପ୍ରୟାଗରେ ପହଞ୍ଚିଲା । ବୁଢ଼ୀ ଯାଇ ଯଶୋଦାଦେବୀଙ୍କ ଘରେ ରହିଲା ।

ପରଦିନ ତ୍ରିବେଣୀ ଘାଟକୁ ଯିବାପାଇଁ ବୁଢ଼ୀ ଟାଙ୍ଗାରେ ବସିଲା । ଯେତେପ୍ରକାର ଡାକିଲେ ବି ଗୋପାଳ ଟାଙ୍ଗାରେ ବସିଲେ ନାହିଁ । ସେ ଟାଙ୍ଗା ପଛେ ପଛେ ଦୌଡ଼ିଲେ । ବୁଢ଼ୀ ବିରକ୍ତରେ

ଗଜର ଗଜର ହେଉଥାଏ । ଗୋପାଳକୁ ଏଣୁତେଣୁ ଗାଳି ଦେଉଥାଏ । ବୁଢ଼ୀର ମୁଣ୍ଡ ବୋଧେ ଖରାପ ହୋଇଯାଇଛି ବୋଲି ପାଖ ଲୋକମାନେ ଭାବୁଥାଆନ୍ତି ।

ତ୍ରିବେଣୀରେ ପହଞ୍ଚିବା କ୍ଷଣି ବୁଢ଼ୀ ଗୋପାଳକୁ ଧରିପକାଇଲା । ତାଙ୍କୁ ଗାଧୋଇ ପୋଛାପୋଛି କରି କୂଳରେ ଠିଆ କରାଇଦେଲା । ଆଉ କହିଲା, ‘‘ପାଣିକୁ ଆସିବୁ ନାହିଁ। ସେଇଠି ସେଇମିତି ଠିଆ ହୋଇଥିବୁ ।’’ ଏପରି କହି ବୁଢ଼ୀ ସ୍ନାନ କରିବାରେ ଲାଗିଲା । ହେଲେ ତା’ ଆଖି ଗୋପାଳକୁ ଜଗିଥାଏ । ଅଳ୍ପ ସମୟ ଯାଇଛି କି ନାହିଁ ଗୋପଳ ଡାକ ପକାଇଲେ, ‘‘ମା ! ମୋତେ ଭୋକ ଲାଗୁଛି ।’’ ବୁଢ଼ୀ ରାଗିଯାଇ କହିଲା, ‘‘ଓଃହ ! ମୋତେ ବହୁତ ହୀନସ୍ତା କଲାଣି ଏଇଟା ! ଆରେ, ଏଠି ତୋ ପାଇଁ ଖାଇବାକୁ କୁଆଡୁ ଆଣିବି ?’’

ଗୋପାଳ କହିଲେ, ‘‘ମା ! ଏଠି ଜିଲାପି ମିଳୁଛି । ମୋ ପାଇଁ ଆଣିଦେ ।’’

ବୁଢ଼ୀ ବିଚାରୀ କରେ କ’ଣ ? ସେ ତା ସାଥିଙ୍କ ଭିତରୁ ଜଣଙ୍କ ହାତରେ ପଇସା ଦେଇ କିଛି ଜିଲାପି ଆଣିଦେବା ପାଇଁ କହିଲା । ସେତେବେଳେ ଅଣାକରେ (ବର୍ତ୍ତମାନର ଛ’ ପଇସା) ପାଏ (ବର୍ତ୍ତମାନର ୨୫୦ଗ୍ରାମ୍‌ରୁ କିଛି ଅଧିକା) ଜିଲାପି ମିଳୁଥିଲା । ସାଥୀ ଲୋକଜଣକ ଗରମ ଗରମ ଜିଲାପି ଆଣିଦେଲେ । ସେହି ଜିଲାପିକୁ ଦେଖି ଗୋପାଳ କହିଲେ, ‘‘ନାଇଁ ନାଇଁ ! ମୁଁ ଏ ଜିଲାପି ଖାଇବି ନାହିଁ। ଏଗୁଡ଼ାକ ପୋଡ଼ା ତେଲରେ ଛଣା ହୋଇଛି ।’’ ବୁଢ଼ୀ ପୋଡ଼ାତେଲ କ’ଣ ଜାଣେନାହିଁ। ସେ ତା’ ସାଥୀ ଭଦ୍ରଲୋକଙ୍କୁ କହିଲା, ‘‘ଭାଇ ! ଏଇଟା ମୋତେ ବଡ଼ ହୀନସ୍ତା କଲାଣି । ମୋ ଗୋପାଳ ପୋଡ଼ାତେଲରେ ଛଣା ହୋଇଥିବା ଜିଲାପି ଖାଇବନାହିଁ ବୋଲି କହୁଛି । ଭାଇ ! ଭଲ ଘିଅରେ ଛଣା ହୋଇଥିବା ଜିଲାପି ଦୟାକରି ଆଣି ଦିଅନ୍ତ ନି !’’

ସାଥୀ ଲୋକଟି ଅନେକ ଖୋଜାଖୋଜି କରିବା ପରେ ଶୁଦ୍ଧ ଘିଅରେ ତିଆରି ଜିଲାପି ଧରି ଆସିଲା । ଲୋକମାନେ ଭାବୁଥିଲେ, ବୁଢ଼ୀର ଜିଲାପି ଖାଇବାକୁ ମନହେବାରୁ ଏପରି ଅଭିନୟ କରୁଛି । ଜିଲାପି ଆସିଯିବାରୁ ଲୋକମାନେ ବୁଢ଼ୀକୁ ଘେରି ବସିଗଲେ । ବୁଢ଼ୀ ଜିଲାପିକୁ ତା’ ଗୋପାଳ ପାଖରେ ଥୋଇଦେଇ କହିଲା, ‘‘ଆଉ ହୀନସ୍ତା କରନା ! ନେ, ଜିଲାପି ଖା ।’’ ବାସ୍ । ଏତିକି କହିଛି କି ନାହିଁ, ପତର ଠୋଲା ଥିବା ଜିଲାପି ସହସା ଅଦୃଶ୍ୟ ହୋଇଗଲା । ଠୋଲାଟି ପଡ଼ି ରହିଲା । ବୁଢ଼ୀ ଗୋପାଳକୁ ଜିଲାପି ଖୁଆଇ ତାଙ୍କୁ ଧରି ବସାଘରକୁ ଫେରିଆସିଲା । ଲୋକମାନେ ଏହି ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ତ ହୋଇଯାଇଥିଲେ, ସେମାନେ ପ୍ରଥମ ଆସିଥିବା ଜିଲାପିର ଦୋକାନକୁ ଯାଇ ଅନୁସନ୍ଧାନ କରି ଜାଣିଲେ ଯେ ଦୋକାନୀ ପୋଡ଼ା ତେଲରେ ସେହି ଜିଲାପି ତିଆରି କରିଥିଲା । ଏଥିରେ ସେମାନଙ୍କର ଆଶ୍ଚର୍ଯ୍ୟର ସୀମା, ରହିଲାନାହିଁ।

ଏଇ କଥାଟି ମନଗଢ଼ା ନୁହେଁ କି ଅତି ପୁରୁଣା ନୁହେଁ। ଏହି ଘଟଣା ଦେଖିଥିବା ଲୋକ ଏବେ ବି କେତେକ ଜୀବିତ ଥାଇପାରନ୍ତି । ଏପରି ଏକ ଘଟଣା ଏବେ ବି ଘଟିଛି ।

ଝାନ୍‌ସୀ ପାଖରେ ଲଳିତପୁର ଗ୍ରାମ । ସେଠାରେ ଲାଲା ବିହରିୟା ନାମରେ ଜଣେ ସାଧୁ ରହୁଥିଲେ । ତାଙ୍କର ପ୍ରକୃତ ନାମ କିନ୍ତୁ ରାମଚନ୍ଦ୍ର ଦାସ । ତାଙ୍କର ଏପରି ନାମ ପଛରେ ଗୋଟିଏ ଇତିହାସ ଅଛି । ରାମଚନ୍ଦ୍ର ଦାସଙ୍କର ଗୋଟିଏ ଅତି ଯୋଗ୍ୟ ପୁଅ ଥିଲା । ଅସମୟରେ

ତା'ର ମୃତ୍ୟୁ ହୋଇଗଲା। ଏଥିରେ ତାଙ୍କୁ ଦୁଃଖ ହେବା ସ୍ୱାଭାବିକ୍ କଥା। ଏହାପରଠାରୁ ସେ ଭଗବାନ୍‌ଙ୍କୁ ନିଜର ପୁଅ ବୋଲି ମାନିବାରେ ଲାଗିଲେ। ସେ କୁଞ୍ଜବିହାରୀଙ୍କୁ ନିଜର ପୁତ୍ରରୂପେ ଗ୍ରହଣ କରିନେଲେ ଆଉ ସ୍ନେହରେ ତାଙ୍କୁ ବିହରିୟାଲାଲା ବୋଲି ସମ୍ବୋଧନ କରିବାରେ ଲାଗିଲେ। ଏଇଥିରୁ ତାଙ୍କୁ ଲୋକମାନେ ବିହରିୟାଲାଲାବାବା ରୂପେ ଚିହ୍ନିବାରେ ବି ଲାଗିଲେ। ବିହାରୀ ତାଙ୍କ ସହିତ ପ୍ରତ୍ୟେକ୍ଷରେ କଥୋପକଥନ କରନ୍ତି ବୋଲି ଆଖପାଖ ଲୋକମାନେ ଧାରଣା କରିଥାଆନ୍ତି। କେତେକ ବୈଷ୍ଣବ ସାଧୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ବାବାଙ୍କ କୁଟୀରରେ ଦିନ ଦିନ ଧରି ରହି ତାଙ୍କର ପ୍ରତ୍ୟେକ ଦିନର ଦିନଚର୍ଯ୍ୟା ବି ଦେଖିଛନ୍ତି। ସେମାନଙ୍କଠାରୁ ଜଣାଗଲା ଯେ ଭଗବାନ୍ କୁଞ୍ଜବିହାରୀ ବାବାଙ୍କର ପୁତ୍ରରୂପେ ତାଙ୍କୁ ଆନନ୍ଦପ୍ରଦାନ କରୁଛନ୍ତି। ବାବା ରାତିରେ ଶୋଇବା ସମୟରେ କୁହନ୍ତି, ''ଆରେ ବିହାରୀ ! ତୋ'ର ଟିକିଏ ବୋଲି ମୋ ପ୍ରତି ଦୟା ହେଉ ନାହିଁ! ମୁଁ ପରା ବୁଢ଼ା ହୋଇଗଲିଣି। ତୁ ତୋ ଗୋଡ଼ ଦି'ଟାକୁ ମୋ ପେଟ ଉପରେ ଲଦି ଦେଲେ କିମିତି ହେବ। ଟିକିଏ ଗୋଡ଼ କାଢ଼ି ଦେ। ମୁଁ ଟିକିଏ ଶୋଇପଡ଼େ।'' ଯେଉଁ ବୈଷ୍ଣବ ସାଧୁ ପରୀକ୍ଷା ନିମନ୍ତେ ଯାଇ କୁଡ଼ିଆ ବାହାରେ ଶୋଇଥାନ୍ତି ସେମାନେ ବାବାଙ୍କର ଏପରି କଥା ଶୁଣିବାର ପରମୁହୂର୍ତ୍ତରେ ନୂପୁରର ରୁଣୁଝୁଣୁ ଶବ୍ଦ ଶୁଣନ୍ତି ଓ ବିହାରୀ ବାବାଙ୍କ ପେଟ ଉପରୁ ଗୋଡ଼ କାଢୁଥିବା ଜାଣନ୍ତି।

ବାବାଙ୍କୁ ଶୋଷ ହେଲେ ସେ ବିହାରୀଙ୍କୁ— ପୁଅକୁ, ପାଣି ମାଗିବା ଭଳି ପାଣି ମାଗନ୍ତି ଓ ପାଣି ପିଅନ୍ତି। ତାଙ୍କର ଯାହା ଦରକାର ପଡ଼େ ସେ ପୁଅକୁ କୁହନ୍ତି। ଦିନକର କଥା। ବାବା କହିଲେ, ''ଏଇ ବୁଢ଼ା ଦିନରେ ମନ ବି କିପରି ହେଉଛି। ଆଜି ଖାଲି ରୁଟି କଞ୍ଚାମରିଚ ସହିତ ଖାଇବାକୁ ମନହେଉଛି। ଯେଉଁଦିନ ଯାହା ମନହେଉଛି ମୋ ପୁଅ ମୋତେ ତାହା ଆଣିଦେଉଛି। ହେଲେ ପୁଅ ଭାରି ଦୁଷ୍ଟ।'' ଏତିକି ବେଳେ ଜଣେ ଲୋକ ସେଠାରେ ପହଞ୍ଚିଲା, ଆଉ କହିଲା, ''ବିହରିୟାଲାଲା ! ଆଜି ଆମ ଘରେ ଆପଣ ପ୍ରସାଦ ପାଇବେ। ଖାଲି ରୁଟି, ଆଉ କଞ୍ଚାମରିଚ ଆଚାର ଆପଣଙ୍କୁ ଭୋଜନ ଦେବୁ।'' ବାବା କହିଲେ, ''ଆଜି ମୋ'ର ପରା ଏୟା ଖାଇବାକୁ ମନହେଉଛି।''

ଶ୍ରୀମଦ୍‌ଭାଗବତରେ ଶ୍ରୀ ଭଗବାନ୍ ନିଜେ କହିଛନ୍ତି, ''ଯେଷାମହଂ ପ୍ରିୟ ଆତ୍ମା ସୁତଶ୍ଚ''– ଅର୍ଥାତ୍, ଯିଏ ମୋର ଅନନ୍ୟ ଭକ୍ତ ତାଙ୍କର ମୁଁ ଗୁରୁ, ଆତ୍ମା, ପୁତ୍ର, ସବୁ। ବିହରିୟାଲାଲା ଏହା ଜାଣି ତାଙ୍କୁ ନିଜର ପୁଅ କରିନେଇଥିଲେ। ମୀରାଙ୍କର ବି ଲୌକିକ ପତି ଯେତେବେଳେ ମରିଗଲେ, ସେ କହିଥିଲେ, ''ଯିଏ ଜନ୍ମ ହୁଏ ଓ କେବେ ମରିଯାଏ ଜାଣିପାରେ ନାହିଁ, ସେପରି ବିନାଶଶୀଳଙ୍କୁ ପତି ମାନିବା କ'ଣ? ଯିଏ କେଭେ ବି ମରନ୍ତି ନାହିଁ, ଅବିନାଶୀ ହୋଇଥାନ୍ତି, ମୁଁ ତାଙ୍କୁ ମୋର ପତି କରିଛି।''

ମହାତ୍ମା ବିହରିୟାଲାଲ ମଧ୍ୟ ପୁତ୍ରଶୋକରେ ଅସହ୍ୟ ଯନ୍ତ୍ରଣା ଭୋଗ କରୁଥିବାବେଳେ କହିଥିଲେ, ''କୁଞ୍ଜବିହାରୀ ହିଁ ମୋ ନୟନର ପିତୁଳା। ତାଙ୍କ ଭଳି ପୁଅ କେବେ ମରେନାହିଁ କି ଜନ୍ମ ହୁଏ ନାହିଁ। ଯିଏ ତାଙ୍କୁ ଅଜ-ଅମର ବୋଲି ଜାଣେ ସେ କଦାପି ମରଣଶୀଳ ନିଜର ପୁଅପାଇଁ ବ୍ୟାକୁଳ ହୁଏନାହିଁ। ପୁତ୍ର ହିଁ ଆତ୍ମାସ୍ୱରୂପ ବୋଲି ଲୋକରେ ପ୍ରଚଳିତ। ଦୀନଜନ-ପ୍ରତିପାଳକ ହିଁ ପ୍ରକୃତ ସୁଖଦାତା।

ସମସ୍ତ ସୁଖର ଉତ୍ସସ୍ୱରୂପ ଭଗବାନଙ୍କୁ ଯେ ପୁତ୍ର ଭାବେ ଗ୍ରହଣକରେ ତାକୁ କେବେହେଲେ ସୁଖର ଅଭାବ ହୁଏନାହିଁ। ତେଲିକୁ ନିଜର ପତିରୂପେ ଗ୍ରହଣ କଲେ ତେଲର ଅଭାବ

ଘଟେ କି? ବିହରିୟାଲାଲ ମୋ'ର ପୁଅ ହୋଇଗଲା ପରେ ଆଉ ଦୁଃଖ ଭୋଗିବାର ପ୍ରଶ୍ନ ହିଁ ଉଠେନାହିଁ।

ବିହରିୟାଲାଲ ଖୁବ୍ ସମ୍ଭବତଃ ମଥୁରାର ଅଧିବାସୀ ଥିଲେ। କୌଣସି କାରଣରୁ ବୁଲି ବୁଲି ଲଳିତପୁରରେ ଆସି ରହିଯାଇଥିଲେ। ତାଙ୍କ ନିଜ ଭାଷାରେ ସେ କହିଛନ୍ତି, ''ମୁଁ ମଥୁରା ରାଜଧାନୀର ଅଧିବାସୀ। ଜାତିରେ ସାରସ୍ୱତ ବ୍ରାହ୍ମଣ। ମୋର ଇଷ୍ଟ ହେଉଛନ୍ତି ରାଧାରାଣୀ। ଜ୍ଞାନ ଶ୍ରୀ ଗଣେଶ ମୋର ଗୁରୁ।'' ଏଥିରୁ ଜଣାଯାଏ ଶ୍ରୀରାଧା ହିଁ ତାଙ୍କର ଇଷ୍ଟଦେବୀ ଥିଲେ। କୁଞ୍ଜବିହରିୟା ଥିଲେ ତାଙ୍କର ପୁତ୍ର ଓ ଆଦରର ଧନ। କୁଞ୍ଜବିହାରୀଙ୍କ ସମ୍ବନ୍ଧରେ ସେ କବିତା ରଚନା କରିଛନ୍ତି। ଗୋଟିଏ କବିତାରେ ସେ ଇଷ୍ଟଦେବୀ ଶ୍ରୀରାଧାଙ୍କ ମହିମା ପ୍ରତିପାଦନ କରିବାକୁ ଯାଇ କହିଛନ୍ତି, ''ବୃନ୍ଦାବନବାସିନୀ ଶ୍ରୀରାଧାହିଁ ମୋର ଇଷ୍ଟଦେବୀ। ସେହି ଶ୍ରୀରାଧା ଶାରଦାଦି ବନ୍ଦନୀୟା, ଦୁଃଖ-କ୍ଲେଶ-ବିନାଶିନୀ-ସୁନନ୍ଦିନୀ, ସୁନ୍ଦରୀରତିସ୍ୱରୂପିଣୀ, ରାମଚନ୍ଦ୍ର ଦାସ କୀର୍ତ୍ତିରୂପା, କାଳନ୍ଦୀକୂଳବିହାରିଣୀ, ପାପପୁଞ୍ଜବିନାଶିନୀ, ପ୍ରମୋଦ କୁଞ୍ଜପ୍ରକାଶିନୀଙ୍କୁ ଛାଡ଼ି, ରେ ମୂର୍ଖ ମନ! ତୁ କାହିଁକି ମଦମୋହଗ୍ରସ୍ତା କୁନାରୀ ସେବାରେ ମାତିଛୁ?''

ରସିକ ରସର ହିଁ ଉପାସନା କରେ। ସେ ସରସ ଓ ଗୁଣଗ୍ରାହୀ ଭାବେ ପରିଚିତ। ବିହରିୟାଲାଲା ସେହି ଭଳି ଜଣେ ମହାପୁରୁଷ ଥିଲେ। ନିଜ କୁଡ଼ିଆରେ ଗୋଟାଏ ବଡ଼ ଆକାରରେ ଶେଯ ସେ ରଖିଥାଆନ୍ତି। ତା' ଉପରେ ଏକ ବିରାଟ ମାଣ୍ଡି ରଖାଯାଇଥାଏ। ଜ୍ଞାନମାର୍ଗରେ ଧ୍ୟାନ ଓ ଭକ୍ତିମାର୍ଗରେ ଜ୍ଞାନକୁ ମୁଖ୍ୟ ସାଧନ ରୂପେ ଗ୍ରହଣ କରାଯାଏ। ଆମର ଏଇ ବିହରିୟାଲାଲା ବଡ଼ ସଙ୍ଗୀତ ଅନୁରାଗୀ ଥିଲେ। ଯେ କୌଣସି ଗାଇବାବାଲା ବା ନାଚିବାବାଲା ଆସିଲେ ସେ କହନ୍ତି, ''ହଁ, ଆମର 'ଲାଲାକୁ ଗୀତ ଶୁଣାଅ ଓ ନାଚ ଦେଖାଅ। ଆମ ଲାଲା ବି ସବୁଠୁଁ ବଡ଼ ନାଚୁଆ ଓ ଗାୟକ।'' ଯେ ଆସି ନାଚେ ବା ଗାଏ ତାକୁ ପାଞ୍ଚଟଙ୍କା ପାରିତୋଷିକ ଦିଅନ୍ତି। ସେହି ଗଦି ତଳୁ ଟଙ୍କା ବାହାରକରି ଦିଅନ୍ତି। ସେ ଟଙ୍କା କେଉଁଠୁ ଆସେ ତା' କାହାରିକୁ ଜଣା ନାହିଁ। ସାଧାରଣ ନାଚ ଗୀତାବାଲାଙ୍କ ବ୍ୟତୀତ ଅନେକ ବେଶ୍ୟା ମଧ ସେଠାକୁ ଯାଇ ନାଚ-ଗୀତ ପରିବେଷଣ କରନ୍ତି। ଲାଲାକୁ ଗୀତ ଶୁଣାଉଥିବାରୁ ସେମାନଙ୍କୁ ମଧ ଉପଯୁକ୍ତ ପାରିତୋଷିକ ମିଳେ। କେତେକ କ୍ଷେତ୍ରରେ ବେଶ୍ୟାମାନଙ୍କ ନିମିତ୍ତ ନିୟମିତ ସେଇ ପାଞ୍ଚଟଙ୍କା ବ୍ୟବସ୍ଥା କରାଯାଇଥାଏ।

ଶୁଣାଯାଏ, ଥରେ ଜଣେ ଅଦ୍ୱୈତ ବେଦାନ୍ତୀ ସେଠାକୁ ଆସିଥିଲେ। ସେ ବିହରିୟାଲାଲାଙ୍କ ଉପାସନା ବିଷୟରେ ଆଦୌ ଚିନ୍ତା ନ କରି ଅଦ୍ୱୈତଦର୍ଶନର ଉପଦେଶ ଦେବା ଆରମ୍ଭ କରିଦେଲେ। ବହୁ ସମୟ ପର୍ଯ୍ୟନ୍ତ ସେ ବେଦାନ୍ତର ସିଦ୍ଧାନ୍ତ ପ୍ରତିପାଦନ କରିଥିଲେ ଏବଂ ସେ ସମସ୍ତ ଲାଲା ମଧ ଶୁଣୁଥିଲେ। ସେହି ବେଦାନ୍ତୀ ପଣ୍ଡିତ ବହୁ ଆଗ୍ରହର ସହିତ ଲାଲାଙ୍କୁ କିଛି ଉତ୍ତର ଦେବା ପାଇଁ ବାଧ କରିବାରୁ, ସେ ସ୍ୱାଭାବିକ ରୀତିରେ କହିଲେ, ''ମୁଁ ବେଦ ଜାଣେନି କ ଭେଦ ଜାଣେନି। ମୁଁ କେବଳ ପ୍ରେମରେ ପଡ଼ିଯାଇଛି। କ'ଣ କରିବି? ତୁମ ସହିତ ଆଗରୁ ଯଦି ମୋର ସାକ୍ଷାତ ହୋଇଥାଆନ୍ତା, ଏ କାଳିଆ କୁଞ୍ଜବିହାରୀ ମୋତେ ଆଉ ଏତେ ଦୁଃଖ ଦେଉ ନଥାନ୍ତା। ଗାରୁଡ଼ି ମନ୍ତ୍ର ନ ଜାଣି ମଧ ମୁଁ ପୂର୍ଣ୍ଣ ଭରସା ରଖି ସେହି ବିହାରୀ କାଳିଆକୁ ଧରିବାରେ ଲାଗିଛି। ତୁମ ସହିତ ପ୍ରଥମରୁ ଦେଖା ହୋଇଥିଲେ ଏ କାଳିଆ ମୋତେ ଦଂଶନ କରି ନଥାନ୍ତା। ମୋର ଗୁରୁ ଶ୍ରୀଗଣେଶ ମହାରାଜ ମୋର

ଦୁରାବସ୍ଥା ଜାଣି ଦୟା କରିଛନ୍ତି। ତାଙ୍କରି କୃପାରୁ ମୁଁ ଭବ ଭୁଜଙ୍ଗଙ୍କୁ ତ୍ୟାଗ କରି ଏହି କାଳିଆ ଭୁଜଙ୍ଗଙ୍କୁ ଆଶ୍ରୟ କରିଛି। ତେଣୁ ଅବିଦ୍ୟା, ଜ୍ଞାନ ଓ ଅଭିମାନ ତ୍ୟାଗ କରି ପ୍ରତିଦିନ ବିହାରୀଙ୍କ ଜୟଗାନ କରୁଛି। ଭାଇ! କୁଞ୍ଜିବିହାରୀ ରୂପକ କଳା ସାପ ମୋତେ ଦଂଶନ କରିଛି। ସାଧାରଣ ସାପକାମୁଡ଼ା ବିଷ ଦୂର କରିବା ପାଇଁ ନାନା ପ୍ରକାର ତନ୍ତ, ମନ୍ତ, ଯନ୍ତ, ଚେରମୂଳ ରହିଛି। କିନ୍ତୁ କଳାସାପର ବିଷ ଝାଡ଼ିବା ପାଇଁ କୌଣସି ଔଷଧ ନାହିଁ। ସେହି କୃଷ୍ଣସର୍ପ ଦଂଶନ ପୂର୍ବରୁ ଯଦି ତୁମ୍ଭ ସହିତ ମୋର ସାକ୍ଷାତ ସମ୍ଭବ ହୋଇଥାନ୍ତା, ତେବେ ତୁମର ଏହି ଅଦ୍ୱୈତ ଜ୍ଞାନକୁ ମୁଁ ସ୍ୱୀକାର କରିଥା'ନ୍ତି।

ଉପର୍ଯ୍ୟୁକ୍ତ ଗାଥା ଦୁଇଟି ସେହି ଲାଲାଜୀ ମୁହେଁ ମୁହେଁ ଗାଇଥିବାରୁ ଲେଖିବା ଲୋକ ସମ୍ଭବତଃ ପୂରା ଲେଖିପାରି ନାହିଁ। ତେଣୁ, ସେଥିରେ ଛନ୍ଦ ଦୋଷ ରହିଯାଇଛି। କିନ୍ତୁ, ତାଙ୍କର ଅନ୍ୟାନ୍ୟ କବିତା ସବୁ ଶୁଦ୍ଧଭାବପୂର୍ଣ୍ଣ ଓ ଅତ୍ୟନ୍ତ ଉଚ୍ଚକୋଟୀର। ବାଙ୍କ ବିହାରୀଙ୍କ ଦର୍ଶନକାଳୀନ ଅବସ୍ଥାକୁ ଲକ୍ଷ୍ୟକରି କହିଛନ୍ତି।—

''ହେ ବାଙ୍କବିହାରୀ! ତୁମର ବିଶାଳ ଲୋଚନ, ଭାଲଦେଶ ରକ୍ତତିଳକଶୋଭିତ, ଶିରୋଦେଶ ଚନ୍ଦ୍ରିକା ମଣ୍ଡିତ, କର୍ଣ୍ଣଦ୍ୱୟ କୁଣ୍ଡଳ ଯୁକ୍ତ ଅଧରଦ୍ୱୟ ହାସରଞ୍ଜିତ ଓ ପୂର୍ଣ୍ଣଚନ୍ଦ୍ର ତୁଲ୍ୟ, ମୁଖମଣ୍ଡଳ ରାମଚନ୍ଦ୍ରର ମନ ଆକାଶକୁ ଆଚ୍ଛନ୍ନ କରିଛି। ତୁମର ଏ ଅପରୂପ ଶୋଭା ମୂର୍ଖ ଓ ଅଚେତନ ଚିତ୍ତରେ ପ୍ରତିଫଳିତ ହୁଏ ନାହିଁ। ଯେଉଁ ଲୋକ ଯୁକ୍ତିତର୍କ କରେ ତା'ର ଇହକାଳ ଓ ପରକାଳରେ ସୁଖୀ ହୋଇପାରେ ନାହିଁ। ''କୁଞ୍ଜବିହାରୀଙ୍କ ପ୍ରତି ଅନୁରାଗ ହିଁ ପ୍ରକୃତ ଅନୁରାଗ ଓ ପ୍ରକୃତ ଜ୍ଞାନ ଓ ସମ୍ଭବତଃ ଏହା କୁଞ୍ଜବିହାରୀଙ୍କୁ ପୁତ୍ରଭାବେ ସ୍ୱୀକାର କରିବା ପୂର୍ବର ରଚନା। ଆଉ ଏକ କବିତାରେ ସେ କହିଛନ୍ତି—

''କୁଞ୍ଜବିହାରୀଙ୍କର ଜୟ ହେଉ। କରୁଣାସାଗର କୁଞ୍ଜିବିହାରୀଙ୍କୁ ସର୍ବଦା ସ୍ମରଣ କର। ଧନ ଦୌଲତ ବଳରେ ଲୋକ ଦେଶ ବିଦେଶ ଭ୍ରମଣ କରେ। ପଣ୍ଡିତ, ମୁଲ୍ଲା ସାଜି ଲୋକ, କୁକୁର ଭଳି, ଅସ୍ଥିରଭାବେ ବୁଲି ବୁଲି ନିଜର ପୌଢ଼ି ପ୍ରକାଶ କରେ। ହରି ଚିନ୍ତାମଣି ଆଦି ନାମ ଦେଇ ବିଭିନ୍ନତା ସୃଷ୍ଟି କରେ। କେବଳ ସେତିକି ନୁହେଁ, ସାଧାରଣ ଲୋକଙ୍କୁ ମଧ ସେମାନେ ଭଗବାନଙ୍କ ନାମରେ ହିଁ ବହୁଭାବରେ ପ୍ରତାରଣା କରନ୍ତି। ଯେ ଏକରେ ଅନେକ ଓ ଅନେକରେ ଏକ ସେହି କୁଞ୍ଜିବିହାରୀଙ୍କ ଜୟ ହେଉ।''

ଯେତେବେଳେ ଘର ଛାଡ଼ିଦେଲେ ଆଉ କୁଞ୍ଜବିହାରୀଙ୍କୁ ପୁତ୍ରରୂପେ ଗ୍ରହଣ କଲେ ସେତେବେଳେ ସେ କହିଥିଲେ, ''ଆଜି ମୁଁ ସମସ୍ତ ପ୍ରକାର ଭୟଠାରୁ ଦୂରରେ। ତୁ ହିଁ ମୋର ଶତ୍ରୁ, ମିତ୍ର ଓ ପ୍ରାଣସ୍ୱରୂପ।''

ବିହରିୟାଲାଲ୍ ବହୁ କବିତା ରଚନା କରିଛନ୍ତି। ସେଗୁଡ଼ିକ ଅଦ୍ୟାବଧି ମୁଦ୍ରିତ ହୋଇ ନାହିଁ। ଶ୍ରୀ ବ୍ରଜକିଶୋରବାବୁ ଝାନ୍‌ସୀ ଯାଇଥିବା ବେଳେ କେତେକ କବିତା ଲେଖି ଆଣିଥିଲେ। ସେଇଥିରୁ ହିଁ ମୁଁ ଏଠାରେ ଉଲ୍ଲେଖ କରିଛି। ତାଙ୍କ କବିତାଗୁଡ଼ିକ ଲାଳିତ୍ୟପୂର୍ଣ୍ଣ ଓ କବିତ୍ୱଗୁଣ ସମନ୍ୱିତ। ଶ୍ରୀମଦ୍‌ଭାଗବତରେ ଉଲ୍ଲେଖ ଅଛି, ''ଯସ୍ୟାସ୍ତି ଭକ୍ତିର୍ଭଗବତ୍ୟକିଂଚନା ସର୍ବେ ଗୁଣାସ୍ତତ୍ର ସମାସତେଽସୁରାଃ''– ଅର୍ଥାତ୍ ଯାହା ହୃଦୟରେ ଭଗବାନଙ୍କ ପ୍ରତି ଭକ୍ତି ଭାବ ରହିଛି, ତା' ହୃଦୟରେ ସମସ୍ତ ସୁଗୁଣ ସ୍ୱତଃ ପ୍ରତିଭାତ ହୁଏ। ସାହିତ୍ୟକ୍ଷେତ୍ରରେ ମହାତ୍ମା ବିହରିୟାଲାଲାଙ୍କୁ

କେହି ଜାଣନ୍ତିନାହିଁ। ସେ ମଧ ସଂସାରୀ ଲୋକଙ୍କ ଜାଣିବା ନ ଜାଣିବାକୁ ଅପେକ୍ଷା କରିନାହାନ୍ତି। ଏସବୁ ଅଭିଳାଷ ଆମଭଳି କୀର୍ତ୍ତିଲୋଲୁପଙ୍କ ପକ୍ଷରେ ସମ୍ଭବ :—

ଘଟଂ ଭିତ୍ତ୍ୱା ପଟଂ କୃତ୍ୱା ଗର୍ଦ୍ଦଭ ରୋହଣମ୍।
ଯେନ କେନ ପ୍ରକାରେଣ ପ୍ରସିଦ୍ଧଃ ପୁରୁଷୋ ଭବେତ୍॥

ସର୍ବସାଧାରଣଙ୍କ ସମ୍ମୁଖରେ କଳସୀ ଭାଙ୍ଗି, ଲୁଗାପଟା ଚିରି ବା ଗଧ ଉପରେ ବସି ବା ସେହିଭଳି ଅନ୍ୟ ଉପାୟରେ ଲୋକ ନିଜର ପ୍ରସିଦ୍ଧି ଲାଭ କରିପାରେ। ଏହାକୁ ଲୌକିକ ଖ୍ୟାତି କୁହାଯାଏ। କିନ୍ତୁ ଯାହାର କୁଞ୍ଜବିହାରୀଙ୍କ ସହିତ ପରିଚୟ ହୋଇଯାଇଛି ତା'ର ଏ ସଂସାରୀ ଲୋକଙ୍କ ପ୍ରସିଦ୍ଧିର ଆବଶ୍ୟକତା ରହେନାହିଁ।

ମହାତ୍ମା ବିହରିୟାଲାଲାଙ୍କ ଜୀବନର ସମସ୍ତ ଘଟଣା ବର୍ଣ୍ଣନା କରିବା ସମ୍ଭବ ନୁହେଁ। ସେ ପ୍ରାୟ ସବୁବେଳେ ଅନ୍ୟମନସ୍କ ରହନ୍ତି। ମୃତ୍ୟୁ ପୂର୍ବରୁ ସେ କହିଥିଲେ, ''ଲାଲା ! ତୁହିଁ ମୋର ଅନ୍ତ୍ୟେଷ୍ଟିକ୍ରିୟା କରିବୁ। ମୋର ଅସ୍ଥି ନେଇ ଗଙ୍ଗାରେ ପକାଇବୁ।'' ଏଇ ଅଳ୍ପଦିନ ହେଲା ତାଙ୍କର ଦେହାନ୍ତ ଘଟିଛି। ଲୋକେ ବହୁ ଆଡ଼ମ୍ବର ସହକାରେ ତାଙ୍କ ମରଦେହକୁ ଶ୍ମଶାନ ଭୂମିକୁ ନେଇ ଯାଇଥିଲେ। ଶ୍ମଶାନରେ ଏକ ସୁନ୍ଦର ବାଳକ ହଳଦିଆ ଲୁଗାପିନ୍ଧି କାନ୍ଦି କାନ୍ଦି ଆସି ପହଞ୍ଚି କହିଲା, ''ମୁଁ ତାଙ୍କର ଶୁଦ୍ଧ କ୍ରିୟା କରିବି।'' ଏଥିରେ କେହି ଆପତ୍ତି କଲେ ନାହିଁ। ଚିତା ଜଳିସାରିବା ପର୍ଯ୍ୟନ୍ତ ପିଲାଟି କାନ୍ଦୁଥାଏ। କେତେଦିନ ପରେ ସେହି ପିଲାଟି ତମ୍ବା କଳସୀଟିଏ ଆଣି ଶ୍ମଶାନରୁ ଭସ୍ମାବଶେଷ ନେଇ ଯାଇଥିବାର ସମସ୍ତେ ଦେଖିଛନ୍ତି।

ଫରୁଖାବାଦ୍‌ରେ ଜଣେ ଭକ୍ତ ଥାଏ। ସେ ବଡ଼ ସରଳ ଓ ରସିକ। ଆମେ ତାଙ୍କୁ ବଡ଼ବାବୁ ବୋଲି ଡାକୁ। ଥରେ ଯାତ୍ରାଦଳ ରାମଲୀଳା ଦେଖାଇବା ପାଇଁ ଫରୁଖାବାଦ୍ ଆସିଥିଲେ। ଦଳରେ ଯେ ରାମଚନ୍ଦ୍ରଙ୍କ ଭୂମିକାରେ ଅଭିନୟ କରୁଥିଲା ତା' ଠାରେ ସାକ୍ଷତା ରାମଙ୍କ ଭଳି ଭାବନା ଫୁଟି ଉଠିଲା। ସେ ବହୁ ଅଲୌକିକ ଘଟଣା ମଧ ଦେଖାଇଥିଲେ। ସେ ତାଙ୍କ ଆତ୍ମଜୀବନୀ ଲେଖିଥିଲେ। କିନ୍ତୁ ତାହା ପ୍ରକାଶିତ ହୋଇ ନଥିଲା। କିନ୍ତୁ ବାବୁଜୀ ଛୋଟ ବଡ଼ କେତେ ଖଣ୍ଡି ବହି ପ୍ରକାଶ କରିଥିଲେ। 'ଜନକପୁରର ସଖା' ନାମରେ ପୁସ୍ତକଟି ତାଙ୍କର ଉଲ୍ଲେଖଯୋଗ୍ୟ। ତାଙ୍କର ଆର୍ଥିକସ୍ଥିତି ଭଲ ନଥିଲା। ଭଗବାନଙ୍କଠାରେ ତାଙ୍କର ଅଗାଧ ବିଶ୍ୱାସ ଥିଲା। ସବୁ ଗୃହସ୍ଥଙ୍କ ଭଳି ସେ ମଧ ପୁଅଟିଏ ପାଇଁ ମନରେ ଅଭିଳାଷ ରଖିଥିଲେ। କିନ୍ତୁ ଶେଷରେ ଝିଅଟିଏ ଜନ୍ମ ହେଲା। କନ୍ୟା ଜନ୍ମର ଖବର ପାଇ ସେ ଧ୍ୟାନ କରିବାକୁ ଲାଗିଲେ। ଆଶ୍ଚର୍ଯ୍ୟର କଥା, କିଛି ସମୟ ପରେ ସେ ଝିଅଟି ପୁଅ ହୋଇଗଲା। ଭଗବାନ ଭକ୍ତର ଇଚ୍ଛା କିପରି ପୂରଣ କରନ୍ତି ତାହା ଭକ୍ତବିନା ଅନ୍ୟକେହି ବୁଝିବା କଷ୍ଟକର। ଏହା ଏକ ପ୍ରତ୍ୟେକ୍ଷ ଅନୁଭବର କାହାଣୀ। ବଡ଼ବାବୁଙ୍କ ସେ ପିଲାଟି ଏବେ ବି ଜୀବିତ ଅଛି।

ଆହୁରି ଗୋଟିଏ ଘଟଣା ତାଙ୍କ ଘରେ ଘଟିଥିଲା। ତାଙ୍କ ଘରେ ଜଣେ ସମ୍ପର୍କୀୟଙ୍କ ଦେହାନ୍ତ ହୋଇଗଲା। ବଡ଼ବାବୁ ବ୍ରାହ୍ମଣ ଥିଲେ। ଜାତିପ୍ରଥା ଅନୁସାରେ ଆତ୍ମୀୟଙ୍କ ବ୍ୟତୀତ ଅନ୍ୟ କେହି ଶବ ସ୍ପର୍ଶ କରିବା କଥା ନୁହେଁ। କୁଟୁମ୍ବ ଲୋକେ ସିନା ଶବକୁ ଶ୍ମଶାନ ପର୍ଯ୍ୟନ୍ତ

ନେଇଯିବେ ; କିନ୍ତୁ ସେ ଏକାଲୋକ, କ'ଣ କରିବେ, କିପରି ଦାହ କରିବେ ଏଇ ଚିନ୍ତା କରୁଥିବା ବେଳେ ହଳଦିଆ ଲୁଗାପିନ୍ଧି ପାଞ୍ଚଜଣ ଲୋକ ସେଠାରେ ପହଞ୍ଚି କହିଲେ, ''ଆମ୍ଭେମାନେ ଗୁଜୁରାଟୀ ବ୍ରାହ୍ମଣ । ଆମେ ଏହାଙ୍କ ଦାହସଂସ୍କାର କରିବାକୁ ଆସିଛୁ ।'' ସମସ୍ତେ ମିଶି ଦାହ ସଂସ୍କାର କଲେ । ସବୁକାମ ସରିବାପରେ ସେମାନେ ଚାଲିଗଲେ ।

ଏହିପରି ଏକ ନୁହେଁ ଅନେକ ଉଦାହରଣ ରହିଛି । **ଭଗବାନ ନିଜେ ଭକ୍ତର ସମସ୍ତ କାର୍ଯ୍ୟ ସମାଧାନ କରନ୍ତି । ତା'ନ ହେଲେ ଭକ୍ତ ଚଳନ୍ତା କିପରି ?** ଅନେକ କହନ୍ତି, ''ସଂସାର କର୍ମାଧୀନ, ଯେ ଯାହା କରେ ସେ ତାହାର ଫଳ ପାଏ । ଭଲକାମ କଲେ ସୁଖ ଓ ଖରାପ କାମ କଲେ ଦୁଃଖ ମିଳେ । ସମଗ୍ର ବିଶ୍ୱ କର୍ମର ଅଧୀନ । ଯେ ଯେଉଁ ଗଛ ଲଗାଇବ, ସେ ସେହି ଗଛର ଫଳ ପାଇବ ।'' ଯଦି ସବୁକିଛି କର୍ମ ଅଧୀନ, ତା'ହେଲେ ଆମେ ସମସ୍ତେ ଭଲକାମ କରିବା । ଭକ୍ତିମାର୍ଗ ଅନୁସରଣ କରିବାରେ ଲାଭ କ'ଣ ?

ଭକ୍ତିମାର୍ଗ କର୍ମର ବିରୋଧ କରେନାହିଁ । କର୍ମର ଫଳ ଅବଶ୍ୟମ୍ଭାବୀ ଏହା ସ୍ୱୀକାର କରିବାରେ କାହାରି ଆପତ୍ତି ରହିବ ନାହିଁ । ଉତ୍ତମ କାର୍ଯ୍ୟ ଦ୍ୱାରା ସ୍ୱର୍ଗସୁଖ ଓ ଅଧମ କାର୍ଯ୍ୟ ଦ୍ୱାରା ନର୍କଭୋଗର ସମ୍ଭାବନାକୁ କେହି ଏଡ଼େଇ ଦେଇପାରିବ ନାହିଁ ।

**କିନ୍ତୁ ଭକ୍ତ, ନରକ ଭୟରେ ବା ସ୍ୱର୍ଗସୁଖ ଲୋଭରେ ଭଗବାନଙ୍କୁ ଭକ୍ତି କରେ ନାହିଁ । ଭକ୍ତି କେବଳ ଭକ୍ତି ନିମିତ୍ତ କରାଯାଏ । ମନ ମଦନମୋହନଙ୍କ ଚରଣାରବିନ୍ଦରେ ଲାଗି ରହୁ ଏହାହିଁ ଭକ୍ତର ଏକମାତ୍ର ଅଭିଳାଷ ।** ଦେହ ଥିଲେ ଭଲ ଓ ମନ୍ଦ ଉଭୟ କାର୍ଯ୍ୟ କରାଯାଇପାରେ । ସେଥିରୁ ମୁକ୍ତି ପାଇବା ନିମିତ୍ତ ଭକ୍ତ ଭକ୍ତି କରେ ନାହିଁ । ଦେହ ସମ୍ବନ୍ଧିତ ସୁକର୍ମ ବା ଦୁଷ୍କର୍ମର ଫଳ ଭୋଗିବାକୁ ପଡ଼ିବ । ସେଥିପାଇଁ ଭକ୍ତର ଭୟ ନ ଥାଏ । ଭକ୍ତ ଜନ୍ମ ମରଣକୁ ଭୟକରେ ନାହିଁ, କି ପୁଣ୍ୟ-ପାପ ସମାପ୍ତିର ମୁକ୍ତି ଇଚ୍ଛା କରେ ନାହିଁ । ପାର୍ଥିବ ବିଷୟର ଆବର୍ତ୍ତନରୁ ମୁକ୍ତି ପାଇବା ନିମିତ୍ତ ଭକ୍ତ ଭଗବାନଙ୍କୁ ପ୍ରାର୍ଥନା କରେ ନାହିଁ, କି କର୍ମମାର୍ଗରେ କୌଣସି ବାଧା ସୃଷ୍ଟି କରେନାହିଁ । ପ୍ରକୃତ ଭକ୍ତ କର୍ମ ସିଦ୍ଧାନ୍ତକୁ ବା ପୂର୍ବଜନ୍ମାର୍ଜିତ କର୍ମଫଳ ଅନୁସାରେ ଘଟୁଥିବା ରୋଗ, ଶୋକ, ଦୁଃଖ, କଷ୍ଟକୁ ଅସ୍ୱୀକାର କରେ ନାହିଁ । ସେ କେବଳ ଚାହେଁ ତା'ର ମନମନ୍ଦିରରୁ ଭଗବାନଙ୍କ ମୋହନ ମୂର୍ତ୍ତି କେବେହେଲେ ଅନ୍ତର୍ହିତ ନ ହେଉ । ସେ ଚାହେଁ ସର୍ବଦା, ସର୍ବତ୍ର ଶ୍ୟାମସୁନ୍ଦରଙ୍କ ସ୍ମୃତି କାୟମନବାକ୍ୟରେ ଉଜ୍ଜୀବିତ ରହୁ । ସେହି ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରୁ କରୁ ଏ ଜୀବନ ଯାଉ– ଏହାହିଁ ଭକ୍ତର ଚରମ ଓ ପରମ ଅଭିଳାଷ ।

ଧନଧାନ୍ୟ ଓ ପାର୍ଥିବ ସୁଖଭୋଗ ପ୍ରତି ଅନାସକ୍ତ ରହି ଭଗବଦ୍ ଚରିତ୍ର ଚିନ୍ତନ, ମନନ ଓ ଶ୍ରବଣରେ କାଳ ଅତିବାହିତ ହେଉବୋଲି ଭକ୍ତର ଏକମାତ୍ର ଅଭିଳାଷ ଥାଏ । ଶ୍ରୀ ଭଗବାନ୍ ସନକାଦିକ ମୁନିଗଣଙ୍କୁ ଏହାହିଁ ଉପଦେଶ ଦେଇଛନ୍ତି । ସନକାଦି ମୁନିଗଣ ମାୟାଜନିତ କାମ, କ୍ରୋଧ, ଲୋଭାଦି ବିକାର ରହିତ ଥିବାରୁ ପ୍ରତ୍ୟେକ୍ଷଭାବେ ନିତ୍ୟ ଭଗବତ୍ସାକ୍ଷାତ କରୁଥିଲେ । ଏକଦା ଜୟବିଜୟଙ୍କ ଦ୍ୱାରା ଭଗବଦ୍ ସାକ୍ଷାତରୁ ବଞ୍ଚିତ ହୋଇ ସେ ଦୁହିଁଙ୍କୁ ଅସୁର କୁଳରେ ଜନ୍ମ ହେବା ନିମିତ୍ତ ମହର୍ଷି ସନକ ଅଭିଶାପ ଦେଇଥିଲେ । ପରେ କିନ୍ତୁ ନିଜର ଅପରାଧ ବୁଝିପାରି ଭଗବାନଙ୍କୁ କହିଥିଲେ, ''ପ୍ରଭୁ ! ଯଦି ମୋର ଅପରାଧ ପାଇଁ ମୋତେ ନର୍କ ଭୋଗିବାକୁ ପଡ଼େ ତାହା ମୁଁ ସହର୍ଷଚିତ୍ତରେ ସ୍ୱୀକାର କରୁଛି, କିନ୍ତୁ ମୋର

ମନ ଆପଣଙ୍କ ଚରଣାରବିନ୍ଦ ବ୍ୟତୀତ ଯେପରି ଆଉକିଛି ଚିନ୍ତା ନ କରେ, ତାହାହିଁ ପ୍ରାର୍ଥନା। ମୋର ଶରୀର ନର୍କରେ ପଡ଼ିଥାଉ ପଛକେ, କର୍ଣ୍ଣ-ମନ-ବଚନ ଆପଣଙ୍କ ଗୁଣ ଶ୍ରବଣ, ମନନ ଓ ଗାୟନରେ ସତତ ବ୍ୟାପୃତ ରହୁ। ★ ଏଣୁ, ଭକ୍ତ କର୍ମର ଫଳ ଭୋଗ କରିବା ପାଇଁ ଆଦୌ ମନା କରେନାହିଁ। ଭଗବାନ ଭକ୍ତର ଏପରି କଥାକୁ ଅନୁମୋଦନ କରନ୍ତି। ଭକ୍ତ କର୍ମଫଳ ଭୋଗକରେ। ମାତ୍ର ଯେଉଁ ଦୁଃଖ ଭୋଗକରୁଥାଏ ଭଗବାନଙ୍କ ପ୍ରଦତ୍ତ ଶକ୍ତି ଫଳରେ ସେ ସେହି ଦୁଃଖକୁ ଅନୁଭବ କରିପାରେ ନାହିଁ। ଭକ୍ତର ଦୁଃଖ ସମୟରେ ଭଗବାନଙ୍କୁ ଅନେକ ଥର ତା' ପାଖକୁ ଆସିବାକୁ ପଡ଼େ। ସେତେବେଳେ ଦୁଃଖ ଅନେକ ପ୍ରକାର ସୁଖରୂପରେ ହୋଇଯାଏ। ସେଇଥିପାଇଁ ପଣ୍ଡୁ ମହାରାଣୀ କୁନ୍ତୀ ଦୁଃଖ ଭୋଗ ପାଇଁ ପ୍ରାର୍ଥନା କରିଥିଲେ, କାରଣ ଦୁଃଖ ସମୟରେ ହିଁ ଭଗବାନଙ୍କର ଅନୁପମ ଦର୍ଶନ ମିଳେ।

ଭକ୍ତମାଳା ଗ୍ରନ୍ଥରେ ଆଉ ଏକ କାହାଣୀ ଅଛି। ଶ୍ରୀ ଜଗନ୍ନାଥ ଧାମ ପୁରୀରେ ଶ୍ରୀ ଜଗନ୍ନାଥ ଦାସ ନାମରେ ଜଣେ ବୈଷ୍ଣବ ଭକ୍ତ ଥିଲେ। ତାଙ୍କୁ ଗ୍ରହଣୀ ରୋଗ ଆକ୍ରମଣ କଲା। ଏହି ରୋଗରେ ବାରମ୍ବାର ଝାଡ଼ା ଲାଗେ। ବାରମ୍ବାର ଶୌଚାଗାର ଯାଇ ତାଙ୍କ କୌପୀନ ମଳଦୋଷରେ ଅଶୁଦ୍ଧ ହୋଇଗଲା। ଏଭଳି ଅବସ୍ଥାରେ ଜଣେ ବାଳକ ଆସି ତାଙ୍କର ସେବା କଲା। କୌପୀନ ବସ୍ତ୍ର ଧୋଇ ଶୁଦ୍ଧ କଲା। ଏହିପରି ଅନେକଦିନ କଟିଗଲା। ଦିନେ ଶ୍ରୀ ଜଗନ୍ନାଥ ଦାସ ପଚାରିଲେ, ''ବାପା ! ତୁମେ କିଏ ? ତୁମେ ମୋ'ର ଏତେ ସେବା କାହିଁକି କରୁଛ ?'' ସେ କହିଲା, ''ମୁଁ ହିଁ ଜଗନ୍ନାଥ। ତୁମେ ମୋର ଭକ୍ତ। ତୁମ ସେବା କରିବା ମୋ'ର ଧର୍ମ। ମୁଁ ମୋ'ର ଭକ୍ତମାନଙ୍କର ଦେଖାଶୁଣା ସବୁବେଳେ କରିଥାଏ।''

ଜଗନ୍ନାଥ ଦାସ କହିଲେ, ''ହେ ଭଗବନ୍ ! ଆପଣ ତ୍ରିଲୋକର ନାଥ ହୋଇ ଏପରି ତୁଚ୍ଛ କାର୍ଯ୍ୟ କାହିଁକି କରୁଛନ୍ତି ? ଆପଣ କେବଳ ଇଚ୍ଛା କଲେ ସବୁକିଛି ସୃଷ୍ଟି ହୋଇପାରୁଛି। ଆପଣ ଚାହିଁଥିଲେ ମୋ'ର ରୋଗ ଭଲ ହୋଇ ଯାଇଥାନ୍ତା। ଏପରି ଘୃଣ୍ୟ ସେବା ଆପଣଙ୍କ ସ୍ୱରୂପ ଅନୁରୂପ ହେଉନାହିଁ।''

ଭଗବନ୍ ଶ୍ରୀଜଗନ୍ନାଥ କହିଲେ, ''ପ୍ରାରବ୍ଧ କର୍ମକୁ ଆପଣ ଯେତେବେଳେ ଅସ୍ୱୀକାର କରୁନାହାନ୍ତି, ସେତେବେଳେ ମୁଁ ମଧ୍ୟ ମୋ ଭକ୍ତଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ କରିବାକୁ ଇଚ୍ଛା କରୁନାହିଁ। ବସ୍ତୁତଃ, ଭକ୍ତର ଯୋଗକ୍ଷେମ ସମ୍ବନ୍ଧୀୟ ସମସ୍ତ ଦାୟିତ୍ୱ ମୁଁ ନିଜ ଉପରକୁ ନେଇଥାଏ। ମୁଁ ଯେତେବେଳେ ଭକ୍ତର ସମସ୍ତ ଦାୟିତ୍ୱ ବହନକରୁଛି ସେତେବେଳେ ଛୋଟବଡ଼ କାର୍ଯ୍ୟର ପ୍ରଶ୍ନ ଉଠୁଛି କାହିଁକି ?

ସାରକଥା ହେଉଛି, ଭକ୍ତ ସବୁଦିଗରେ ଭଗବାନଙ୍କର ଶରଣାପନ୍ନ ହେଲେ ସେ ସ୍ୱୟଂ ଭକ୍ତର ଆବଶ୍ୟକ ସମସ୍ତ କାର୍ଯ୍ୟ କରନ୍ତି। ଭୀଷ୍ମ ପିତାମହ ଶରଶଯ୍ୟାରେ ଥାଇ ଆସନ୍ନ ହୋଇ ପଡ଼ିଥିଲେ। କିନ୍ତୁ ତାଙ୍କର ଇଚ୍ଛା ଥିଲା ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଦେଖି ଦେଖି ପ୍ରାଣତ୍ୟାଗ


କାମ ଭବଃ ସ୍ୱବୃଜିନୈର୍ନିରୟେଷୁ ନଃ ସ୍ତାତ୍
ଚେତୋଽଲିବଦ୍ ଯଦି ନୁ ତେ ପଦୟୋ ରମେତ।
ବାଚଶ୍ଚ ନସ୍ତୁଲସିବଦ୍ ଯଦି ତେଽଙ୍ଘ୍ରିଶୋଭାଃ
ପୂର୍ଯ୍ୟେତ ତେ ଗୁଣଗଣୈର୍ଯଦି କର୍ଣରନ୍ଧ୍ରେ॥
[ଶ୍ରୀଭା. ୩ୟ ସ୍କ. ୧୫ଅ. ୪୯ ଶ୍ଳୋକ]

କରିବେ। ତେଣୁ, ଭଗବାନ ବାସୁଦେବ ସ୍ୱୟଂ ସେଠାରେ ଉପସ୍ଥିତ ରହି ତାଙ୍କର ଅନ୍ତିମ ଅଭିଳାଷ ପୂରଣ କରିଥିଲେ। ଗୃଧ୍ରରାଜ ଜଟାୟୁ ରାବଣ ଦ୍ୱାରା ଆହତ ହୋଇ ଭଗବାନଙ୍କୁ ଧ୍ୟାନ କରିବାରେ ଅସମର୍ଥ ହୋଇପଡ଼ିବାରୁ ସ୍ୱୟଂ ରାମଚନ୍ଦ୍ର ସେଠାରେ ଉପସ୍ଥିତ ହୋଇ ତାଙ୍କର ଶେଷଇଚ୍ଛା ପୂରଣ କରିଥିଲେ। **ଅନ୍ତିମ କାଳରେ ଯେ ଭଗବାନଙ୍କୁ ସ୍ମରଣକରେ ସେ ହିଁ ଶ୍ରେଷ୍ଠ ଭକ୍ତ। କିନ୍ତୁ ମୃତ୍ୟୁ କାଳରେ ଯାହାକୁ ଭଗବାନ ସ୍ୱୟଂ ସ୍ମରଣ କରନ୍ତି ତା'ର ସୌଭାଗ୍ୟ ଅବର୍ଣ୍ଣନୀୟ।**

ବରାହଅବତାରୀ ଭଗବାନଙ୍କୁ ଭୂଦେବୀ ଏହି କଥାହିଁ ପଚାରିଥିଲେ, ''ହେ ଭଗବନ୍! ସାରା ଜୀବନ ଆପଣଙ୍କ ନାମ ସ୍ମରଣ କରି ମଧ୍ୟ ଯଦିକେହି ମୃତ୍ୟୁ କାଳରେ ଅସାଧ୍ୟ ରୋଗ ବଶତଃ ବା ବାକ୍‌ଶକ୍ତି ରହିତ ହେବା ହେତୁ ସ୍ମରଣ କରିବାକୁ ଅସମର୍ଥ ହୁଏ, ତା'ର କି ଗତି ହୁଏ ?''

ବରାହ ଭଗବାନ କହିଲେ, ''ଦେବି! ଯଦି କେହି ଭକ୍ତ ମନ-ବଚନ-କର୍ମରେ ବିଶ୍ୱରୂପ ଅନାଦି, ଅଜ, ଅଚ୍ୟୁତ ଆଦି ନାମ ସ୍ମରଣ କରି ଅନ୍ତିମ କାଳରେ କାଷ୍ଠ ପାଷାଣବତ୍ ନିଶ୍ଚେଷ୍ଟ ହୋଇଯାଏ, ସେହି ମ୍ରିୟମାଣ ଭକ୍ତକୁ ମୁଁ ନିଜେ ସ୍ମରଣ କରେ ଓ ବିଷ୍ଣୁଲୋକରେ ଆଶ୍ରୟ ଦାନ କରେ।'' ★

ଏହି ଜୀବ ଅନାଦି କାଳରୁ ସଂସାରମଧ୍ୟରେ ନିଜର ପ୍ରିୟତମ ଓ ସହାୟକର ଅନୁସନ୍ଧାନରେ ଭ୍ରମଣ କରୁଛି। ସଂସାରରେ ପ୍ରାଣୀ ନିଜକୁ ଦୁଃଖୀ ଓ ଅସହାୟ ଅନୁଭବ କରେ। ସେଥିପାଇଁ ସେ ଦୁଃଖହାରୀର ସହାୟତା ସର୍ବଦା କାମନା କରେ। ସେ ଭାବେ ତାକୁ କେହି ପ୍ରକୃତରେ ଆଦର କରୁନାହିଁ। ସମସ୍ତେ ସ୍ୱାର୍ଥପର। ମୁଁ ବହୁ ଧନୀ, ରାଜା, ମହାରାଜା, ସୁନ୍ଦରୀ ନାରୀ, ପ୍ରତିଷ୍ଠିତ ଲୋକଙ୍କୁ ଦେଖିଛି। ସମସ୍ତଙ୍କଠାରେ ତୃଷ୍ଣା, ଭୟ, ଅସହାୟତା, କାମନା, ଅସୀମ ଅତୃପ୍ତି ଓ ଅଶାନ୍ତି ଭରି ରହିଥିବା ଦେଖିଛି। ଯେ ସ୍ୱୟଂ ନଶ୍ୱର ତାକୁ ଶାଶ୍ୱତୀ ଶାନ୍ତି କେଉଁଠୁ ମିଳିବ। ଅସତ୍ ଠାରୁ ସତ୍ ସୁଖ, ଜଡ଼ ଠାରୁ ଚୈତନ୍ୟରସ ଏବଂ ନିରାନନ୍ଦଠାରୁ ଆନନ୍ଦ ଆଶା କରିବା ବୃଥା। ସେଥିପାଇଁ ସମସ୍ତଙ୍କୁ ମୋର ଅନୁରୋଧ, ଅବିହିତ ଚିତ୍ତରେ ମୋର କଥା ଶୁଣ। ମୁଁ ସଂସାରର ଯାବତୀୟ କଟୁତା ଅନୁଭବ କରିଛି। ବହୁପ୍ରକାର ଲୋକଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଛି। ସବୁଠି ସେଇ ହା ହା କାର। ତେଣୁ, ଯେଉଁମାନେ ବିଷୟବାସନା ପୂର୍ତ୍ତିପାଇଁ ବ୍ୟାକୁଳ ସେମାନଙ୍କୁ କିଛି କହିବାର ନାହିଁ, କାରଣ ସେ ବାସନାର ଯେ ଅନ୍ତନାହିଁ। ଧନବଳରେ ସୁଖୀ ହେବା ଏକ ବିଡ଼ମ୍ବନା। କାରଣ କୌଣସି ଧନୀଲୋକ ସୁଖୀ ଥିବାର ମୁଁ ଦେଖିନାହିଁ। ସେମାନେ ସୁଖ ପାଇଁ ଯେଉଁ ପାର୍ଥିବ ବସ୍ତୁ ଠୁଳ କରନ୍ତି ତାହାହିଁ ତାଙ୍କର ଦୁଃଖର କାରଣ ହୁଏ। ତେଣୁ, ବିଷୟ ବାସନାସକ୍ତ ଲୋକଙ୍କୁ ପ୍ରେମ କରିବାର ଆଶା ପରିତ୍ୟାଗ କରି ଶାଶ୍ୱତ ସୁଖର ଆଧାରଭୂତ ଶ୍ରୀହରିଙ୍କ ସହିତ କୌଣସି ନା କୌଣସି ସମ୍ବନ୍ଧ ସ୍ଥାପନା

---


ସ୍ଥିରେ ମନସି ସୁସ୍ୱସ୍ଥେ ଶରୀରେ ସତି ଯୋ ନରଃ।
ଧାତୁ ସାମ୍ୟେ ସ୍ଥିତେ ସ୍ମର୍ତା ବିଶ୍ୱରୂପଭଜଂ ହି ମାମ୍॥
ତତସ୍ତେ ମ୍ରିୟମାଣଂ ତୁ କାଷ୍ଠ ପାଷାଣ ସନ୍ନିଭମ୍।
ଅହଂ ସ୍ମରାମି ମଦ୍ ଭକ୍ତଂ ନୟାମି ପରମାଂ ଗତିମ୍॥

କରିବା ଉଚିତ। ନିତ୍ୟ ସହିତ ସମ୍ବନ୍ଧରୁ ନିତ୍ୟସୁଖ ହିଁ ଉପଲବ୍ଧ ହୁଏ। ଶ୍ରୀକୃଷ୍ଣାବତାରରେ ଭଗବାନ ସମସ୍ତ ପ୍ରକାର ସମ୍ବନ୍ଧରେ ପ୍ରତ୍ୟେକ୍ଷ ନିଦର୍ଶନ ଦେଇଛନ୍ତି। ପାଣ୍ଡବମାନଙ୍କଠାରେ ସେ ଥିଲେ ପୂଜ୍ୟ, ସଖା, ସ୍ୱାମୀ, ଈଶ୍ୱର ଓ ସର୍ବସ୍ୱ।

ତାଙ୍କ ସହିତ ଯିଏ ସମ୍ବନ୍ଧ ସ୍ଥାପିତ କରିପାରେ ସେ ତା'ର ପ୍ରତ୍ୟେକ୍ଷ ସେବା କରିଥା'ନ୍ତି। ତା'ର ସକଳ କାର୍ଯ୍ୟକୁ ନିଜର କାର୍ଯ୍ୟ ମନେକରି ନିଜ ହାତରେ ସେ ସମସ୍ତ ସମ୍ପାଦନ କରିଥାଆନ୍ତି। ସେଇଥିଯୋଗୁଁ ତ ତାଙ୍କର ନାମ ଭକ୍ତବତ୍ସଳ ତଥା ଭକ୍ତବାଞ୍ଛାକଳ୍ପତରୁ ହୋଇଛି।

'ଭାଗବତ-କଥା' ପାଠକଙ୍କ ମଧ୍ୟରୁ ଅନେକ ହୋଇଥିବେ। ଯେଉଁମାନେ ଭକ୍ତ ନୁହନ୍ତି ସେମାନେ ଭାଗବତ କଥା ପାଠ କରିକରି ଭକ୍ତ ପଦବାଚ୍ୟ ହୋଇଯିବେ। ଆମେ ସମସ୍ତ ଭାଗବତ କଥା ପାଠକଙ୍କୁ ପ୍ରାର୍ଥନା କରୁଛୁ— ଭାଗବତ କଥାର ସମସ୍ତ ପରିବାରକୁ ଆଶୀର୍ବାଦ ଦେଉଛୁ— ସମସ୍ତେ ଭଗବାନଙ୍କର ଭକ୍ତ ହୋଇଯାଆନ୍ତୁ। ସମସ୍ତଙ୍କର ଗତି-ମତି-ରତି ଭଗବାନଙ୍କର ଚରଣାରବିନ୍ଦରେ ରହୁ। ସମସ୍ତଙ୍କ ହୃଦୟରେ ଆନନ୍ଦ ପରିପୂର୍ଣ୍ଣ ରହୁ ଏବଂ ଦୁଃଖ ପଳାୟନ କରୁ। ଏବମସ୍ତୁ- ତଥାସ୍ତୁ।

ପ୍ରୟାଗ<br>ଶ୍ରୀ ରାଧାଷ୍ଟମୀ, ୧୯୭୨

ବିନୀତ<br>ପ୍ରଭୁଦତ୍ତ



# ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦର ପୂର୍ବାଭାସ

ନାଧୁନା ତେଽଖିଲାଧାର ଦେବକାର୍ଯ୍ୟାବିଶେଷିତମ୍ ।
କୁଳଂ ଚ ବିପ୍ରଶାପେନ ନଷ୍ଟପ୍ରାୟମଭୂଦିଦମ୍ ।
ତତଃ ସ୍ୱଧାମ ପରମଂ ବିଶସ୍ୱ ଯଦି ମନ୍ୟସେ ।
ସଲୋକାଁଲ୍ଲୋକପାଲାନ୍ ନଃ ପାହି ବୈକୁଣ୍ଠକିଙ୍କରାନ୍ ।। ★

[ଶ୍ରୀଭା ୧୧ସ୍କ. ୬ଅ. ୨୬-୨୭ ଶ୍ଳୋକ]

**ଛପ୍‌ପୟ**

ଏକ ଦିବସ ବସୁ, ରୁଦ୍ର, ପିତର, ଋଷି, ମୁନି, ଶିବ ସୁରଗନ ।
ସବମିଲି ପ୍ରଭୁ ଢିଁଗ ଗୟେ ଦ୍ୱାରକା ସଂଗ ଚତୁରାନନ ।।
ନନ୍ଦନ ବନକେ ସୁମନ ବିପୁଲ ପ୍ରଭୁପୈ ବରସାୟେ ।
ନବ ଜଲଧର ସମ ଛଟା ନିରଖି ତବ ଅତି ହରଷାୟେ ।।
କରି ଦରଶନ ଘନଶ୍ୟାମକେ, ଦୁଃଖ, ସବକେ ଭଗେ ।
ସୁଲଲିତ ପଦ ଅତି ମଧୁର ସ୍ୱର, ତୈ ଇସ୍ତୁତି କରିବେ ଲଗେ ।।

ଗୃହକର୍ତ୍ତା ତା' ସେବକକୁ ଯେଉଁ କାର୍ଯ୍ୟରେ ନିଯୁକ୍ତ କରେ କର୍ତ୍ତବ୍ୟ ପରାୟଣ ସେବକ ତାହା ତତ୍ପରତାର ସହିତ କରିଚାଲେ । ଯେପରି ନିର୍ଦ୍ଦିଷ୍ଟ ସମୟ ଜଣାଇବା ନିମିତ୍ତ ଜଣେ ଭୃତ୍ୟକୁ ଆଦେଶ ଦିଆଯାଇଛି, ମାଲିକ ଜାଣିଥିଲେ ମଧ ତାଙ୍କ ଆଦେଶ ଅନୁସାରେ ଭୃତ୍ୟ ବାରମ୍ବାର ସମୟର ସୂଚନା ଦେଇଥାଏ । କାରଣ ସେ, ସେହି ନିର୍ଦ୍ଦିଷ୍ଟ କାର୍ଯ୍ୟ ନିମିତ୍ତ ନିଯୁକ୍ତ ହୋଇଛି । ସେ ମାଲିକଙ୍କୁ ଶିକ୍ଷା ଦିଏ ନାହିଁ, ତା'ର କର୍ତ୍ତବ୍ୟ ମାତ୍ର ପାଳନ କରିଥାଏ । ଜଣେ ମାଲିକ ଦୈବାତ୍ ଗ୍ରହଣୀ ରୋଗରେ ଆକ୍ରାନ୍ତ ହୋଇ ଚିକିତ୍ସକଙ୍କ ପରାମର୍ଶ ଅନୁସାରେ ପ୍ରତିଦିନ ଚାରିପଟ ରୁଟି ଖାଇବାକୁ ଦେବା ନିମିତ୍ତ ପାଚକକୁ ଆଦେଶ ଦେଲେ । ରୋଷେଇଆ ସେହି ଆଦେଶ ପାଳନ କଲା । ଦିନେ ସେ କହିଲେ, "ଆଜି ଚାରିପଟ ରୁଟିରେ ପେଟ ପୂରିଲା ନାହିଁ, ଆଉ ଦୁଇପଟ ଦିଅ ।" ପାଚକ କହିଲା, "ଆଜ୍ଞା ! ଆଉ ତ ଦେବା କଥା

---



କୃଷ୍ଣଙ୍କୁ ବନ୍ଦି ପ୍ରଜାପତି । ବୋଲନ୍ତି ଶୁଣ ଦାଶରଥି ।।
ମନୁଷ୍ୟଭୋଗ ପୂର୍ଣ୍ଣ ହୋଇ । ଆଉ ତ ପ୍ରୟୋଜନ ନାହିଁ ।।
ଦେବଙ୍କ କାର୍ଯ୍ୟ ଶେଷ ହୋଇ । ନିଜ ଭୁବନେ ଚଳ ତୁହି ।।
ଯାଦବବଂଶ ମହୀତଳେ । ମରିବେ ବିପ୍ରଶାପବଳେ ।।
ଆମ୍ଭର ବାକ୍ୟ ଅନୁସରି । ଭୋ ନାଥ ଚଳ ନିଜପୁରୀ ।।
ତୁ ନାଥ ଜୀବନ ଆମ୍ଭର । ଆମ୍ଭେ ଯେ ତୋହର କିଙ୍କର ।।
ତୁମ୍ଭ ଗୋଚରେ ଜ୍ଞାନ ଦୀକ୍ଷା । ଶରଣ ଗଲୁ କର ରକ୍ଷା ।।

[ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କ. ୭ମ ଅ.]

ନୁହେଁ।'' ମାଲିକ ପାଚକର ଉତ୍ତରରେ କ୍ରୋଧାନ୍ୱିତ ହୋଇ କହିଲେ, ''ମୁଁ ତୋତେ ବାହାର କରିଦେବି।'' ପାଚକ କହିଲା, ''ଆପଣ ମୋର ମାଲିକ, ଆପଣ ଯାହା କରନ୍ତୁ ପଛେ ମୁଁ ଆଉ ଅଧିକା ରୁଟି ଖାଇବାକୁ ଦେବି ନାହିଁ।'' ପ୍ରଭୁ ଆଉ କ'ଣ କରିବେ, ପାଚକକୁ ବାହାର କରିଦେଇ ନିଜେ ଭୋଜନସ୍ଥାନରୁ ଚାଲିଗଲେ।

ଯେଉଁ ବସ୍ତୁ ସେବନକଲେ ହାନି ହୋଇଥାଏ ସେହି ବସ୍ତୁ ସମ୍ମୁଖରେ ପାଇଲେ ଲୋକର ବିଚାର-ବୁଦ୍ଧି ନଷ୍ଟ ହୋଇଯାଏ। କିନ୍ତୁ ସେହି ବସ୍ତୁ ବା ନିଜେ ପରସ୍ପରଠାରୁ ପୃଥକ୍ ହୋଇଗଲା ପରେ ବୁଦ୍ଧିର ଉଦୟ ହୁଏ। ସେତେବେଳେ ମନରେ ଆସେ, 'ମୁଁ କାହିଁକି ଏପରି କଲି।' ସେହିପରି ଭୋଜନରୁ ଉଠିଗଲା ପରେ ମାଲିକର ବିବେକ ଆସିଲା। ପାଚକ ଯେତେବେଳେ ନିଜର ବିଛଣାପତ୍ର ଧରି ବାହାରିଲା ସେତେବେଳେ ତାକୁ ଡକାଇ ମାଲିକ ତା'ର କର୍ତ୍ତବ୍ୟପରାୟଣତା ଉପରେ ସନ୍ତୁଷ୍ଟ ହୋଇ ପାରିତୋଷିକ ଦେଇଥିଲେ ଓ ଦରମା ବଢ଼ାଇ ଦେଇଥିଲେ।

ବର୍ତ୍ତମାନ ବିଚାର କରିବା କଥା ଯେ ସମସ୍ତ ବସ୍ତୁ ସେହି ମାଲିକର ଏବଂ ପାଚକ ମଧ୍ୟ ତାଙ୍କର ବେତନଭୋଗୀ ଭୃତ୍ୟ। ସେ ମାଗିବା ପରେ ମଧ୍ୟ ରୁଟି ନ ଦେଇ ପାଚକ ନିଜର କର୍ତ୍ତବ୍ୟ ପାଳନ କରିଛି। ବର୍ତ୍ତମାନ ପ୍ରଶ୍ନ ଉଠେ ଯେ ଦିନେ ମାଲିକ ଆଦେଶ ଦେଇଥିଲେ, ଆଜି ସେହି ଆଦେଶ ବଦଳରେ ଅନ୍ୟ ଆଦେଶ ଦେଉଛନ୍ତି। ତେଣୁ ଆବଶ୍ୟକ ରୁଟି ଦେବା ପାଚକ ପକ୍ଷରେ ଉଚିତ କାର୍ଯ୍ୟ ହୋଇ ଥାଆନ୍ତା। କିନ୍ତୁ ପ୍ରଭୁ ଯେ ଆଦେଶ ଦେଇଥିଲେ, 'ମୁଁ ଅଧିକ ମାଗିଲେ ମଧ୍ୟ ତୁ ଦେବୁ ନାହିଁ।' ତେଣୁ ସେ ମାଗିବା ପରେ ମଧ୍ୟ ପାଚକ ରୁଟି ନ ଦେଇ ତାଙ୍କ ଆଦେଶ ଦୃଢ଼ଭାବେ ପାଳନ କରିଛି। ଆଦେଶ ଅନୁସାରେ ସେବା କରିବା ସେବକର କର୍ତ୍ତବ୍ୟ। ପୂଜା ପୂର୍ବରୁ ଦେବତାଙ୍କୁ ଶ୍ରଦ୍ଧାର ସହିତ ଆବାହନ କରାଯାଏ। ତା'ପରେ ପୂଜା ଓ ପୂଜାପରେ ବିସର୍ଜନ, ଏହାହିଁ ବିଧି। ପ୍ରଭୁଙ୍କ ଆଦେଶ ଅନୁସାରେ ବିଧିର ଯଥାଯଥ ପାଳନ ସେବକର ଧର୍ମ ଓ ତାହାହିଁ ତା'ର ପ୍ରଧାନ କର୍ତ୍ତବ୍ୟ। ଦୁଃସମୟରେ ଦେବଗଣ ଭଗବାନଙ୍କୁ ଅବତାର ରୂପେ ଅବତୀର୍ଣ୍ଣ ହେବା ନିମିତ୍ତ ଏବଂ ଦୁଃଖ ଦୂର ହେବା ପରେ ତାଙ୍କୁ ସ୍ୱଧାମ ପ୍ରତ୍ୟାବର୍ତ୍ତନ ପାଇଁ ମଧ୍ୟ ପ୍ରାର୍ଥନା କରନ୍ତି। ଭଗବାନଙ୍କର ଏହି ଲୀଳା, କ୍ରୀଡ଼ା ବା ଆମ୍ଭରତି ଜୀବଜଗତରେ କର୍ମବନ୍ଧନ ରୂପେ ଅଭିହିତ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ ବାସୁଦେବ ମଥୁରାପୁରୀରେ ଅବତାର ଗ୍ରହଣକରି ଅଲୌକିକ ଲୀଳା ପ୍ରଦର୍ଶନ କରିଥିଲେ। ଅସୁରଗଣଙ୍କୁ ସଂହାର କରିଥିଲେ। ଦ୍ୱାରକାକୁ ଆସି ଗୃହସ୍ଥ ହୋଇଥିଲେ। କୁରୁକ୍ଷେତ୍ରରେ ଭାଇ ଭାଇ ମଧ୍ୟରେ ଯୁଦ୍ଧ ସୃଷ୍ଟି କରି ପୃଥିବୀର ଭାରଭୂତ ଦୁଷ୍ଟ ରାଜାଗଣଙ୍କୁ ସଂହାର କରିଥିଲେ। ସ୍ୱକୁଳର ଅହଙ୍କାରୀ ଯାଦବମାନଙ୍କୁ ଅଭିଶାପ ଦେଇ ବିନାଶ କରିବା ପରେ ସ୍ୱଧାମ ପ୍ରତ୍ୟାବର୍ତ୍ତନ ନିମିତ୍ତ ଇଚ୍ଛା କଲେ। ତାଙ୍କରି ଇଚ୍ଛାରେ ଲୋକପାଳ ବ୍ରହ୍ମା ଆଦି ଦେବଗଣ ଦ୍ୱାରକା ଭୁବନରେ ଦିନେ ଉପସ୍ଥିତ ହେଲେ। ସେମାନଙ୍କର ସଭାପତି ଥିଲେ ବେଦଗର୍ଭ ଭଗବାନ ଚତୁରାନନ।

ବର୍ତ୍ତମାନ ଭଗବାନଙ୍କର ବୈକୁଣ୍ଠକୁ ଫେରିଯିବାର ସମୟ ହୋଇ ଯାଇଛି। ତେଣୁ ସେହି ସର୍ବଜ୍ଞଙ୍କୁ ତାହାର ସୂଚନା ଦେବା ମୋର ପ୍ରଧାନ କର୍ତ୍ତବ୍ୟ।' ଏପରି ଭାବି ବ୍ରହ୍ମା ପ୍ରଥମେ ଭୂତନାଥଙ୍କୁ କହିଲେ, 'ପ୍ରଭୋ! ଭଗବାନଙ୍କର ବୈକୁଣ୍ଠକୁ ଫେରିଯିବାର ସମୟ ହୋଇଗଲାଣି। ଆସନ୍ତୁ ଏ ବିଷୟରେ ତାଙ୍କୁ ଜଣାଇବା, ନୋହିଲେ ପରେ ପ୍ରତ୍ୟାବର୍ତ୍ତନ ସୂଚନା ନ ଦେବାର କାରଣ ଆମକୁ ହିଁ ଜଣାଇବାକୁ ପଡ଼ିବ।'

ଏହାଶୁଣି ମହାଦେବ କହିଲେ, "ଆପଣ ଠିକ୍ କଥା କହିଛନ୍ତି। ଚାଲନ୍ତୁ ଭଗବାନଙ୍କର ଦର୍ଶନ ମିଳିବ ଏବଂ ଆମର କର୍ତ୍ତବ୍ୟ ମଧ୍ୟ ପୂର୍ଣ୍ଣ ହେବ। ସେ ତ ନିଜେ ସର୍ବଜ୍ଞ, ତାଙ୍କୁ କ'ଣ ସୂଚନା ଦେବା, ତଥାପି ଆମେ ଆମଆଡୁ ତାଙ୍କୁ ଜଣାଇଦେବା ଉଚିତ। ଏବେ କୁହନ୍ତୁ, ଆମେ ଏକା ଏକା ଯିବା ନା ଦଳବଳ ସହିତ ଯିବା।"

ବ୍ରହ୍ମା କହିଲେ, ଦେଖନ୍ତୁ ଆଜ୍ଞା! ନିଜରୂପରେ ଗଲେ ଏକୁଟିଆ ଯାଇ ହେବ। ଏବେ ତ ଆମକୁ ରାଜକୀୟ ଅନୁଶାସନ ଅନୁସାରେ ଯିବାକୁ ହେବ, ତେଣୁ ସାଙ୍ଗେ ସାଙ୍ଗେ ପାରିଷଦ ଓ ପରିଚାରକମାନଙ୍କ ସହିତ ଚାଲନ୍ତୁ।"

ଏପରି କଥା ଶୁଣି ମହାଦେବ ଭୂତ, ପ୍ରେତ, ପିଶାଚଗଣଙ୍କୁ ଦ୍ୱାରକା ଯାତ୍ରା ନିମିତ୍ତ ଆଦେଶ ଦେଲେ। ଏହା ଦେଖି ଡାକିନୀ ଓ ଶାକିନୀଗଣ ଯିବାକୁ ଇଚ୍ଛା କରିବାରୁ ମହାଦେବ କହିଲେ, 'ସେଠାରେ ତୁମର କିଛି କାମ ନାହିଁ, ତେଣୁ ତୁମେମାନେ ଯାଇପାରିବ ନାହିଁ।

ଶିବଙ୍କ ସହିତ ଭୂତ, ପ୍ରେତ ଓ ପିଶାଚବର୍ଗ; ବ୍ରହ୍ମାଙ୍କ ସହିତ ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ନାରଦ, ସନକ, ସନନ୍ଦନ, ସନତ୍‌କୁମାର, ସନାତନ ଓ ଅନ୍ୟାନ୍ୟ ଦକ୍ଷ ଆଦି ପୁତ୍ରଗଣ, ସ୍ୱର୍ଗର ପ୍ରଜାପତି, ଲୋକପାଳ, ଉପଲୋକପାଳ ଓ ସେମାନଙ୍କର ବାହନ; ଦ୍ୱାଦଶ ଆଦିତ୍ୟ, ଅଣଚାଶ ପବନ, ଅଷ୍ଟବସୁ, ଅଶ୍ୱିନୀକୁମାର, ରଭୁ, ଏକାଦଶ ରୁଦ୍ର, ବିଶ୍ୱଦେବଗଣ, ସାଧ୍ୟଗଣ, ଦେବଗଣ, ଉପଦେବଗଣ, ନାଗ, ସିଦ୍ଧାଚାରଣ, ଗୁହ୍ୟକ ଋଷିଗଣ , ପିତୃଗଣ, ବିଦ୍ୟାଧର ପ୍ରଭୃତି ନିଜ ନିଜର ପଦପଦବୀ ବେଶପୋଷାକ ପରିପାଟୀ ଅନୁସାରେ ସମବେତ ହେଲେ। ପ୍ରଥମେ ଋଷିମୁନିଗଣ ସ୍ୱସ୍ତିପାଠ କଲେ। ଅପ୍‌ସରାଗଣ ମଙ୍ଗଳଗାନ ଓ ନୃତ୍ୟକଲେ। ସମସ୍ତେ ପ୍ରଜାପିତା ବ୍ରହ୍ମାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ। ହଂସଶୁଭ୍ର ଦାଢ଼ି ଉପରେ ହାତ ବୁଲାଇ ବ୍ରହ୍ମା ସମସ୍ତଙ୍କୁ ଥରେ ଦେଖିନେଇ ଆଦେଶ ଦେଲେ, "ସମସ୍ତେ ଦ୍ୱାରକା ଅଭିମୁଖେ ଯାତ୍ରାରମ୍ଭ କର।"

ବ୍ରହ୍ମାଙ୍କ ଆଦେଶମାତ୍ରେ ସମସ୍ତେ ନିଜ ନିଜର ବିମାନ ଓ ବାହାନ ଉପରେ ବିଜେକରି ଦ୍ୱାରକା ଅଭିମୁଖେ ପ୍ରସ୍ଥାନ କଲେ। ଦ୍ୱାରକାରେ ପହଞ୍ଚି ପ୍ରଥମ ସୁବର୍ଣ୍ଣ ନିର୍ମିତ ସର୍ବାଙ୍ଗ ଶୋଭିତ ତ୍ରିଭୁବନମୁକୁଟମଣି ଭଗବାନଙ୍କୁ ଦର୍ଶନ କଲେ। ଦ୍ୱାରକାପୁରୀର ଅନୁପମ ଶୋଭା ଦର୍ଶନ କରୁ କରୁ ସମସ୍ତେ ରାଜ ପ୍ରାସାଦର ବିସ୍ତୃତ ଅଳିନ୍ଦ ମଧ୍ୟରେ ଥିବା କଳ୍ପବୃକ୍ଷତଳେ ଉପସ୍ଥିତ ହେଲେ। କଳ୍ପବୃକ୍ଷରେ ଥିବା ପ୍ରସ୍ଫୁଟିତ ପୁଷ୍ପର ସୁବାସରେ ସମଗ୍ର ରାଜପୁରୀ ସୁବାସିତ ହେଉଥିଲା। ଦ୍ୱାରକାପୁରୀର ଅତୁଳନୀୟ ଶୋଭା, ସମୃଦ୍ଧି ଓ ସିଦ୍ଧି ମଧ୍ୟରେ ବିରାଜିତ ଭଗବାନଙ୍କ ଅଦ୍‌ଭୁତ ରୂପଲାବଣ୍ୟ, ତେଜ, ଓଜ ଓ ଆକର୍ଷଣୀୟ ସୌନ୍ଦର୍ଯ୍ୟରେ ସମସ୍ତେ ମୁଗ୍ଧ ଓ ବିସ୍ମିତ ହୋଇ ପଡ଼ିଲେ। ଅପଲକ ଓ ସତୃଷ୍ଣ ନୟନରେ ଦେବଗଣ ସେହି ଅପରୂପ ପ୍ରଭୁଙ୍କ ରୂପସୁଧା ପାନକରିବାକୁ ଲାଗିଲେ। ସ୍ୱର୍ଗପୁରରୁ ଆଣିଥିବା ନନ୍ଦନକାନନର ପୁଷ୍ପ ସମୂହକୁ ଦେବଗଣ ସେହି ପ୍ରଭୁଙ୍କ ପାଦପଦ୍ମରେ ଅର୍ପଣ କରିଦେଲେ। ଭଗବାନଙ୍କ କୃପାଦୃଷ୍ଟି ସମସ୍ତଙ୍କ ଉପରେ ପଡ଼ିବାମାତ୍ରେ ଦେବଗଣ ଏକସ୍ୱର, ଏକରାଗ, ଏକତାଳ ଓ ଏକଲୟରେ ତାଙ୍କର ସ୍ତୁତି ଗାନ କରିବାରେ ଲାଗିଲେ।

ମହର୍ଷିସୂତ କହୁଛନ୍ତି, "ହେ ମୁନିଗଣ! ଦେବତା କେବେହେଲେ ପାଦରେ ଭୂପୃଷ୍ଠ ସ୍ପର୍ଶ କରନ୍ତି ନାହିଁ। ବିନା ଆଶ୍ରୟରେ ଶୂନ୍ୟରେ ରହି ସେମାନେ ଅନ୍ତର୍ଯ୍ୟାମୀ ଦ୍ୱାରକାଧୀଶଙ୍କୁ

ସ୍ତୁତି କରିବାକୁ ଲାଗିଲେ। ଦେବଗଣଙ୍କ ଦୀର୍ଘସ୍ତୁତି ଶୁଣି ଭଗବାନ ହସି ହସି କହିଥିଲେ, 'ଆପଣମାନେ ଆଜି ଏଭଳି ଦୀର୍ଘସ୍ତୁତି ଗାନ କରିବାର କାରଣ କ'ଣ ? ଆପଣମାନଙ୍କ ପ୍ରୟୋଜନ କୁହନ୍ତୁ। ସ୍ତୁତି ତ ଶୁଣିଲି, ଏବେ ମୋତେ କ'ଣ କରିବାକୁ ହେବ କୁହନ୍ତୁ, ଆପଣମାନେ କ'ଣ ଚାହାନ୍ତି ?'

''ଏହାଶୁଣି ଶିବ ପ୍ରମୁଖ ଦେବଗଣ ଉତ୍ତର ଦେବା ନିମିତ୍ତ ବ୍ରହ୍ମାଙ୍କୁ ଉସ୍‌କାଇଲେ। ପିତାମହ ବ୍ରହ୍ମା କହିଲେ, 'ହେ ସର୍ବାନ୍ତର୍ଯ୍ୟାମୀ ! ହେ ବିଶ୍ୱମ୍ଭର ! ଆପଣ ପ୍ରତି ଘଟରେ ବିରାଜମାନ କରୁଛନ୍ତି। ଆପଣଙ୍କୁ କ'ଣ ବା ଅଜଣା ଅଛି। ତଥାପି ସବୁ ଜାଣି ଶୁଣି ଅଜଣା ଭଳି ପଚାରୁଥିବାରୁ ଆପଣଙ୍କ ଆଦେଶ ପାଳନ କରିବାକୁ ଯାଇ ଆପଣଙ୍କୁ ନିବେଦନ କରୁଛି। ପୂର୍ବେ ଆମ୍ଭେମାନେ ପୃଥ୍ୱୀକୁ ସାଙ୍ଗରେ ନେଇ କ୍ଷୀର ସାଗରରେ ଆପଣଙ୍କ ଦର୍ଶନ ପାଇଁ ଯାଇଥିଲୁ। ସେଠାରେ ଭୂଭାର ଉଦ୍ଧାର କରିବା ନିମିତ୍ତ ଆପଣଙ୍କୁ ପ୍ରାର୍ଥନା କରିଥିଲୁ।''

ଭଗବାନ୍ କହିଲେ, ''ତୁମ୍ଭମାନଙ୍କ ପ୍ରାର୍ଥନା ଅନୁସାରେ ମୁଁ ପୃଥିବୀରେ ଅବତାର ଗ୍ରହଣ କଲି।''

ବ୍ରହ୍ମା ତତ୍‌କ୍ଷଣାତ୍, ''ଆଜ୍ଞା ହଁ, ସେହି କଥାହିଁ ମୁଁ ନିବେଦନ କରୁଛି। ଆପଣ ଆମର ଅନୁରୋଧ ଅନୁସାରେ ଭୂଭାର ନିବାରଣ କରିଛନ୍ତି। ଯେଉଁଥିପାଇଁ ପ୍ରାର୍ଥନା କରିଥିଲୁ, ତାହା ଯଥାରୀତି ସମ୍ପନ୍ନ ହୋଇଛି। ପୂର୍ବେ ରାକ୍ଷସମାନଙ୍କ ଅତ୍ୟାଚାର ହେତୁ ସାଧୁ ପୁରୁଷଗଣ ଧର୍ମକାର୍ଯ୍ୟ ପାଳନ କରିବାରେ କଷ୍ଟ ଅନୁଭବ କରୁଥିଲେ। ବର୍ତ୍ତମାନ ସେ ଅବସ୍ଥାର ପରିବର୍ତ୍ତନ ଘଟିଛି। ସମଗ୍ର ସୃଷ୍ଟିରେ ଯେଉଁ ଅଜ୍ଞାନ ରୂପକ ସାଗରରେ ନିର୍ମଳ ଚନ୍ଦ୍ରର ଶୋଭାମୟୀ ଜ୍ୟୋତ୍ସ୍ନାତୁଲ୍ୟ ଆପଣଙ୍କ କଥା ସମସ୍ତଙ୍କୁ ଆନନ୍ଦ ଦାନ କରିଛି। ଆପଣଙ୍କ ଦିବ୍ୟ ରୂପଲାବଣ୍ୟ ସମ୍ପଦରେ ସମସ୍ତେ ଆତ୍ମବିସ୍ମୃତ ହୋଇଛନ୍ତି। ଏହି ଅଭିନବ ଅବତାର ଗ୍ରହଣ କରି ଆପଣ ଏ ସଂସାରର ବହୁ ଉପକାର ସାଧନ କରିଛନ୍ତି। ହେ ପ୍ରଭୋ ! ଅସୁର ସଂହାର କରିବା ଆପଣଙ୍କ ପକ୍ଷରେ ଏକ ତୁଚ୍ଛ ସାଧାରଣ କାର୍ଯ୍ୟ। ଆପଣଙ୍କ କୁଟିଳ ଭ୍ରୂକୁଟି ମାତ୍ର ସେଥିପାଇଁ ଯଥେଷ୍ଟ। କିନ୍ତୁ ହେ ଭଗବନ୍ ! ଭାଗବତ କଥାର ପ୍ରସାର ହିଁ ଆପଣଙ୍କ ଏ ଅବତାରର ମୁଖ୍ୟ କାର୍ଯ୍ୟ। ଆପଣଙ୍କ ଅଲୌକିକ କାର୍ଯ୍ୟାବଳୀକୁ କବିଗଣ କାବ୍ୟରୂପରେ ବର୍ଣ୍ଣନ କରିବେ। ସେହି ଭାଗବତ କଥାର ଶ୍ରବଣ ଓ କୀର୍ତ୍ତନ ଦ୍ୱାରା ଲୋକେ ସଂସାର ସାଗରକୁ ସହଜରେ ପାର ହୋଇ ପାରିବେ। କଳିଯୁଗର ଜୀବମାନଙ୍କ ପାଇଁ ଭାଗବତ କଥାର ଶ୍ରବଣ ପଠନ ବ୍ୟତୀତ ଅନ୍ୟ କୌଣସି ସୁଗମ ପନ୍ଥା ନାହିଁ।'

ଭଗବାନ ହସି ହସି କହିଲେ, ''ହେ ବ୍ରହ୍ମନ୍ ! ଆପଣ ଏତେବେଳେ ପର୍ଯ୍ୟନ୍ତ କେବଳ ଦୀର୍ଘ ଗୌରଚନ୍ଦ୍ରିକା ମଧ୍ୟରେ ନିଜର ବକ୍ତବ୍ୟ ପ୍ରକାଶ କରି ପାରି ନାହାନ୍ତି, ତେଣୁ ପ୍ରକୃତ ବକ୍ତବ୍ୟ କ'ଣ, ତାହା ପ୍ରକାଶ କରନ୍ତୁ।''

ସାମାନ୍ୟ ଲଜ୍ଜିତ ହୋଇ ବ୍ରହ୍ମା କହିଲେ, ''ହେ ପୁରୁଷୋତ୍ତମ ! ଆପଣ ତ ସମସ୍ତ ଜାଣନ୍ତି। ପୃଥିବୀରେ ଅବତୀର୍ଣ୍ଣ ହେବାର ସମୟ ଏବେ ଶହେ ପଚିଶ ବର୍ଷ ବିତି ଗଲା। କଳିଯୁଗରେ ତାହାହିଁ ମାନବର ସାଧାରଣ ଜୀବନ କାଳ। ମାନବରୂପରେ ଅବତୀର୍ଣ୍ଣ ହୋଇ ଆପଣ ମାନବୋଚିତ ଲୀଳାହିଁ କରିଛନ୍ତି। ଆପଣ ଅଜ ହୋଇ ମଧ୍ୟ ଜନ୍ମଗ୍ରହଣ କରିଛନ୍ତି। କ୍ରୋଧରହିତ ହୋଇ ମଧ୍ୟ କ୍ରୋଧପ୍ରକାଶ କରିଛନ୍ତି। ଦେବତାମାନଙ୍କର ଯେଉଁ କାର୍ଯ୍ୟ ନିମିତ୍ତ

ଆପଣ ନରବପୁ ଧାରଣ କରିଥିଲେ ତାହା ସମ୍ପନ୍ନ ହୋଇଛି। ଏବେ ଦେବଗଣଙ୍କର ଅନ୍ୟ କୌଣସି କାର୍ଯ୍ୟ ନାହିଁ। ଆପଣ ଜନ୍ମ ହୋଇ ଯେଉଁ ବଂଶକୁ ଉଜ୍ଜ୍ୱଳ କରିଥିଲେ ସେ ଆଜି ଲୁପ୍ତ ପ୍ରାୟ ହୋଇ ସାରିଛି। ମନେହୁଏ, ଆପଣ ନିଜର ଲୀଳା ଉପସଂହାର କରିଛନ୍ତି। ଏହି ଅବତାରର କାର୍ଯ୍ୟ ଶେଷ ହୋଇଛି ବୋଲି ଆପଣ ନିଜେ ଅନୁଭବ କରିଥିଲେ, ଏବଂ ସ୍ୱୟଂ ଇଚ୍ଛା କରୁଥିଲେ, ଆପଣ ପରମଧାମ ପ୍ରସନ୍ନତା ପୂର୍ବକ ପ୍ରତ୍ୟାଗମନ କରି ଆମ୍ଭମାନଙ୍କ ଭଳି ସମସ୍ତ ଅନୁଚରଙ୍କୁ ଅନୁଗୃହୀତ କରନ୍ତୁ, ଏହାହିଁ ଆମ୍ଭମାନଙ୍କର ବିନୀତ ନିବେଦନ।''

ଭଗବାନ ହସି ହସି କହିଲେ, ''ତୁମ୍ଭେମାନେ ଅତୀବ ସ୍ୱାର୍ଥପର, ଦରକାର ପଡ଼ିବାରୁ ଆସ ଆସ ବୋଲି ଡାକିବାକୁ ଲାଗିଲ, ଆଉ ଏବେ ସ୍ୱାର୍ଥସାଧିତ ହୋଇଯିବା ପରେ ପଳାଅ ପଳାଅ ବୋଲି କହିବାରେ ଲାଗିଛ।''

ବ୍ରହ୍ମା ଲଜ୍ଜିତ ହୋଇ କହିଲେ, ''ପ୍ରଭୋ ! ଆପଣ ହିଁ ଆମକୁ ଆବାହନ ଓ ବିସର୍ଜନ କରିବାକୁ ଶିକ୍ଷା ଦେଇଛନ୍ତି। ଆମେ ଆପଣଙ୍କ ବିଧାନ ପାଳନ କରିଛୁ। ବର୍ତ୍ତମାନ କରିବା ଓ କରାଇବା ବିଷୟରେ ଆପଣ ସ୍ୱାଧୀନ, ଆପଣ ସର୍ବସମର୍ଥ ; ତେଣିକି ଆପଣଙ୍କ ଇଚ୍ଛା।''

ପ୍ରସନ୍ନତା ପ୍ରକାଶ କରି ଭଗବାନ୍ କହିଲେ, ''ବ୍ରହ୍ମନ୍ ! ଠିକ୍ ତା' ନୁହେଁ ! ଆପଣ ଯାହା କହୁଛନ୍ତି ମୁଁ ତାହା ବହୁପୂର୍ବରୁ ସ୍ଥିର କରିସାରିଛି। ତୁମ୍ଭମାନଙ୍କର ଯେଉଁ ପ୍ରାର୍ଥନା ତାହା ପୂରଣ କରିଛି। ପୃଥିବୀର ଭାର। ନିବାରିତ ହୋଇଛି। ମୁଁ ଏବେ ମୋର ଲୀଳା ସଂବରଣ କରିବାକୁ ଇଚ୍ଛା କରୁଛି। ମୋର ପ୍ରଭାବ, ପ୍ରତାପ, ବଳ, ବିକ୍ରମ ଓ ବୈଭବ ଦ୍ୱାରା ପରିପୁଷ୍ଟ ଯଦୁବଂଶ ବର୍ତ୍ତମାନ ପୃଥିବୀର ଭାରସ୍ୱରୂପ ହୋଇ ରହିଛି। ମୋ ଯୋଗୁଁ ଯାଦବକୁଳ ମଦୋନ୍ମତ୍ତ ଓ ଅବିଜିତ ହୋଇପାରିଛନ୍ତି। ''କଂଟକେ ନୈବ କଣ୍ଟକମ୍'', ନ୍ୟାୟରେ ଏହି ଯଦୁକୁଳର ସଂହାର ପରେ ହିଁ ମୋର ଲୀଳା ସମାପ୍ତ ହେବ। ବିପ୍ରଙ୍କ ଦ୍ୱାରା ଏ କୁଳକୁ ଅଭିଶପ୍ତ କରାଯାଇଛି। ଆଉ ଅଳ୍ପ କାଳ ମଧ୍ୟରେ ଏହି ଯଦୁକୁଳ କାଳକବଳିତ ହେବ। ତା'ପରେ ହିଁ ମୁଁ ଆପଣମାନଙ୍କ ପାଖକୁ ଫେରି ଯିବି। ଆପଣମାନଙ୍କୁ କୃତାର୍ଥ କରି ମୋ ସ୍ୱଧାମ ଯାତ୍ରା କରିବି। ତେଣୁ, ଆପଣମାନେ ଧୈର୍ଯ୍ୟ ଧାରଣ କରନ୍ତୁ।''

ନୈମିଷାରଣ୍ୟନିବାସୀ ଶୌନକାଦି ମୁନିଗଣଙ୍କୁ ମହର୍ଷି ସୂତ କହୁଛନ୍ତି, ''ମୁନିଗଣ ! ଭଗବାନଙ୍କଠାରୁ ଏହାଶୁଣି ଦେବଗଣ ଆନନ୍ଦ ମନରେ ବିଶ୍ୱନାଥଙ୍କୁ ପରିକ୍ରମା କରି ପୁନଃ ପୁନଃ ପ୍ରଣାମ ଜଣାଇଲେ ; ଏବଂ ତାଙ୍କଠାରୁ ଅନୁମତି ନେଇ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାଗମନ କଲେ। ବର୍ତ୍ତମାନ, ଭଗବାନ ଯଦୁକୁଳ ବିନାଶର କାରଣ ଜାଣିବାକୁ ଇଚ୍ଛୁକ ଥିବା ଉଦ୍ଧବଙ୍କୁ ଯେଉଁ ଗୂଢ଼ ତତ୍ତ୍ୱଜ୍ଞାନ ଉପଦେଶ ଦେଇଥିଲେ ତାହା କହିବି। ଉଦ୍ଧବ ସାକ୍ଷାତ୍ ଭଗବାନଙ୍କ ସଦୃଶ। ଭଗବଦ୍ ଭକ୍ତଙ୍କ ସମସ୍ତ କାର୍ଯ୍ୟ ଜଗତର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ। ତେଣୁ ଭକ୍ତ ଉଦ୍ଧବ ଭଗବାନ ଶ୍ରୀକୃଷ୍ଣଙ୍କୁ ଯେଉଁ ପ୍ରଶ୍ନ ପଚାରିଥିଲେ ସେଥିରେ ସଂସାରୀ ଲୋକମାନଙ୍କର ଉଦ୍ଧାର ବିଷୟ ହିଁ ବର୍ଣ୍ଣିତ ହୋଇଛି।''

## ଛପ୍ପୟ

କରି ବିନତୀ ଅଜ କହେ ନାଥ। ଭୂଭାର ଉତାର୍ୟୋ।
ପାପୀ ଅସୁରନି ମାରି ଦେବ ଦ୍ୱିଜ ଦୁଃଖ ନିବାର୍ୟୋ।।

ହମ ସବ ପ୍ରଭୁବର ଖଡ଼େ କୃପା କରି ହମେ ନିହାରେ ।
ଅବ ନ ରହ୍ୟୋ କଛୁ କାମ ଧାମ ଘନଶ୍ୟାମ ପଧରେ ।।
ହଁସି ବୋଲେ ରୁକ୍ମିନିରମନ, ଶେଷ ଅବହିଁ କଛୁ କାମ ଅଢ଼ ।
ଯଦୁକୁଲ କୋ ସଂହାର କରି, ତବ ଆଉଁ ପୁନି ଧାମ ନିଜ ।।



# ଭଗବାନଙ୍କୁ ଉଦ୍ଧବଙ୍କ ପ୍ରାର୍ଥନା

ନାହଂ ତବାଙ୍‌ଘ୍ରିକମଲଂ କ୍ଷଣାର୍ଧମପି କେଶବ ।
ତ୍ୟକ୍ତୁଂ ସମୁସହେ ନାଥ ସ୍ୱଧାମ ନୟ ମାମପି ।। ★

[ଶ୍ରୀଭା ୧୧ସ୍କ.୬ଅ.୪୩ ଶ୍ଳୋକ]

### ଛପ୍‌ପୟ

ହରି ଆୟସୁ ସିର ଧାରି ଦେବ ନିଜ ଧାମ ସିଧାରେ ।
ପରୀ ଦ୍ୱାରକା ମାହିଁ ସବନି ଉତ୍‌ପାତ ନିହାରେ ।।
ବୋଲେ ସବ ତେ ଶ୍ୟାମ ନିତ୍ୟ ଅପଶକୁନ ଦିଖାବେ ।
ସବ ମିଲି ଚଲୋ ପ୍ରଭାସ ପିତର ସୁର ପୂଜି ସିହାବେଁ ।।
କରିବେ ଶାନ୍ତି ଅନିଷ୍ଟ କୀ, ସବ ଚଲିୟେ ଉଦ୍ୟତ ଭୟେ ।
ହରି ହୟ କୀ ସବ ସମୁଝିକେ, ଉଦ୍ଧବଜୀ ପ୍ରଭୁ ଢିଙ୍ଗ ଗୟେ ।।

ହାୟ, ଏ ସଂସାର ସତେ କେଡ଼େ ବିଭସ ? ଏଠାରେ ପିଲାଟିଏ ଜନ୍ମ ହୁଏ କାହିଁକି ? ମରିବା ପାଇଁ । ଫଳଟି ପାଚେ ଖସି ପଡ଼ିବା ପାଇଁ । ଶରୀର ବଢ଼େ ଛୋଟ ହେବା ପାଇଁ । ସୂର୍ଯ୍ୟ ଆକାଶକୁ ଉଠନ୍ତି ତଳକୁ ଖସିବା ପାଇଁ । ସେହିପରି ସଂଯୋଗରୁ ବିୟୋଗ ହୁଏ । ସୁଖରୁ ଦୁଃଖ ଜାତ ହୁଏ । ଏ ସଂସାରରେ ଯେଉଁମାନଙ୍କ ସହିତ ହସି ଖେଳି ସମୟ ବିତାଇଛୁ,

---



ହେ ଦେବଦେବ ନିରଞ୍ଜନ । ସୁପୁଣ୍ୟ ଶ୍ରବଣ କୀର୍ତ୍ତନ ।।
କୁଳ କି ସଂହାରିବୁ ତୁହି । ଏମନ୍ତ ପ୍ରାୟ ମୁଁ ମଣଇଁ ।।
ଏ ନରଲୋକ ଛାଡ଼ି ହରି । ନିଶ୍ଚୟ ଯିବୁ ନିଜପୁରୀ ।।
ତୋହର ଅଭୟ ଚରଣ । ପରମ ମଙ୍ଗଳ କାରଣ ।।
ସେ ପାଦେ ମୋର ମନ ଜଡ଼ି । ତିଳେ ମୁଁ ନପାରଇ ଛାଡ଼ି ।।
ତୋ ପାଦେ ପଶିଲି ଶରଣ । ମୋତେ ନ ଛାଡ଼ ନାରାୟଣ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କନ୍ଧ, ୭ମ ଅ.]

ଯାହାକୁ ନିଜର ସର୍ବସ୍ୱ ଦେଇ ଆପଣାର କରିଛୁ, ଏବଂ ଯାହାର ବିୟୋଗ ଆମେ କେବେହେଲେ କଳ୍ପନା କରିପାରୁ ନ ଥିଲେ, ସେ ଯେତେବେଳେ ଆମକୁ ଛାଡ଼ି ଚାଲିଯାଏ, ସେତେବେଳେ ଆମେ ବିଧାତାଙ୍କୁ ଅଜସ୍ର ଗାଳି ଦେଉ। ଆମେ କହୁ ହେ ବିଧାତା, ଯଦି ବିୟୋଗ ଦୁଃଖ ଦେବାର ଥିଲା ତେବେ ସଂଯୋଗ ସୁଖ ଦେଲ କାହିଁକି ; କିନ୍ତୁ ଆମର ଏ ନିବେଦନ କିଏ ଶୁଣୁଛି ? ଶେଷରେ ଆମେ ଛାତିକୁ ପଥର କରି ସବୁ ସହିଥାଉ, ସହ୍ୟ ନ କରି ଆଉ କ'ଣ କରିବା ! କାଳବଶତଃ ଆମର ଅତି ପ୍ରିୟ ମଧ୍ୟ ଅତୀବ ନିଷ୍ଠୁର ହୋଇଥାଏ ।

ସୂତ କହୁଛନ୍ତି, ''ହେ ମୁନିଗଣ, ଯେତେବେଳେ ଦେବଗଣ ଭଗବାନଙ୍କ ଆଦେଶ ପାଇ ସ୍ୱ ସ୍ୱ ଲୋକକୁ ଫେରିଗଲେ, ସେତେବେଳେ ସେ ସ୍ୱଧାମ ପ୍ରତ୍ୟାବର୍ତ୍ତନ ନିମିତ୍ତ ମନବଳାଇଲେ । ଭଗବାନଙ୍କ ସଂକଳ୍ପ ହୋଇଯିବାକ୍ଷଣି ଶ୍ରୀଙ୍କର ବି ସଂକଳ୍ପ ହୋଇଗଲା । କାରଣ ଶ୍ରୀ ଭଗବାନଙ୍କ ବିନା ରହିପାରନ୍ତି ନାହିଁ। ସଙ୍ଗେ ସଙ୍ଗେ ଲକ୍ଷ୍ମୀ ମଧ୍ୟ ଧରାଧାମ ତ୍ୟାଗକରି ପରମଧାମରେ ଉପସ୍ଥିତ ହେଲେ। ଲକ୍ଷ୍ମୀଙ୍କ ବିନା ସମଗ୍ର ଦ୍ୱାରକା ଶ୍ରୀହୀନ ହୋଇ ପଡ଼ିଲା। ପ୍ରତିଦିନ ନୂଆ ନୂଆ ଉତ୍ପାତ ସୃଷ୍ଟି ହେଲା । ଦ୍ୱାରକାରେ ବିନା ମେଘରେ ବଜ୍ରପାତ, ବିନା ପର୍ବରେ ସୂର୍ଯ୍ୟପରାଗ, ବାରମ୍ବାର ଭୂମିକମ୍ପ ସୃଷ୍ଟି ହେଲା । ରାତ୍ରିରେ ଦକ୍ଷିଣ ଦିଗରେ ଘନ ଘନ ଉଲ୍କାପାତ, ଦିବସରେ ବାସଗୃହ, ଦେବମନ୍ଦିର ଓ ପବିତ୍ର ସ୍ଥାନମାନଙ୍କରେ ମାଂସଭୋଜୀ ପକ୍ଷୀଗଣଙ୍କ ପ୍ରବେଶ, କୁକୁର ଓ ପେଚକାଦିଙ୍କର କ୍ରନ୍ଦନ ପ୍ରଭୃତି ଅଦ୍ଭୁତ ଘଟଣାମାନ ଦେଖାଗଲା ; ବେଳେ ବେଳେ ଆକଶରୁ ରକ୍ତ ବୃଷ୍ଟି ହେବାରେ ଲାଗିଲା। ଘୃତ ଆହୁତି ଦେଲେ ମଧ୍ୟ ଅଗ୍ନି ଜଳିଲା ନାହିଁ। ଗାଈ ବଳଦ ପ୍ରଭୃତିଙ୍କ କ୍ରନ୍ଦନରେ ଚାରିଦିଗ ବ୍ୟାପିଗଲା। ଏ ପ୍ରକାର ଅପଶକୁନ ଦର୍ଶନରେ ସମସ୍ତେ ଚିନ୍ତିତ, ଭୟଭୀତ ଓ ଉଦ୍‌ବିଗ୍ନ ହୋଇ ପଡ଼ିଲେ। ପରସ୍ପର ମଧ୍ୟରେ କୁହାକୁହି ହେଲେ, 'ଏ କି ସମୟ ଆସିଲା ଯେ ପ୍ରତିଦିନ ନୂଆ ନୂଆ ଉପଦ୍ରବ ଦେଖା ଯାଉଛି। ଏହାର କାରଣ କ'ଣ ?'

କେତେକ କହିଲେ, 'ଏ ବିଷୟରେ ଆମେ କିଛି ଭାବିପାରୁ ନାହୁଁ। ଚାଲ ସମସ୍ତେ ମିଶି ଭଗବାନଙ୍କୁ ଯାଇ ପଚାରିବା'। ସମସ୍ତେ ଏହି ସିଦ୍ଧାନ୍ତ ନେବା ପରେ ଜଣେ ଚତୁର ବ୍ୟକ୍ତି କହିଲେ, 'ଭାଇମାନେ ! ଦେଖ, ସମସ୍ତେ ଭଗବାନଙ୍କ ପାଖକୁ ଯାଇ ଭିଡ଼ କରିବା ଉଚିତ ହେବ ନାହିଁ। ତେଣୁ ବିଦ୍ୟାବୁଦ୍ଧିସମ୍ପନ୍ନ କେତେଜଣ ବୃଦ୍ଧ ଲୋକ ଯାଆନ୍ତୁ। ସେମାନେ ଏ ଘଟଣା ଭଗବାନଙ୍କୁ ଜଣାଇବେ। ସେ ଯାହା ଆଦେଶ ଦେବେ ତାହାହିଁ ଆମେ ପାଳନ କରିବା ।'

ଏ ପ୍ରସ୍ତାବରେ ସମସ୍ତେ ଏକମତ ହେଲେ। କେତେକ ବୃଦ୍ଧବ୍ୟକ୍ତି ଭଗବାନଙ୍କ ନିକଟରେ ପହଞ୍ଚି ଯଥାରୀତି ସମ୍ମାନ ଜଣାଇବା ପରେ ବୟୋଜ୍ୟେଷ୍ଠ ବ୍ୟକ୍ତିଜଣକ କହିଲେ, 'ବାସୁଦେବ ! ଆଜିକାଲି ଦ୍ୱାରକାରେ ନିତ୍ୟନୂତନ ଉତ୍ପାତ ଲାଗିରହିଛି, ନାନା ପ୍ରକାର ଅପଶକୁନ ଦେଖାଯାଉଛି । ଏହାର କାରଣ କ'ଣ ?'

ଏହା ଶୁଣି ଭଗବାନ କିଛି ସମୟ ଗମ୍ଭୀର ହୋଇଗଲେ। ପରେ ରହି ରହି କହିଲେ, 'ହଁ ମହାଶୟ ! ମୁଁ ବି ଦେଖୁଛି ଆଜିକାଲି ଦ୍ୱାରକାରେ ଅନେକ ପ୍ରକାର ଅନିଷ୍ଟ ସୂଚକ ଉପଦ୍ରବ ଦେଖାଯାଉଛି। ଦ୍ୱିତୀୟରେ, ଆମ ଯଦୁକୁଳ ପ୍ରତି ବ୍ରାହ୍ମଣଙ୍କ ଦାରୁଣ ଅଭିଶାପ ପଡ଼ିଛି। ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇ ପାରନ୍ତି, କିନ୍ତୁ ବ୍ରାହ୍ମଣର ଅଭିଶାପ କେବେହେଲେ ଅନ୍ୟଥା ହେବନାହିଁ।'

ବୃଦ୍ଧ ବ୍ୟକ୍ତି ଜଣକ କହିଲେ, 'ହେ ମହାରାଜ ! ତେବେ ଆମକୁ କ'ଣ କରିବାକୁ ପଡ଼ିବ ସେ ବିଷୟରେ ଉପାୟ ବତାନ୍ତୁ ।'

ଭଗବାନ କହିଲେ, 'ଆର୍ଯ୍ୟଗଣ ! ଆପଣମାନେ ସମସ୍ତେ ବୟୋବୃଦ୍ଧ ଓ ମୋର ପୂଜନୀୟ । ଆପଣମାନେ ନିଜେ ନିଜେ ଚିନ୍ତା କରନ୍ତୁ, ଏପରି ଦୁରାବସ୍ଥାରେ ଆମର କର୍ତ୍ତବ୍ୟ କ'ଣ ? ମୋ ମତରେ ବଞ୍ଚିବାକୁ ଇଚ୍ଛାଥିଲେ ଆମ୍ଭମାନଙ୍କର ଶୀଘ୍ର ଦ୍ୱାରକା ପରିତ୍ୟାଗ କରିଦେବା ଉଚିତ ।'

ବୃଦ୍ଧ ପଚାରିଲେ, ''ବାସୁଦେବ ! ଦ୍ୱାରକା ଛାଡ଼ି ଆମ୍ଭେମାନେ କୁଆଡ଼େ ଯିବା ? ଆପଣ କୌଣସି ତୀର୍ଥ ସ୍ଥାନର ନାମ କୁହନ୍ତୁ, ଯେଉଁସ୍ଥାନକୁ ଯାଇ ଆମ୍ଭେମାନେ ଏ ପ୍ରକାର ଅନିଷ୍ଟ ନ ହେବା ପାଇଁ କିଛି ବ୍ୟବସ୍ଥା କରିପାରନ୍ତେ ।''

ଭଗବାନ କହିଲେ, ''ମୋ ମତରେ ଆମ୍ଭେମାନେ ସମସ୍ତେ ପ୍ରଭାସ କ୍ଷେତ୍ରକୁ ଚାଲିଯିବା । ପ୍ରଭାସ ଏକ ମହାନ୍ ପବିତ୍ର କ୍ଷେତ୍ର । ସାଗର ଓ ସରସ୍ୱତୀ ନଦୀର ସଙ୍ଗମ ସ୍ଥଳରେ ଏହା ଅବସ୍ଥିତ । ତାହାପୁଣି ସୋମେଶ୍ୱର ଶିବଙ୍କ ଆବାସସ୍ଥଳୀ ।''

''ପୂର୍ବକାଳ କଥା କହୁଛି, ଆପଣମାନେ ଶୁଣନ୍ତୁ । ସେତେବେଳେ ଚନ୍ଦ୍ର ନିଜର ସତେଇଶ ପତ୍ନୀଙ୍କ ମଧ୍ୟରୁ ରୋହିଣୀକୁ ଅତି ଆଦର କରୁଥିଲେ । ଅନ୍ୟ ପତ୍ନୀମାନଙ୍କ ସହିତ କଥାବାର୍ତ୍ତା ବନ୍ଦ କରିଦେବାରୁ ସେମାନେ ରୁଷ୍ଟ ହୋଇ ପିତା ଦକ୍ଷପ୍ରଜାପତିଙ୍କୁ ପତି ଚନ୍ଦ୍ରଙ୍କର ଏପରି ଦୁର୍ବ୍ୟବହାର ବିଷୟ ଜଣାଇଲେ । ଦକ୍ଷ ଜାମାତାଙ୍କୁ ବହୁଭାବରେ ବୁଝାଇଲେ ମଧ୍ୟ ଚନ୍ଦ୍ର ଶ୍ୱଶୁରଙ୍କର କୌଣସି କଥା ରକ୍ଷାକଲେ ନାହିଁ । ଶେଷରେ ଦକ୍ଷ ଅନନ୍ୟୋପାୟ ହୋଇ କୁଷ୍ଠ ରୋଗାକ୍ରାନ୍ତ ହୋଇଯିବା ପାଇଁ ଚନ୍ଦ୍ରଙ୍କୁ ଅଭିଶାପ ଦେଲେ । ଏଥିରେ ଚନ୍ଦ୍ର ଭୟଭୀତ ହୋଇ ଋଷିମାନଙ୍କୁ ମୁକ୍ତିର ଉପାୟ ପଚାରିଲେ । ସମସ୍ତେ କହିଲେ, ପ୍ରଜାପତି ଦକ୍ଷଙ୍କ ଅଭିଶାପ ବିଫଳ ହେବ ନାହିଁ । କିନ୍ତୁ ଆପଣ ପ୍ରଭାସ କ୍ଷେତ୍ରକୁ ଯାଇ ସଙ୍ଗମରେ ସ୍ନାନ କରି ଓ ଶିବଙ୍କ ଉପାସନା ଦ୍ୱାରା ରୋଗମୁକ୍ତ ହୋଇପାରିବେ । ପ୍ରତ୍ୟହ କ୍ଷୀଣରୁ କ୍ଷୀଣତର ହେଉଥିବା ଆପଣଙ୍କ କଳା ପୁନର୍ବାର ବୃଦ୍ଧିଲାଭ କରିବ ।'

''ଋଷିଗଣଙ୍କ ଉପଦେଶ ଅନୁସାରେ ଚନ୍ଦ୍ର ପ୍ରଭାସ କ୍ଷେତ୍ରରେ ସ୍ନାନ କରି କୁଷ୍ଠ ରୋଗରୁ ମୁକ୍ତ ହୋଇଥିଲେ । ତାଙ୍କର କ୍ଷୟ ପାଉଥିବା କଳା ଧୀରେ ଧୀରେ ବଢ଼ି, ପୂର୍ଣ୍ଣିମା ଦିନ ପୂର୍ଣ୍ଣ ହେଲା । ସେହିଦିନଠାରୁ ଚନ୍ଦ୍ରଙ୍କ କଳା କୃଷ୍ଣପକ୍ଷରେ ଧୀରେ ଧୀରେ କ୍ଷୟହୁଏ ଓ ଶୁକ୍ଳପକ୍ଷରେ ବଢ଼ି ବଢ଼ି ପୂର୍ଣ୍ଣିମାଦିନ ପୂର୍ଣ୍ଣ ହୁଏ । ଏହାହିଁ ପ୍ରଭାସକ୍ଷେତ୍ର ମହାତ୍ମ୍ୟ ।''

ବୃଦ୍ଧ କହିଲେ, ''ହଁ ମହାରାଜ ! ପୂର୍ବରୁ ପ୍ରଭାସ କ୍ଷେତ୍ରର ପ୍ରଶଂସା ଶୁଣିଥିଲି, ଏବେ ଆପଣଙ୍କ ଶ୍ରୀମୁଖରୁ ସେହି ମହାତ୍ମ୍ୟ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲି, ବର୍ତ୍ତମାନ ଆପଣ ହିଁ କୁହନ୍ତୁ ସେଠାକୁ ଯାଇ ଆମ୍ଭେମାନେ କ'ଣ କରିବା ?''

ଭଗବାନ୍ କହିଲେ, ''ମହାଶୟ ! ଯେତେବେଳେ ଅନିଷ୍ଟ ଆଶଙ୍କା ମନରେ ଆସେ ସେତେବେଳେ ଲୋକେ ଶୁଭ କାର୍ଯ୍ୟମାନ କରନ୍ତି । ଆମ୍ଭେମାନେ ସେହି ପବିତ୍ର ପ୍ରଭାସ କ୍ଷେତ୍ରରେ ପହଞ୍ଚି ପ୍ରଥମେ ସ୍ନାନ କରିବା ଓ ଦେବତା, ଋଷି ଓ ପିତୃଗଣଙ୍କ ତର୍ପଣ କରିବା, ପୁଣି ସମସ୍ତ ଶୁଭକାର୍ଯ୍ୟ ମଧ୍ୟରେ ବ୍ରାହ୍ମଣ ଭୋଜନ ଭଳି ଶ୍ରେଷ୍ଠ କାର୍ଯ୍ୟ କରିବା, କାରଣ ବ୍ରାହ୍ମଣ

ଭୋଜନ ବ୍ୟତୀତ କୌଣସି ଶୁଭକାର୍ଯ୍ୟ ସଫଳ ହୁଏନାହିଁ। ସମସ୍ତ ପ୍ରକାର ଶୁଭକାର୍ଯ୍ୟରେ ବ୍ରାହ୍ମଣ ଭୋଜନ ପ୍ରଧାନ କର୍ମ ଓ ଅନ୍ୟ କାର୍ଯ୍ୟମାନ ଗୌଣ କର୍ମ ଭାବେ ଗୃହୀତ ହୁଏ। ତେଣୁ, ଆନନ୍ଦର ସହିତ ଆମ୍ଭେମାନେ ବ୍ରାହ୍ମଣମାନଙ୍କୁ ସୁସ୍ୱାଦୁ ଭୋଜ୍ୟ ପଦାର୍ଥ ପର୍ଯ୍ୟାପ୍ତ ପରିମାଣରେ ଦାନ କରିବା। ଭୋଜ୍ୟପଦାର୍ଥ ଏପରି ହେବା ଉଚିତ ଯାହାକୁ ବୃଦ୍ଧ ବ୍ରାହ୍ମଣମାନେ ପାକୁଆ ପାଟିରେ ସହଜରେ ଖାଇପାରିବେ। ପୁଣି ଉଦାରଭାବରେ ଆମେ ସତ୍‌ପାତ୍ରଙ୍କୁ ଦୁଧିଆଳି ଗାଈ, ସୁନା, ଲୁଗାପଟା, ଗହଣାଗାଣ୍ଠି ଓ ଅନ୍ୟାନ୍ୟ ସମସ୍ତ ବସ୍ତୁ ଦାନ କରିବା। ଆମ୍ଭେମାନେ ବର୍ତ୍ତମାନ ବିପଦ ସାଗରରେ ମଗ୍ନ ହେବାକୁ ଯାଉଛେ। ସେହି ସାଗରରେ ଆମ ତରଣୀ ବୁଡ଼ିବାକୁ ବସିଛି। ସ୍ନାନ, ଦାନଧର୍ମ ରୂପ ନୌକାଦ୍ୱାରା ଆମ୍ଭେମାନେ ଏହି ସଙ୍କଟ ସାଗରକୁ ସହଜରେ ପାରି ହୋଇଯିବା।''

ବୃଦ୍ଧ ଜଣକ ପଚାରିଲେ, ''ମହାରାଜ! କେବେ ଆମ୍ଭେମାନେ ପ୍ରଭାସ କ୍ଷେତ୍ରକୁ ଯିବା ଠିକ୍ ହେବ ତାହା ଆପଣ କୁହନ୍ତୁ।''

ଭଗବାନ୍ ସହସା କହିଲେ, ''ଏ ବିଷୟରେ ଆଉ ପଚାରିବାର କ'ଣ ଅଛି? ଶୁଭସ୍ୟ ଶୀଘ୍ରମ୍। ବିଳମ୍ବ କରିବାର କୌଣସି କାରଣ ନାହିଁ। ଆଜି ହିଁ ଯାତ୍ରା ଆରମ୍ଭ କରାଯାଉ।''

ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନଙ୍କ ଆଦେଶ ଅନୁସାରେ ବୃଦ୍ଧଗଣ ଶୀଘ୍ର ବାହାରକୁ ଆସି ସମସ୍ତଙ୍କୁ ମହାରାଜଙ୍କ ଆଦେଶ ଶୁଣାଇଦେଲେ। କିଏ ଲୁଗା ପୁଟୁଳା ପ୍ରସ୍ତୁତ କଲା ତ କିଏ ଗାଡ଼ି ବାହାର କଲା। କିଏ ଗାଡ଼ି ସଜାଇଲା ତ କିଏ ଗାଡ଼ିବାଲାକୁ ଡାକି ପଠାଇଲା। ଏହିପରି ତୀର୍ଥଯାତ୍ରା ନିମିତ୍ତ ସମସ୍ତେ ନିଜ ନିଜର ବ୍ୟଗ୍ରତା ପ୍ରକାଶ କରିବାକୁ ଲାଗିଲେ।''

ଭଗବାନ ଶ୍ରୀକୃଷ୍ଣଙ୍କ ଅନନ୍ୟଭକ୍ତ ପରମଭାଗବତ ଉଦ୍ଧବ ଗମ୍ଭୀର ଭାବରେ ପ୍ରତ୍ୟେହ ଘଟୁଥିବା ଅନିଷ୍ଟ ବିଷୟରେ ବିଚାର କରୁଥିଲେ। 'ଦ୍ୱାରାବତୀରେ ଭଗବାନଙ୍କ ଉପସ୍ଥିତିରେ ଏପରି ଉତ୍ପାତ କାହିଁକି ଘଟୁଛି? ପୁଣି ସମସ୍ତଙ୍କୁ ପ୍ରଭାସ ଯାତ୍ରା ପାଇଁ ଭଗବାନ କାହିଁକି ଆଦେଶ ଦେଲେ? ନିଶ୍ଚିତ ଭାବେ ଏହାର କିଛି ରହସ୍ୟ ରହିଛି। ମନେହୁଏ, ଭଗବାନ ଏବେ ଇହଲୀଳା ସମ୍ବରଣ କରିବାକୁ ଇଚ୍ଛା କରୁଛନ୍ତି। ତାଙ୍କ ବିନା ଏ ସଂସାରରେ ରହି ମୁଁ କ'ଣ କରିବି? ଯାଉଛି ଏ ସବୁର ରହସ୍ୟ ତାଙ୍କୁ ପଚାରିବି। ସେ ଭକ୍ତବତ୍ସଳ ଓ ଅଶରଣ ଶରଣ। ମୋ ଉପରେ ତାଙ୍କର ଅସୀମ ଦୟା। ମୁଁ ପଚାରିଲେ ସେ ନିଶ୍ଚୟ ସମସ୍ତ ରହସ୍ୟ ବତାଇବେ।' ଏପରି ଚିନ୍ତାକରି ଉଦ୍ଧବ ଶଙ୍କିତ ଚିତ୍ତରେ ଏକାକୀ ବସିଥିବା ଭଗବାନଙ୍କ ନିକଟକୁ ଗଲେ।

ସେ ସମୟରେ ଭଗବାନ୍ ଏକାନ୍ତ ସ୍ଥାନରେ ଏକୁଟିଆ ବସି ଧ୍ୟାନ କରୁଥିଲେ। ଉଦ୍ଧବଙ୍କର ଯେ କୌଣସି ସ୍ଥାନକୁ ଯିବାରେ ବାଧା ନ ଥିଲା। ଅବାରିତ ଭାବେ ସେ ଭଗବାନଙ୍କ ଏକାନ୍ତ ବାସରେ ପହଞ୍ଚି ତାଙ୍କୁ ଧ୍ୟାନସ୍ଥ ଦେଖି ଉଦ୍ଧବ ପ୍ରଥମେ ହଡ଼ବଡ଼େଇଗଲେ। ପାଦରେ କାହାର ସ୍ପର୍ଶ ଅନୁଭବ କରି ଭଗବାନ ନିଜର ମୁଦ୍ରିତ ବିଶାଳ ନୟନ ଖୋଲି ଚାହିଁଲେ। ସେତେବେଳେ ଉଦ୍ଧବ ସାଷ୍ଟାଙ୍ଗ ପ୍ରଣାମ କରି ହାତଯୋଡ଼ି ସମ୍ମୁଖରେ ଦଣ୍ଡାୟମାନ ହୋଇଥିଲେ। ଭଗବାନଙ୍କ ଆଦେଶ ଅନୁସାରେ ଯଥାନିର୍ଦ୍ଦିଷ୍ଟ ଆସନରେ ଯୋଡ଼ହସ୍ତରେ ବସିଗଲେ।

ମୁରୁକି ମୁରୁକି ହସି ମାଧବ କହିଲେ, ''ହେ ଉଦ୍ଧବ! କୁହ ଭାଇ, ଭଲ ଅଛ ତ? ତୁମ ମୁହଁ ଦେଖିଲେ ଜଣା ପଡୁଛି ଯେପରି ତୁମେ କିଛି ପଚାରିବାକୁ ଚାହୁଁଛ? ଯଦି ସେପରି କିଛି କଥା ଅଛି, ତେବେ ନିର୍ଭୟରେ ମୋତେ ତାହା ପଚାରି ପାର।''

ଏହା ଶୁଣି ଉଦ୍ଧବ ପ୍ରଭୁଙ୍କ ପାଦସ୍ପର୍ଶ କରି କହିଲେ, ''ହେ ଦେବେଶ! ହେ ଯୋଗେଶ୍ୱର! ମୁଁ କ'ଣ ପଚାରିବି! ଆପଣଙ୍କୁ କିଛି ପଚାରିବାକୁ ମୋତେ ଲଜ୍ଜା ଲାଗୁଛି, ସଙ୍କୋଚ ବି ଲାଗୁଛି।''

ଭଗବାନ ଅଭୟ ଦେଇ କହିଲେ, ''ନାଁ, ନାଁ ଲାଜ ସଙ୍କୋଚ କରିବାର କିଛି କାରଣ ନାହିଁ। ତୁମେ ନିର୍ଭୟ ହୋଇ ଆନନ୍ଦମନରେ ପଚାର।''

ଭଗବାନଙ୍କ ଆଶ୍ୱାସନା ଲାଭକରି ଉଦ୍ଧବ ରହି ରହି ଧୀରେ ଧୀରେ କହିବାକୁ ଲାଗିଲେ, ''ପ୍ରଭୋ! ଆପଣ ଦେଖୁ ଦେଖୁ ଆମ କୁଳକୁ ବ୍ରାହ୍ମଣ ଅଭିଶାପ ପଡ଼ିଲା ଆପଣ କିଛି କହିଲେ ନାହିଁ। ଆପଣଙ୍କ ପ୍ରତ୍ୟେକ୍ଷରେ ବ୍ରହ୍ମଶାପର ମୂଲ୍ୟ କ'ଣ? ଆପଣ ଇଚ୍ଛା କରିଥିଲେ ତତ୍‌କାଳ ସେହି ଶାପର ପ୍ରତିକାର କରି ପାରିଥାନ୍ତେ। ଆପଣଙ୍କ ପାଇଁ ଏ କେଉଁ ବଡ଼ କଥା! ଆପଣଙ୍କ ଭ୍ରୁକୁଟି ବଳରେ ଅସଂଖ୍ୟ ବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି ଓ ପ୍ରଳୟ ଘଟୁଛି। ଆପଣ ବ୍ରାହ୍ମଣର ଅଭିଶାପ ଶୁଣି କେବଳ ସହିଗଲେ ନାହିଁ, ଯେ କିଛି ନ କହି ମନେ ମନେ ତାହାକୁ ଅନୁମୋଦନ ମଧ କଲେ। ଏଥିରୁ ମୋର ମନେହେଉଛି, ସମ୍ଭବତଃ ଆପଣ ଇହଲୀଳା ସାଙ୍ଗ କରିବାକୁ ଚାହୁଁଛନ୍ତି। ଯଦୁକୁଳ ସଂହାର କରି ଆପଣ ସ୍ୱଧାମକୁ ଫେରିଯିବା ନିମିତ୍ତ ବ୍ୟାକୁଳ ହେଉଛନ୍ତି।''

ଏହାଶୁଣି ଭଗବାନ ହସି ହସି କହିଲେ, ''ହେ ଉଦ୍ଧବ! ତୁମେ ତ ମୋର ବାହ୍ୟ ପ୍ରାଣ ସଦୃଶ। ମୋର ମନକଥା ସବୁ ତୁମେ ଜାଣ। ତୁମେ ଯାହା ଅନୁମାନ କର ତାହା କାଳେ କାଳେ ସତ୍ୟ ହୋଇଥାଏ।''

ଭଗବାନଙ୍କ ଉତ୍ତର ଶୁଣି ଉଦ୍ଧବ କାନ୍ଦି ଉଠିଲେ ଓ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ। ଭଗବାନ ନିଜେ ତାଙ୍କୁ ତଳୁ ଉଠାଇ କହିଲେ, ''ଉଦ୍ଧବ! ଏଭଳି ଅଧୀର ହୁଅ ନାହିଁ। ଆରେ ତୁମେ ଯଦି ଏତେ ଅସ୍ଥିର ହେବ କାମ ଚଳିବ କେମିତି?''

କାନ୍ଦି କାନ୍ଦି ଉଦ୍ଧବ କହିଲେ, ''ହେ କେଶବ! ଯଦି ଆପଣ ସ୍ୱଧାମ ପ୍ରତ୍ୟାବର୍ତ୍ତନ ପାଇଁ ସିଦ୍ଧାନ୍ତ ନେଇଛନ୍ତି, ତେବେ ହସ-କୋଳାହଳ ପୂର୍ଣ୍ଣ ଏହି ସଂସାରରେ ମୋତେ ଏକୁଟିଆ ଛାଡ଼ି ଯାଆନ୍ତୁ ନାହିଁ। ମୋତେ ଆପଣଙ୍କ ସହିତ ନେଇ ଯାଆନ୍ତୁ। ମୁଁ ଆପଣଙ୍କ ବିନା ଏଠାରେ କ୍ଷଣେ ମାତ୍ର ରହି ପାରିବି ନାହିଁ। ଆପଣଙ୍କ ପାଦପଦ୍ମକୁ ମୁଁ ନିମିଷମାତ୍ର ପରିତ୍ୟାଗ କରିପାରିବି ନାହିଁ।''

କଥାର ମୋଡ଼ ବଦଳାଇବାକୁ ଯାଇ ଭଗବାନ୍ କହିଲେ, ''ଆରେ ଭାଇ! ମୁଁ କ'ଣ ଏବେ କୁଆଡ଼େ ଯାଉଛି। ସେ କଥା ଛାଡ଼, ଆଉ କ'ଣ ଚାହୁଁଛ କୁହ।''

ଉଦ୍ଧବ କାନ୍ଦି କାନ୍ଦି କହିଲେ, ''ଆପଣଙ୍କ କଥା ମୋର ସମସ୍ତ ଇଚ୍ଛାକୁ ତ ନଷ୍ଟ କରିଦେଲା। ଆପଣ ମାନବ ଦେହରେ ଯେଉଁ ଲୀଳା କରିଛନ୍ତି ତାହା ଯେ କୌଣସି ସଂସାରୀ

ଶୁଣିବାମାତ୍ରେ ଆପଣଙ୍କ ଭକ୍ତ ହୋଇଯିବ, ଏଥିରେ ସନ୍ଦେହ ନାହିଁ। ଆପଣଙ୍କ ଭକ୍ତ ସମସ୍ତ ପ୍ରକାର ସଂସାର ବାସନାରୁ ମୁକ୍ତି ପାଇଥାଏ। ତେଣୁ ଆପଣ ସ୍ୱଧାମ ପ୍ରତ୍ୟାବର୍ତ୍ତନ ସମୟରେ ମୋତେ ଏଠାରେ ଏକୁଟିଆ ଛାଡ଼ି ନ ଦେଇ ସାଙ୍ଗରେ ନେଇଯିବେ ଏହାହିଁ ମୋର ଏକମାତ୍ର ଅଭିଳାଷ।''

ମମତାଭରା ସ୍ୱରରେ ଭଗବାନ୍ କହିଲେ, ''ଉଦ୍ଧବ! ଆଜି ତୁମର କ'ଣ ହୋଇଛି ?''

ଉଦ୍ଧବ କହିଲେ, ''ପ୍ରଭୁ! ଏହି କୋମଳ ପାଦପଦ୍ମ ଦର୍ଶନରୁ ଆପଣ ମୋତେ ବଞ୍ଚିତ କରାନ୍ତୁ ନାହିଁ। ମୁଁ ଆପଣଙ୍କୁ ଛାଡ଼ି କୁଆଡ଼େ ଯାଇପାରିବି ନାହିଁ। ସ୍ୱପ୍ନରେ ହେଲେ ବି ଯେ ଥରେ କ୍ଷଣକାଳ ପାଇଁ ଆପଣଙ୍କ ପାଦପଦ୍ମ ଦର୍ଶନ ଲାଭ କରିଛି ସେ କେବେହେଲେ ତାହା ଛାଡ଼ିବାକୁ ସମର୍ଥ ହୁଏ ନାହିଁ। ଆଉ ଯେ ଦିନେ ନୁହେଁ କି ଓଳିଏ ନୁହେଁ ଆପଣଙ୍କ ପାଦପଦ୍ମର ଧୂଳି ଝାଡ଼ି ଦେଇଛି, ହୃଦୟରେ ତାହା ସ୍ପର୍ଶ କରିଛି, ଧୋଇ ଦେଇଛି, ସେ କ'ଣ କେବେ ଜୀବନରେ ଭୁଲିପାରିବ। ଶୟନେ ସ୍ୱପନେ ଜାଗରଣେ ଆପଣଙ୍କ ସାନ୍ନିଧ୍ୟ ଯେ ଲାଭ କରିଛି, ଅବାରିତ ଭାବରେ ଅନ୍ତଃପୁରରେ ପ୍ରବେଶ କରିଛି, ନିଜ ହାତରେ ସ୍ନାନ କରାଇଛି, ଏକାସାଙ୍ଗରେ ଖାଇଛି, ଖେଳିଛି, ହସିଛି, ସେଭଳି କେବେ କ'ଣ ତା' ପ୍ରଭୁକୁ ଛାଡ଼ି ପାରେ ? ପ୍ରଭୋ! ମୁଁ ଆପଣଙ୍କର ଅତି ନଗଣ୍ୟ ଦାସ, ସେବକ, ଶିଷ୍ୟ, ଭକ୍ତ ଓ ଅନୁରକ୍ତ। ଆପଣ ମୋର ପ୍ରଭୁ, ବନ୍ଧୁ, ଆତ୍ମୀୟ ଓ ଆତ୍ମା। ଏବେ ଆପଣ ହିଁ କୁହନ୍ତୁ, ଆପଣଙ୍କ ବିନା ଏ ଧରାଧାମରେ ରହିବା ମୋ ପକ୍ଷରେ ସମ୍ଭବ କି ?''

ଭଗବାନ କହିଲେ, ''ଦେଖ ଭାଇ ଉଦ୍ଧବ! ସଂସାର ସାଗରରୁ ପାରିହେବା ବଡ଼ କଷ୍ଟ। ମୋ'ର ମାୟା ଅତି ଦୁସ୍ତର। ସେହି ମାୟାକୁ ଅତିକ୍ରମ ନ କରିବାଯାଏ କେହି ମୋ ଧାମରେ ପ୍ରବେଶ କରିପାରନ୍ତି ନାହିଁ।''

ଏହାଶୁଣି ଆଖିରୁ ଲୁହ ପୋଛୁ ପୋଛୁ ଦୃଢ଼ ସ୍ୱରରେ ଉଦ୍ଧବ କହିଲେ, ''ପ୍ରଭୋ! ମାୟା ଭକ୍ତମାନଙ୍କର କ'ଣ କରିପାରିବ ? ଯେଉଁ ଭକ୍ତମାନେ ଆପଣଙ୍କର ଚରଣ ସେବକ ଭାବେ ଆଶ୍ରିତ, ମାୟା ସେମାନଙ୍କ ପାଖକୁ ଯାଇପାରିବ ନାହିଁ। ଆମ ପାଖରେ ଏପରି କବଚ ଓ ବ୍ରହ୍ମାସ୍ତ୍ର ଅଛି ଯେ, ମାୟା ଆମ ପାଖକୁ ଆସିବା ପାଇଁ ସାହସ କରିବ ନାହିଁ।''

ହସି ହସି ଭଗବାନ କହିଲେ, ''କ'ଣ ସେ କବଚ, ଆଉ କି ବ୍ରହ୍ମସ୍ତ୍ର ରଖିଚ ମୋତେ ଟିକିଏ କହିଲା ଦେଖେ।''

ଉଦ୍ଧବ କହିଲେ, ''ମହାରାଜ! ଭକ୍ତଗଣ ଆପଣଙ୍କ କଣ୍ଠଦେଶରେ ମାଳା ପିନ୍ଧାନ୍ତି। ସେହି ମାଳା ଆପଣଙ୍କ ହୃଦୟ ସ୍ପର୍ଶ କରେ। କିଛି ସମୟପରେ ଯେତେବେଳେ ଆପଣ ସେହି ମାଳା ବାହାର କରି ଆମକୁ ଦେଇଦିଅନ୍ତି, ଆମ୍ଭେମାନେ ଶ୍ରଦ୍ଧାର ସହିତ ତାହା ନିଜ ନିଜ ବେକରେ ପକାଇଦେଉ। ଏହାଦ୍ୱାରା ଆମର ସମସ୍ତ ଅଶୁଭ ନଷ୍ଟ ହୋଇଯାଏ। ସେହି ମାଳାଥିଲେ ମାୟା ଆମ ଆଡ଼କୁ ଆଦୌ ଚାହିଁ ପାରିବ ନାହିଁ। ଆପଣଙ୍କ ଛଡ଼ାଚନ୍ଦନ ଓ ବସ୍ତ୍ର ଧାରଣ କରିଥିଲେ ମାୟା ଆମ ପାଖକୁ ଆସିବାର ପ୍ରଶ୍ନ ହିଁ ଉଠିବ ନାହିଁ। ଆପଣଙ୍କ ଉଚ୍ଛିଷ୍ଟ ପ୍ରସାଦଭାବେ ଗ୍ରହଣ କରୁଥିବାରୁ ଆମ ପାଖରେ ପାପର ଅସ୍ତିତ୍ୱ ନାହିଁ। ତେଣୁ ମାୟାକୁ ଆମର ଭୟ ନାହିଁ। ଆପଣଙ୍କ ଦାସଭାବେ ଆମେ ମାୟାସାଗରକୁ ସୁଖରେ ପାର ହୋଇଯିବୁ, ଏଥିରେ ସନ୍ଦେହ ନାହିଁ।''

ଭଗବାନ କହିଲେ, ''ମୋ' ପଦର ନାମ ବ୍ରହ୍ମପଦ। ବିନା ତପରେ ସେ ପଦ କାହାରିକୁ ମିଳେ ନାହିଁ। ସେହି ତପସ୍ୟାର ମାର୍ଗ କ୍ଷୁରଧାର ଭଳି ଅତି ଦୁର୍ଗମ। କେବଳ ସଂସାରତ୍ୟାଗୀ, ବୀତରାଗୀ ଓ ଅଧ୍ୟାତ୍ମବିଦ୍ୟା ଅନୁଶୀଳନ କରୁଥିବା ବ୍ୟକ୍ତି ବା ତପସ୍ୱୀ ହିଁ ସେହି ପଦଲାଭ କରିବାକୁ ସମର୍ଥ।''

ଉଦ୍ଧବ କହିଲେ, ''ପ୍ରଭୋ! ଆପଣ ଯାହା କହିଲେ ତାହା ସତ୍ୟ। ସମ୍ରାଟଙ୍କୁ ଦର୍ଶନ ଲାଭ ସବୁ ସମୟରେ ସମସ୍ତଙ୍କ ପକ୍ଷରେ ଯେ ସହଜ ନୁହେଁ, ଏହା କେହି ଅସ୍ୱୀକାର କରିବ ନାହିଁ। କିନ୍ତୁ ଯେଉଁମାନେ ତାଙ୍କର ସେବକ, ସେମାନଙ୍କ ପକ୍ଷରେ ସମ୍ରାଟ୍‌ଙ୍କ ଦର୍ଶନ କରିବା ଆଦୌ କଷ୍ଟକର ନୁହେଁ। ବ୍ରହ୍ମପଦ ପ୍ରାପ୍ତି ନିମିତ୍ତ ବଡ଼ ବଡ଼ ଊର୍ଦ୍ଧ୍ୱରେତା ତ୍ୟାଗୀ, ତପସ୍ୱୀ, ବାୟୁଭୋଜୀ ସାଧକଗଣ ଘୋର ତପସ୍ୟା କରୁଛନ୍ତି। ଅଧ୍ୟାତ୍ମବିଦ୍ୟାର ଚର୍ଚ୍ଚା ଆଲୋଚନା ମଧ୍ୟ କରୁଛନ୍ତି। ବହୁକାଳପରେ ସେମାନଙ୍କର ଅନ୍ତଃକରଣ ଶୁଦ୍ଧ ହେଉଛି। ସେହିଭଳି ଶୁଦ୍ଧଚେତା ସନ୍ନ୍ୟାସୀଗଣ ଆପଣଙ୍କ ବ୍ରହ୍ମପଦ ଲାଭ କରିବାକୁ ସମର୍ଥ। କିନ୍ତୁ ହେ ସର୍ବେଶ୍ୱର! ଆମେ ଆପଣଙ୍କ ସେବକ। ଆମକୁ କ୍ରିୟାକଳାପ ତ୍ୟାଗକରି ବଣକୁ ଯିବାକୁ ପଡ଼ୁନାହିଁ। ସନ୍ନ୍ୟାସୀ ସୁଲଭ କଷାୟ ବସ୍ତ୍ର ଧାରଣ କରିବୁ ନାହିଁ। ଆମେ କେବଳ ଆପଣଙ୍କ ଅନନ୍ୟ ଭକ୍ତଗଣଙ୍କ ସଂସର୍ଗରେ ରହିବୁ। ତାଙ୍କର ପାଖରେ ବସି ନିୟମିତ ଭାବେ ଭାଗବତୀ କଥା ଶୁଣିବୁ। ଶ୍ରଦ୍ଧାରେ ହେଉ ବା ଅଶ୍ରଦ୍ଧାରେ ହେଉ, ଇଚ୍ଛା ଥାଉ ବା ନ ଥାଉ ଆପଣଙ୍କ ଲୀଳା ଶ୍ରବଣରେ ହିଁ ଆମର କର୍ଣ୍ଣଦ୍ୱୟ ସର୍ବଦା ପୂର୍ଣ୍ଣ ରହିବ। ଆପଣ ନରରୂପେ ଅବତୀର୍ଣ୍ଣ ହୋଇ ଯେଉଁ ଚରିତ୍ର ପ୍ରଦର୍ଶନ କରିଛନ୍ତି ତାହାହିଁ ଆମେ ଚିନ୍ତା କରିବୁ। ଆପଣଙ୍କ ହସ ହସ ମୁଖ ଲଳିତ ଗତି, କୋମଳ ମଧୁର ବଚନାବଳୀ ବିଷୟରେ ଚର୍ଚ୍ଚା କରି ଆମର ସମୟ ଅତିବାହିତ କରିବୁ। ଆପଣଙ୍କ ନାମାବଳୀ ସ୍ମରଣ ଓ ଗୁଣାବଳୀ କୀର୍ତ୍ତନଦ୍ୱାରା ଆମେ ଏହି ଦୁସ୍ତର ମାୟାକୁ ଅତିକ୍ରମ କରିବାରେ ସମର୍ଥ ହେବୁ। ଆମକୁ ଆପଣଙ୍କ ଭକ୍ତଗଣଙ୍କ ସଂସର୍ଗର ଓ ଭାଗବତ କଥା ଶ୍ରବଣର ଅବସର ମିଳିଲେ, ମାୟାର ସାମାନ୍ୟତମ ଭୟ ରହିବନାହିଁ।''

ସୂତ କହୁଛନ୍ତି, ''ହେ ମୁନିଗଣ! ନିଜର ଅତିପ୍ରିୟ, ଅନୁରକ୍ତ ଭକ୍ତ ଉଦ୍ଧବଠାରେ ଏହିଭଳି ମାନସିକ ଦୃଢ଼ତା ଦେଖି ଆଉ ସାଙ୍ଗରେ ଯିବାର ଅତ୍ୟନ୍ତ ଆଗ୍ରହ ଲକ୍ଷ୍ୟ କରି ଭଗବାନ ତାଙ୍କୁ ସାନ୍ତ୍ୱନା ଦେବା ଛଳରେ ଯେଉଁ ଉପଦେଶ ଦେଇଥିଲେ ତାହା ମୁଁ ବର୍ଣ୍ଣନା କରୁଛି।''

## ଛପ୍‌ପୟ

ବୋଲେ- ହେ ବିଶ୍ୱେଶ! ଆପକୀ ଇଚ୍ଛା ଜାନୀ।
ତଦି ପୃଥିବୀ ନିଜଲୋକ ଗମନ କୀ ମନ ମହଁ ଠାନୀ॥
ରହୁଁ ତୁହ୍ମରେ ବିନୀ ନାଥ! ନହଁ ଜଗକେ ପାହୀ।
ତଜୈ ନ ମୋକୁ ଦେବ! ସଂଗ ଲୈ ଚଲେ ଗୁସାଈ॥
ପ୍ରଭୁ-ପ୍ରସାଦ ପଟ, ଗନ୍ଧ, ସ୍ରକ୍, ସିର ଧରି କୀର୍ତନ କରିଙ୍ଗେ।
ତବ ଚରିତନି ଚିନ୍ତନ କରତ, ଦୁସ୍ତର ମାୟା ତରିଙ୍ଗେ॥



# ସନ୍ୟାସ ଧର୍ମ

ତ୍ୱଂ ତୁ ସର୍ବଂ ପରିତ୍ୟଜ୍ୟ ସ୍ନେହଂ ସ୍ୱଜନବନ୍ଧୁଷୁ।
ମୟ୍ୟାବେଶ୍ୟ ବନଃ ସମ୍ୟକ୍ ସମଦୃଗ୍ ବିଚରସ୍ୱ ଗାମ୍॥ ★

[ଶ୍ରୀଭା.୧୧ସ୍କ, ୭ଅ, ୬ଶ୍ଳୋକ]

### ଛପ୍‌ପୟ

ଉଦ୍ଧବ କୀ ସୁନି ବିନୟ ବିହଁସି ବୋଲେ ବନବାରୀ।
ହୌ, ମୈନେ ନିଜ ଲୋକ ଗମନ କୀ କରୀ ତୟାରୀ॥
ଯଦୁକୁଲ ହୋବେ ନାଶ ଧରମ ଅବ ହୋହି ତିରୋହିତ।
ତୁମ ତଜିକେ ସବ ମୋହ ଜାଉ ବଦରୀବନ ଉପହିତ॥
ଜୋ ମନ ଇନ୍ଦ୍ରିୟ ବିଷୟ ହୈଂ, ମାୟାମୟ ସବ ମାନି କେ।
ତ୍ୟାଗୋ ଗୁନ ଅରୁ ଦୋଷ ଭ୍ରମ, ଆତ୍ମାରୂପ ଜଗ ଜାନି କେ॥

ଯେ ପର୍ଯ୍ୟନ୍ତ ନିଜର ଦେହ, ଘର, ପରିବାର ପ୍ରତି ପ୍ରବଳ ଆସକ୍ତି ରହିଥାଏ, ସେ ପର୍ଯ୍ୟନ୍ତ ମାୟା ବିଷୟରେ ପାଣ୍ଡିତ୍ୟ ଦେଖାଇବା କେବଳ ମନୋବିନୋଦ, ଆଜୀବିକା ତଥା ପ୍ରତିଷ୍ଠା ସମ୍ପାଦନ କରିବାର ସାଧନ ମାତ୍ର ହିଁ ହୋଇଥାଏ। ମୁମୁକ୍ଷୁତା ବା ତ୍ୟାଗର ପ୍ରଥମ ସୋପାନ ହେଉଛି ତ୍ୟାଗ। ଯେ ପର୍ଯ୍ୟନ୍ତ ସଂସାର ପ୍ରତି ମମତା ରହିଥିବ, ଘରଦ୍ୱାର, ବସ୍ତ୍ରଭୂଷଣ, ଇନ୍ଦ୍ରିୟବାସନା ଭୋଗ, ଆତ୍ମୀୟ ସ୍ୱଜନଙ୍କ ସୁଖ-ଦୁଃଖରେ ମନ ଆସକ୍ତ ବା ବ୍ୟସ୍ତ ରହିଥିବ, ସେ ପର୍ଯ୍ୟନ୍ତ ମନୁଷ୍ୟ ବା ଜ୍ଞାନର, କି ଭକ୍ତିର ଅଧିକାରୀ ହୋଇପାରେ ନାହିଁ। ଜ୍ଞାନ ହେଉ, ଭକ୍ତି ହେଉ ଲକ୍ଷ୍ୟ କିନ୍ତୁ ଏକ। ଗୋଟିଏ ସ୍ଥାନରୁ ବାହାରନ୍ତି ଓ ଗୋଟିଏ ସ୍ଥାନରେ ପହଞ୍ଚିଥା'ନ୍ତି। କେବଳ ମାର୍ଗ ହୋଇଥାଏ ଦୁଇଟି। ଗୋଟିଏ ମାର୍ଗ ଛାୟାପୂର୍ଣ୍ଣ ସରସ ସୁନ୍ଦର ହୋଇଥାଏ, ଅନ୍ୟ ମାର୍ଗଟି ଅସିଧାର ସଦୃଶ ହୋଇଥାଏ। ହେଲେ ଉଭୟଙ୍କର ପର୍ଯ୍ୟାବସାନ ହୋଇଥାଏ ଏକ ସ୍ଥାନରେ। ପ୍ରକୃତି ଭିନ୍ନ ଭିନ୍ନ ହୋଇଥିବାରୁ ସାଧନରେ ଭିନ୍ନତା ରହିଥାଏ। ଯେପରି କ୍ଷୁଧା ଦୂର କରିବାକୁ ଇଚ୍ଛା। ଭିନ୍ନ ଭିନ୍ନ ପ୍ରକୃତିର ଅନେକ ଲୋକ ଥାଆନ୍ତି। ପ୍ରତ୍ୟେକଙ୍କ ପାଖରେ ଅଟା, ବୁଟଡ଼ାଲି, ଘିଅ, ଚିନି ଆଦି ଦ୍ରବ୍ୟ ଥାଏ। କେତେକ ବୁଟଡ଼ାଲିକୁ ବତୁରାଇ, ପେଷି, ଅଟାରେ ମିଶାଇ ଲୁଣ ଆଦି ପକାଇ ରୁଟି କରି କ୍ଷୁଧା ନିବାରଣ କରନ୍ତି। ଆଉ

---



| | | | |
|---|---|---|---|
| ହସି ବୋଲନ୍ତି ବାସୁଦେବ | । | ଶୁଣ ହେ ଭକତ ଉଦ୍ଧବ | ॥ |
| ତୁ ଏବେ ଛାଡ଼ି ସୁତ ବିତ୍ତ | । | ଦାରା ସେବକେ ପ୍ରେମ ଚିତ୍ତ | ॥ |
| ସକଳ କର୍ମ ଦୂର କରି | । | ମୋହର ପାଦେ ଚିତ୍ତ ଧରି | ॥ |
| ପୃଥିବୀ କରି ପର୍ଯ୍ୟଟନେ | । | ଅସତ୍ୟ ଦେଖ ତ୍ରିଭୁବନ | ॥ |

[ଭାଗବତ: ଜଗନ୍ନାଥ ଦାସ : ୧୧ଶ ସ୍କନ୍ଧ ୮ଅ.]

କେତେକ ଅଟା, ବୁଟଡ଼ାଲି ଗୁଣ୍ଡକୁ ମିଶାଇ ଛତୁଆ କରି ତହିଁରେ ଚିନି ମିଶାଇ ଖାଆନ୍ତି। ପୁଣି ଆଉ କେତେକ ତହିଁରେ ଚିନି ମିଶାଇ, ଚୁଲିରେ ଘିଅରେ ଭାଜି ମହନଭୋଗ କରି କ୍ଷୁଧା ନିବାରଣ କରିଥା'ନ୍ତି। କ୍ଷୁଧା ନିବାରଣ ନିମିତ୍ତ ଏକ ପ୍ରକାର ଖାଦ୍ୟ ବସ୍ତୁରୁ ରୁଚି ଅନୁସାରେ ଯେପରି ଭିନ୍ନ ଭିନ୍ନ ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ ହୁଏ। ସେହିପରି ଅଦ୍ୱୈତ ଈଶ୍ୱରଙ୍କୁ ବିଭିନ୍ନ ଉପାୟ ଓ ନାମରେ ଉପାସନା କରାଯାଏ। ଭଗବାନ୍ ଏକ। ଲୋକେ ତାଙ୍କୁ ବ୍ରହ୍ମ, ପରମାତ୍ମା, ରାମ, କୃଷ୍ଣ, ନୃସିଂହ, ଗଣେଶ, ଶିବ, ସୂର୍ଯ୍ୟ ଅଥବା ନିରାକାର ବା ସାକାର ଭାବେ ଭଜନ କରନ୍ତି। ଈଶ୍ୱରଙ୍କୁ ପାଇବା ନିମିତ୍ତ ସମସ୍ତ ସାଧନା ମଧ୍ୟରେ ସଂସାର ବିରାଗୀ ହେବା ନିତାନ୍ତ ଆବଶ୍ୟକ। ବୈରାଗ୍ୟ ହିଁ ମୁକ୍ତିର ମୁଖ୍ୟ ମାର୍ଗ।

ମହର୍ଷିସୂତ କହୁଛନ୍ତି, ''ହେ ମୁନିଗଣ ! ଉଦ୍ଧବ ଯେତେବେଳେ ଏକାନ୍ତରେ ଆସି ପ୍ରଭୁଙ୍କ ପାଦପଦ୍ମରେ ପ୍ରାର୍ଥନା ଜଣାଇ ପଚାରିଲେ, 'ସତରେ କ'ଣ ଆପଣ ଏ ଧରାଧାମ ତ୍ୟାଗ କରି ସ୍ୱଧାମ ଯାତ୍ରା କରୁଛନ୍ତି', ସେତେବେଳେ ଗମ୍ଭୀରତା ପ୍ରକାଶ ପୂର୍ବକ ପ୍ରସନ୍ନ ବଦନରେ ପ୍ରଭୁ କହିଲେ, 'ମହାଭାଗ ଉଦ୍ଧବ ! ତୁମର ଅନୁମାନ ସତ୍ୟ। ମୁଁ ବର୍ତ୍ତମାନ କ୍ରମବର୍ଦ୍ଧମାନ ଏହି ଯଦୁକୁଳକୁ ସଂହାର କରିବି। ମୁଁ ଯାହା କରିବାକୁ ଚାହୁଁଛି ତାହା ମୋର ଲୀଳା ପ୍ରକାଶ ପାଇଁ କରୁନାହିଁ, କାରଣ ଏବେ କୁତ୍ରାପି ମୋର ଆସକ୍ତି ନାହିଁ। ତୁମେ ଦେଖ, ଏତେ ଦିନ ମୁଁ ବ୍ରଜରେ ରହିଲି, ମାତ୍ର ଦିନେ ସମସ୍ତଙ୍କୁ ଛାଡ଼ି ଚାଲିଆସିଲି। ସମୃଦ୍ଧିଶାଳିନୀ ମଥୁରାପୁରୀକୁ ଛାଡ଼ି ଆସିଲି। ଏହି ଦ୍ୱାରାକାପୁରୀକୁ କେତେ ସୁନ୍ଦର କରି ଗଢ଼ି ତୋଳିଲି, କିନ୍ତୁ ଏବେ ତାକୁ ଧ୍ୱଂସ କରି ଚାଲିଯିବି। ପିଲାଙ୍କ ଭଳି ଗଢ଼ିବା ଓ ଭାଙ୍ଗିବା ହେଉଛି ମୋର ଖେଳ। ଯେ ଏହି ଖେଳକୁ ସତ୍ୟ ବୋଲି ଭାବେ, ସେ ଦୁଃଖୀ ହୁଏ। ବର୍ତ୍ତମାନ ଏ ଖେଳକୁ ମୁଁ ଶେଷ କରିବାକୁ ଇଚ୍ଛା କରୁଛି।''

ଅତୀବ ନମ୍ରଭାବେ ଉଦ୍ଧବ କହିଲେ, ''ମହାରାଜ ! ଆପଣ ଏହି ଭୂମଣ୍ଡଳରେ ଶ୍ରେଷ୍ଠ ଶୋଭା ସମ୍ପଦ। ଆପଣ ସାକାର ରୂପରେ ଯେତେଦିନ ରହିବେ ସେତେ ଦିନ ପର୍ଯ୍ୟନ୍ତ ପୃଥିବୀରେ ପରମ ସୌଭାଗ୍ୟ ବଜାୟ ରହିବ। ତେଣୁ, ଦୟାକରି ଆପଣ ଆଉ କିଛି କାଳ ଏଠାରେ ରୁହନ୍ତୁ।''

ଭଗବାନ୍ କହିଲେ, ''ଉଦ୍ଧବ ! ଅନ୍ତର୍ଯ୍ୟାମୀ ଭାବେ ମୁଁ ସର୍ବତ୍ର ବିଦ୍ୟମାନ। କିନ୍ତୁ ଲୋକପାଳ ଶିବ, ବ୍ରହ୍ମା ଓ ଅନ୍ୟାନ୍ୟ ଦେବଗଣ ମୋ ପାଖକୁ ଆସିଥିଲେ। ଯଥାଶୀଘ୍ର ଗୋଲୋକ ଫେରିବା ପାଇଁ ମୋତେ ସେମାନେ ଅନୁରୋଧ କରିଛନ୍ତି।''

ଉଦ୍ଧବ ପଚାରିଲେ, ''ମହାରାଜ ! ସେମାନେ କେତେବେଳେ ଆସିଥିଲେ, କାଇଁ ମୁଁ ଦେଖିପାରିଲି ନାହିଁ। କ୍ଷଣେ ହେଲେ ମୁଁ ତ ଆପଣଙ୍କ ଚରଣ ତଳୁ କୁଆଡ଼େ ଯାଇ ନାହିଁ।''

ଭଗବାନ୍ କହିଲେ, ''ସେମାନେ ଗୁପ୍ତ ରୂପରେ ଆସିଥିଲେ। ସେମାନଙ୍କ ପ୍ରାର୍ଥନା ଅନୁସାରେ ବଳରାମଙ୍କ ସହିତ ଏ ଅବତାର ମୁଁ ଧାରଣ କରିଥିଲି। ଏବେ ଦେବଗଣଙ୍କ କାର୍ଯ୍ୟ ଶେଷ ହୋଇଛି ଏବଂ ଭୂଭାର ମଧ୍ୟ ଦୂର ହୋଇଛି। ତେଣୁ ଦେବଗଣଙ୍କ ସ୍ୱଧାମ ପ୍ରତ୍ୟାବର୍ତ୍ତନ ନିମିତ୍ତ ପ୍ରାର୍ଥନାକୁ ସ୍ୱୀକାର କରିସାରିଛି।

ବ୍ୟାକୁଳ ଭାବେ ଉଦ୍ଧବ କହିଲେ, ''ପ୍ରଭୋ ! ଆପଣଙ୍କ ବିନା ଏ ଯଦୁକୁଳକୁ କିଏ ରକ୍ଷାକରିବ ?''

ସ୍ନେହଭରା ବାଣୀରେ ଭଗବାନ୍ କହିଲେ, ''ଉଦ୍ଧବ! ମୁଁ ତୁମକୁ ବାରମ୍ବାର କହିଛି, ଏହା ମୋ ଖେଳ। ଯଦୁକୁଳ ବ୍ରାହ୍ମଣଦ୍ୱାରା ଅଭିଶପ୍ତ। ଘୁଣଖିଆ କାଠର ଉପରଟା ଚକ୍‌ଚକ୍ କରୁଥିଲେ ବି ଭିତର ଯେ ସାରହୀନ ଏଥିରେ ସନ୍ଦେହ ନାହିଁ। ଯଦୁକୁଳର ବର୍ତ୍ତମାନ ସେହି ଅବସ୍ଥା। ବ୍ରାହ୍ମଣ ଅଭିଶାପରେ ଏହା ବର୍ତ୍ତମାନ ଅନ୍ତଃସାରଶୂନ୍ୟ। ଏ ବଂଶର ଧ୍ୱଂସ ସାଧିତ ହେବ। ଯଦୁବଂଶୀମାନେ ଅନ୍ୟ କାହାରି ଦ୍ୱାରା ନୁହେଁ, ନିଜ ନିଜ ଭିତରେ କଳହ କରି ମୃତ୍ୟୁ ବରଣ କରିବେ।''

ଦ୍ୱାରକାର ଅବସ୍ଥା କ'ଣ ହେବ ବୋଲି ଉଦ୍ଧବ ପଚାରିବାରୁ ଭଗବାନ୍ ଶ୍ରୀକୃଷ୍ଣ କହିଲେ, ''ମୋହରି ଲୀଳାଖେଳା ପାଇଁ ମୁଁ ଏହାକୁ ସୃଷ୍ଟି କରିଥିଲି। ମୁଁ ସ୍ୱଧାମ ଚାଲିଯିବା ପରେ ଦ୍ୱାରିକାର ଆବଶ୍ୟକତା କ'ଣ ? ଏହା ସମୁଦ୍ରର ଉତ୍ତାଳ ଜଳରାଶିରେ ନିମଜ୍ଜିତ ହେବ।''

ଉଦ୍ଧବ ଆଶ୍ଚର୍ଯ୍ୟ ଚକିତ ହୋଇ କହିଲେ, ''ପ୍ରଭୁ! ସମୁଦ୍ର କେବେ ଦ୍ୱାରକାପୁରୀକୁ ଗ୍ରାସ କରିବ ?''

ଭଗବାନ୍ କହିଲେ, ''ଆଜିଠାରୁ ସପ୍ତମ ଦିନ ଦ୍ୱାରକା ସମୁଦ୍ରରେ ବୁଡ଼ି ଯିବ। ମୁଁ ବୈକୁଣ୍ଠ ଯାତ୍ରା କରିବି। ମୁଁ ଯେଉଁଦିନ ଏ ପୃଥିବୀ ତ୍ୟାଗକରିବି ସେହି ଦିନ କଳିଯୁଗ ପ୍ରବେଶ କରିବ। ମୋ ହେତୁ ପୃଥିବୀର ଯେଉଁ ମଙ୍ଗଳମୟ ରୂପ ଥିଲା ତାହା ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ। କଳିଯୁଗର ଲୋକେ ମଙ୍ଗଳହୀନ ହେବେ। ସମଗ୍ର ପୃଥିବୀ ଶ୍ରୀହୀନ ହୋଇପଡ଼ିବ। ମୁଁ ଚାଲିଯାଉଥିବାରୁ ତୁମେ ଆଉ ଏହି ଦ୍ୱାରିକାପୁରୀରେ ରହିବା ଉଚିତ ହେବନାହିଁ।''

ଉଦ୍ଧବ କାନ୍ଦି କାନ୍ଦି କହିଲେ, ''ପ୍ରଭୋ! ଆପଣ ଏପରି ନିଷ୍ଠୁରତା କାହିଁକି ପ୍ରକାଶ କରୁଛନ୍ତି। ନିଜର ଏ ଦୀନହୀନ ସେବକକୁ ପରିତ୍ୟାଗ କରିବାଟା ଉଚିତ୍ ହେବ କି ? ମୋତେ ସାଙ୍ଗରେ ନ ନେଇ କଳିଯୁଗର ଅଶେଷ ଦୁଃଖ ମଧ୍ୟରେ ସନ୍ତାପିତ ହେବାପାଇଁ ଛାଡ଼ି ଯିବାକୁ ଇଚ୍ଛା କରୁଛନ୍ତି କାହିଁକି ?''

ସ୍ନେହରେ ଉଦ୍ଧବଙ୍କ ହାତକୁ ଧରି ଆଦରସହକାରେ ଯଦୁନନ୍ଦନ କହିଲେ, ''ଭାଇ ଉଦ୍ଧବ! ତୁମକୁ ଏଠାରେ ଆଉ କିଛିଦିନ ରହିବାକୁ ପଡ଼ିବ। -କଳିଯୁଗରେ ସମସ୍ତଙ୍କ ରୁଚି ଅଧର୍ମ ଆଡ଼କୁ ଯେ ଯିବ, ଏଥିରେ ସନ୍ଦେହ ନାହିଁ। ଯେ କୌଣସି ପାପ କାର୍ଯ୍ୟ କରିବାରେ କଳିଯୁଗ ଲୋକଙ୍କର ଆଦୌ ସଙ୍କୋଚ ହେବନାହିଁ। କିନ୍ତୁ, ତୁମଭଳି ଭଗବଦ୍ ଭକ୍ତର କଳିଯୁଗ କିଛି କ୍ଷତି କରିପାରିବ ନାହିଁ। ତୁମେ, ବନ୍ଧୁ ଓ ସ୍ୱଜନଙ୍କ ମମତା ତ୍ୟାଗ କରି, ମୋଠାରେ ମନୋନିବେଶପୂର୍ବକ ସର୍ବତ୍ର ସମଦୃଷ୍ଟିରଖି ସ୍ୱଚ୍ଛନ୍ଦ ଭାବରେ ବିଚରଣ କରୁଥିବ। ତୁମେ ମୋ ଭକ୍ତ। ତୁମକୁ ସଂସାରର ମାୟାବନ୍ଧନ ବାନ୍ଧି ପାରିବ ନାହିଁ। ତଥାପି ମୋ ମାୟାରୁ ଦୂରେଇ ରହିବ।''

ଉଦ୍ଧବ କହିଲେ, ''ହେ ଭଗବନ୍! ମୁଁ କେବଳ ଆପଣଙ୍କୁ ଜାଣେ। ଆପଣଙ୍କ ଚରଣ ହିଁ ମୋର ଧ୍ୟେୟ। ମୁଁ ମାୟା ବୋଲି କିଛି ଜାଣେ ନାହିଁ।''

ଉଦ୍ଧବଙ୍କ କଥା ଶୁଣି ଭଗବାନ୍ କହିଲେ, ''ତଥାପି ମୋ ମାୟାକୁ ଜାଣି ରଖିବା ଆବଶ୍ୟକ। ସେହି ମାୟାରେ ବଡ଼ ବଡ଼ ତ୍ୟାଗୀ ସନ୍ୟାସୀ ମଧ୍ୟ ବିମୋହିତ ହୋଇ ପଡ଼ନ୍ତି। ଯୋଗାରୂଢ଼ ପୁରୁଷ ମଧ୍ୟ ମାୟାମୋହରେ ପଡ଼ିଥାଏ।''

"କିନ୍ତୁ, ଆପଣ ମୋ ସମ୍ମୁଖରେ ଥିବା ପର୍ଯ୍ୟନ୍ତ ମୋର କୌଣସି ବିଷୟ ପ୍ରତି ଭୟ ନାହିଁ। ଆପଣ ଯେତେବେଳେ ପରିତ୍ୟାଗ କରି ଚାଲିଯାଉଛନ୍ତି, ସେତେବେଳେ ମୋତେ ଦୟାକରି ମାୟାର ସ୍ୱରୂପ ବୁଝାଇ ଦିଅନ୍ତୁ। କେତେବେଳେ ଯଦି ମାୟାର ସମ୍ମୁଖୀନ ହେବି ତେବେ କ'ଣ କରିବି? ଉଦ୍ଧବଙ୍କର ଏହି ନିବେଦନ ଶୁଣି ଭଗବାନ୍ କହିଲେ, "ଉଦ୍ଧବ! ତୁମେ ଭଗବତ୍ ନାମ ବ୍ୟତୀତ ଯାହା କିଛି ଏ ସଂସାରରେ ଦେଖୁଛ, ଶୁଣୁଛ ଓ କହୁଛ ସେ ସମସ୍ତ କ୍ଷଣଭଙ୍ଗୁର, ଅସ୍ଥିର ଓ ପରିବର୍ତ୍ତନଶୀଳ। ମୁଁ ହିଁ କେବଳ ଅବିନଶ୍ୱର। ଯେ ପର୍ଯ୍ୟନ୍ତ ମନ ଓ ଇନ୍ଦ୍ରିୟର ଗତି ରହିଛି, ସେ ସମସ୍ତ ମନୋମୟ ଏବଂ ତାହା ହିଁ ହେଉଛି ମାୟା।"

ଉଦ୍ଧବ କହିଲେ, "ମହାରାଜ! ଆମେ ଯାହା ଦେଖୁଛୁ, ଶୁଣୁଛୁ ଓ ଚିନ୍ତା କରୁଛୁ ସେ ସମସ୍ତ ହେଉଛି ମାୟା, ତେବେ ଭଲ କିଏ ଓ ମନ୍ଦ କିଏ, ଏବଂ କେଉଁଟି ଗ୍ରହଣୀୟ ଓ କ'ଣ କ'ଣ ପରିତ୍ୟାଜ୍ୟ ତାହା ମୋତେ ବୁଝାଇ ଦିଅନ୍ତୁ।"

ଭଗବାନ୍ ହସି ହସି କହିଲେ, "ଭାଇ ଉଦ୍ଧବ! ଦୋଷଗୁଣ, ଭଲମନ୍ଦ ଭାବନା ହିଁ ଭ୍ରମାତ୍ମକ। ଯେତେବେଳେ ଦୋଷ ଓ ଗୁଣର ବିଚାର ମନରେ ଆସିବ ସେତେବେଳେ ଏହା କାର୍ଯ୍ୟ ବା ଅକାର୍ଯ୍ୟ ଏପରି ଭେଦଭାବ ଜାଗ୍ରତ ହେବ। ତେଣୁ, ଏ ପ୍ରକାର ଭେଦ କଳ୍ପନା ସର୍ବଥା ପରିତ୍ୟାଜ୍ୟ।"

ଉଦ୍ଧବ ପଚାରିଲେ, "ପ୍ରଭୋ! ଏ ସଂସାରରେ ଭେଦଭାବନା ପ୍ରତ୍ୟେକ୍ଷଭାବେ ଦେଖାଯାଉଚି। ସୁନ୍ଦର, ଅସୁନ୍ଦର, କୁରୂପ ଆଦି ସର୍ବତ୍ର ବିଦ୍ୟାମାନ। ସଂସାରରେ ଏପରି କିଛି ନାହିଁ ଯେଉଁଠି କେବଳ ସମତା ହିଁ ଥିବ। ତେଣୁ, ସର୍ବତ୍ର କିଛି ନା କିଛି ଭେଦ ଭାବ ପରିଲକ୍ଷିତ ହୁଏ। ତେବେ ଏ ଭେଦଭାବ ଦୂର ହେବ କିପରି?"

ଭଗବାନ୍ କହିଲେ, "ଏ ପ୍ରକାର ଭେଦଭାବନା ହିଁ ଭ୍ରମାତ୍ମକ। ତୁମେ ନିଜେ ବିଚାର କର, ସମସ୍ତଙ୍କ ଦେହରେ ରସ, ରକ୍ତ, ମାଂସ, ଅସ୍ଥି, ମେଦ, ଶୁକ୍ର ଓ ଓଜ ଏକପ୍ରକାର। ଯେତେ ପ୍ରକାର ବସ୍ତୁ ଦେଖୁଛ ସେ ସମସ୍ତ ପଞ୍ଚଭୂତରୁ ହିଁ ସୃଷ୍ଟି। ମାଟିରେ ତିଆରି କଳସୀ, ପଲମ, ସରା, ମୃଦଙ୍ଗ, ଚିଲମ୍ ଆଦି ବସ୍ତୁରେ ଥିବା ମାଟି ଏକ। ତୁମେ ଚିତ୍ତ ଓ ଇନ୍ଦ୍ରିୟକୁ ସଂଯତ କରି ଏହି ସମ୍ପୂର୍ଣ୍ଣ ଜଗତ୍‌କୁ ଆତ୍ମା ମଧ୍ୟରେ ଦେଖ। ଏ ସମସ୍ତ ଆତ୍ମା ମଧ୍ୟରେ ଅବସ୍ଥିତ। ଯେପରି ପୁଷ୍ପରେ ଥିବା ରଙ୍ଗ ସୂର୍ଯ୍ୟଙ୍କର, ସେହିପରି ସବୁକିଛି ଆତ୍ମାର ହିଁ ଅବଦାନ। ସୂର୍ଯ୍ୟ ନ ଥିଲେ ସବୁ ପ୍ରକାର ଫୁଲର ରଙ୍ଗ ଏକପ୍ରକାର ହେବା ଭଳି, ଦୃଶ୍ୟମାନ ପଦାର୍ଥରେ କୌଣସି ଭେଦଭାବ ରହିବା ଉଚିତ୍ ନୁହେଁ। ଆମେ ଆତ୍ମାଠାରୁ ପଦାର୍ଥକୁ ପୃଥକ୍ ବୋଲି ଭାବୁଛୁ। ତେଣୁ, ଏ ଭେଦ କଳ୍ପନା ସୃଷ୍ଟି ହେଉଛି। ସବୁକିଛି ଆତ୍ମା ମଧ୍ୟରେ ଏବଂ ଆତ୍ମାକୁ ପରମାତ୍ମା ମଧ୍ୟରେ ଦେଖିଲେ କୌଣସି ମାୟା ବା ଭେଦଭାବ ଆସିବ ନାହିଁ। କୁଣ୍ଡଳାଦି ଅଳଙ୍କାରକୁ ସୁବର୍ଣ୍ଣ ମଧ୍ୟରେ ଓ ସେହି ସୁବର୍ଣ୍ଣକୁ ପୃଥିବୀ ମଧ୍ୟରେ ଦେଖ। କାରଣ ସୁବର୍ଣ୍ଣ ହେଉଛି କ୍ଷିତି ବା ମୃତ୍ତିକାର ବିକାର। ଏହା ପରେ କାଞ୍ଚନ ଓ ମୃତ୍ତିକା ଖଣ୍ଡ ମଧ୍ୟରେ ଆଉ ଭେଦଭାବନା ରହିବ ନାହିଁ। ଆତ୍ମା ମଧ୍ୟରେ ସବୁକିଛି ଦେଖିବାକୁ ଜ୍ଞାନ ଓ ଆତ୍ମାକୁ ପରମାତ୍ମା ମଧ୍ୟରେ ଦେଖିବାକୁ ବିଜ୍ଞାନ କହନ୍ତି। ଯେତେବେଳେ ତୁମେ ଜ୍ଞାନ-ବିଜ୍ଞାନ ଯୁକ୍ତ ହେବ, ସେତେବେଳେ ସମସ୍ତ ପ୍ରାଣୀ-ଜଗତ୍ ଆତ୍ମବତ୍ ମନେ ହେବ। ସେତେବେଳେ

ମନେହେବ ମୁଁ ବହୁଭାବରେ, ବହୁ ରୂପରେ ବିବିଧ ଚେଷ୍ଟା କରୁଛି। ଆତ୍ମାନୁଭୂତି ପରେ କୌଣସି ପ୍ରକାର ବିଘ୍ନ ଦେଖାଦେବ ନାହିଁ। ସେତେବେଳେ କର୍ତ୍ତବ୍ୟ ଅକର୍ତ୍ତବ୍ୟ, ଗ୍ରାହ୍ୟ ତ୍ୟାଜ୍ୟ, ବିଧି ନିଷେଧର ଭେଦଜ୍ଞାନ ରହିବନାହିଁ। ଯେ ଜ୍ଞାନ ବିଜ୍ଞାନଯୁକ୍ତ, ଆତ୍ମବତ୍ ଚିନ୍ତାଶୀଳ ତା'ର ବିଧି ନିଷେଧ ଜନିତ ବନ୍ଧନ ରହେ ନାହିଁ।''

ତାହା ହେଲେ ସମସ୍ତ କର୍ମ ତ୍ୟାଗ କରିବା ଉଚିତ୍ କି ବୋଲି ଉଦ୍ଧବ ପଚାରିବାରୁ ହସି ହସି ଭଗବାନ୍ କହିଲେ, ''ସମସ୍ତ କର୍ମ ତ୍ୟାଗ କରି ସନ୍ୟାସ ଧର୍ମ ଗ୍ରହଣ କରିବା ବିଧେୟ। ତ୍ୟାଗ ବିନା ଶାନ୍ତି ଦୁର୍ଲଭ। ତ୍ୟାଗରୁ ହିଁ ଅମୃତତ୍ୱ ଲାଭ। ଜ୍ଞାନୀ ଲୋକେ ଗୁଣାଗୁଣ ବା ଦୋଷାଦୋଷ ବିଚାର କରି ଉଚିତ କାର୍ଯ୍ୟ କରନ୍ତି ନାହିଁ, କି ନିଷିଦ୍ଧ କାର୍ଯ୍ୟ ପରିତ୍ୟାଗ କରନ୍ତି ନାହିଁ। ଜ୍ଞାନୀଲୋକେ ବାଳକ ଭଳି ଆଚରଣ କରନ୍ତି। ବାଳକ ଯେପରି ନିର୍ବିଚାରିତ ଭାବେ ଯେକୌଣସି ଜିନିଷକୁ ପାଟିରେ ପୂରାଏ, ଛୁଇଁ ଦିଏ ବା ଆୟତ୍ତାଧୀନ କରିବାକୁ ଚାହେଁ, ଏବଂ ଏହା ଗ୍ରହଣଯୋଗ୍ୟ କି ପରିତ୍ୟାଜ୍ୟ ବୋଲି ଭାବିପାରେ ନାହିଁ, ସେହିପରି ଜ୍ଞାନୀଲୋକର ଚିତ୍ତବୃତ୍ତି ହେବା ଦରକାର। ଜ୍ଞାନୀ ସର୍ବଦା ହସ ହସ ମୁଖରେ ରହେ। ସମସ୍ତଙ୍କୁ ଆଦର କରେ ଓ ସମସ୍ତଙ୍କର କଲ୍ୟାଣ କାମନା କରେ। ତା'ର ହୃଦୟ ସର୍ବଦା ଶାନ୍ତ ଥାଏ। ଜ୍ଞାନ-ବିଜ୍ଞାନରେ ସେ ସୁମେରୁ ଭଳି ଅଟଳ ଓ ନିଜ ସିଦ୍ଧାନ୍ତରେ ଦୃଢ଼ ରହେ। ସେ କୌଣସି ଘଟଣାରେ ଉଦ୍‌ବିଗ୍ନ ବା ପ୍ରସନ୍ନ ହୁଏ ନାହିଁ। ଏ ସଂସାରକୁ ମୋର ସ୍ୱରୂପ ମନେକରି ସଦା ପ୍ରସନ୍ନ ଥାଏ। ସାଂସାରିକ ସୁଖ ଦୁଃଖ, ସମ୍ପଦ ବିପଦରେ ଜ୍ଞାନୀର ହର୍ଷ ବା ଦୁଃଖ ଜାତ ହୁଏ ନାହିଁ। ତେଣୁ, ହେ ଉଦ୍ଧବ! ତୁମେ ସଂସାର ତ୍ୟାଗ କର ଓ ସନ୍ୟାସୀ ହୁଅ।''

ସୂତ କହିଲେ, ''ହେ ମୁନିଗଣ! ଉଦ୍ଧବ ଭଗବାନ ଶ୍ରୀକୃଷ୍ଣଙ୍କ ଉପଦେଶ ଅନୁସାରେ ତ୍ୟାଗଧର୍ମର ବିସ୍ତୃତ ଜ୍ଞାନ ଲାଭ ନିମିତ୍ତ ଅନୁରୋଧ କରିବାରୁ ଭଗବାନ ତାହା ଯେପରି ବୁଝାଇ ଦେଇଥିଲେ ତାହା ଏକାଗ୍ର ଚିତ୍ତରେ ଶୁଣନ୍ତୁ।''

## ଛପ୍‌ପୟ

ଆତ୍ମା ଅଦ୍ୱୟ ଅଜର ଅମର ବ୍ୟାପକ ସବ ଥଲ ମେ।
ଜଗମହଁ ଏକ ସମାନ ରହେ ରବି ଶଶି ନଭ ଜଲ ମେ॥
ଜାକୁଁ ଏସୋ ଜ୍ଞାନ ନ ସୋ ଜଗମହଁ ଦୁଃଖ ପାବୈ।
ଦୃଶ୍ୟ ଚରାଚର ମାହିଁ ସବନି ମହଁ ବ୍ରହ୍ମ ଲଖାବୈ॥
ଜ୍ଞାନୀ ବାଲକ କେ ସରିସ, ଭେଦଭାବ ତେ ରହିତ ହ୍ୱୈ।
ନହି ସୋଚେ ବହ ସ୍ୱପ୍ନ ମେ, ଯହ ଅବିହିତ ଯହ ବିହିତ ହ୍ୱୈ॥



# ସନ୍ୟାସ-ଧର୍ମର ଅର୍ଥ

ସୋଽହଂ ମମାହମିତି ମୂଢ଼ମତିର୍ବିଗାଢ଼-
ସ୍ତ୍ୱନ୍ମାୟୟା ବିରଚିତାତ୍ମନି ସାନୁବନ୍ଧେ ।
ତତ୍ତ୍ୱଞ୍ଜସା ନିଗଦିତଂ ଭବତା ଯଥାହମ୍,
ସଂସାଧୟାମି ଭଗବନ୍ନନୁଶାଧି ଭୃତ୍ୟମ୍ ।। ★

[ଶ୍ରୀ ଭା. ୧୧ସ୍କ. ୭ଅ. ୧୬ଶ୍ଳୋକ]

**ଛପ୍ପୟ**

କରମ ତ୍ୟାଗ ସନ୍ୟାସ ଧରମ ମୁନି ବୋଲେ ଉଦ୍ଧବ ।
ବିଷୟ ଗହନ ହେଁ ଅଜ୍ଞ ସରଲତା ତେ କହୁକେଶବ ।।
କାକୀ ଜାଉଁ ଶରନ ଆପ ସମ ଔର ନ ପାଉଁ ।
ଆୟୋ ତୁମରୀ ଶରନ ଚରନ ମହଁ ଶୀଶ ନବାଉଁ ।।
ଉଦ୍ଧବ କୀ ସୁନି କେ ବିନୟ, ବୋଲେ ପ୍ରଭୁ ପରମାତମା ।
ଉପଦେଶକ, ଗୁରୁ, ସୁହୃଦ୍, ରିପୁ, ହେଁ ଅପନୀ ହି ଆତମା ।।

ବୁଦ୍ଧିମାନ ଲୋକଙ୍କୁ ସୂତ୍ର ଆକାରରେ ସମସ୍ତ କଥା କୁହାଯାଏ । କାରଣ, ସେମାନେ ନିଜର ତୀକ୍ଷ୍ଣବୁଦ୍ଧିଦ୍ୱାରା ସୂତ୍ରର ସଙ୍କେତକୁ ସହଜରେ ଗ୍ରହଣ କରିପାରନ୍ତି । କିନ୍ତୁ ସାଧାରଣ ଲୋକେ ସେହି ସୂତ୍ରକୁ ବୁଝିପାରନ୍ତି ନାହିଁ, ତେଣୁ ସୂତ୍ରର ବ୍ୟାଖ୍ୟା ବା ଭାଷ୍ୟ କରି ସେମାନଙ୍କୁ ବୁଝାଇ ଦିଆଯାଏ । ସୂତ୍ରର ତତ୍ତ୍ୱ ଓ ତଥ୍ୟ ବ୍ୟାଖ୍ୟା ବା ଭାଗ୍ୟରେ ବିସ୍ତୃତଭାବେ ବର୍ଣ୍ଣିତ ହୋଇଥାଏ । ସର୍ବସାଧାରଣଙ୍କ ସହଜ ଅବବୋଧ ନିମିତ୍ତ ଏଗୁଡ଼ିକ ରଚିତ ହୁଏ ।

---

ହେ ମହାଯୋଗୀ ଯୋଗେଶ୍ୱର । ଦୁର୍ଲ୍ଲଭ ବଚନ ତୋହର ।।
ମୁଁ ମୂଢ଼ ମାୟା ଜଡ଼ମତି । ଭୋ ନାଥ ଶୁଣ ଯଦୁପତି ।।
ମୁହିଁ ମୋହର ଏ ଶରୀର । ସକଳ ସଂସାର ଗୋଚର ।।
ମୋହେ ଜଡ଼ିତ ମୋର ଚିତ୍ତ । ଏଣୁ ମୁଁ କୈବଲ୍ୟ ବଞ୍ଚିତ ।।
ଅସତ୍ୟ ସୁତ ଦାରା ଧନ । ମୋ ମନ କରେ ନିତ୍ୟେ ଧ୍ୟାନ ।।
ମାୟା ସଙ୍କଟ ଘୋରେ ଜଡ଼ି । ଭବ ବନ୍ଧନେ ଅଛି ପଡ଼ି ।।
ଏ ମୋର ମୋହ ଜଡ଼ ପାଶ । କିଞ୍ଚିତେ ଛେଦ ହୃଷୀକେଶ ।।
ନିଶ୍ଚୟ କରି ନିଜ ଦାସ । କହ ତୋ ମାର୍ଗ ଉପଦେଶ ।।

[ଭାଗବତ : ଜଗନ୍ନାଥ ଦାସ ୧୧ସ୍କ. ୮ମ. ଅ]

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ''ଭଗବାନ୍ ଯେତେବେଳେ ସଂକ୍ଷେପରେ ତ୍ୟାଗଧର୍ମ ସମ୍ପର୍କରେ ଉପଦେଶ ଦେଲେ ସେତେବେଳେ ତାହା ବିସ୍ତୃତଭାବେ ଜାଣିବା ନିମିତ୍ତ ବିନୀତଭାବେ ହାତଯୋଡ଼ି ଉଦ୍ଧବ କହିଲେ, ପ୍ରଭୋ ! ଆପଣ ତ ଯୋଗେଶ୍ୱର ଭାବେ ସୁବିଦିତ। ଆପଣ ଯୋଗୀମାନଙ୍କ ସାଧନାର ପରମ ନିଧି। ତେଣୁ ଆପଣ ହିଁ ଯୋଗ, ଯୋଗର ସାଧନ ଓ ଯୋଗର ଲକ୍ଷ୍ୟ। ଆପଣ ସର୍ବଜ୍ଞ ଓ ସର୍ବମୟ। ମୋର କଲ୍ୟାଣ ମୁକ୍ତି ଓ ପରମପଦ ଲାଭ ନିମିତ୍ତ ଆପଣ ଯେଉଁ ସନ୍ୟାସ ଧର୍ମର ଉପଦେଶ ଦେଇଛନ୍ତି, ତାହା ମୋଭଳି ଅଜ୍ଞାନଙ୍କ ପକ୍ଷେ ବୁଝିବା ଅତି କଷ୍ଟକର ଓ ଦୁଃସାଧ।''

ସଂସାରରେ ଏପରି କୌଣସି ବସ୍ତୁ ନାହିଁ ଯାହାକୁ ସାଧ୍ୟ କରିହେବ ନାହିଁ। ସବୁକିଛି ସାଧନ କରାଯାଇପାରେ ବୋଲି ଭଗବାନଙ୍କ ମୁଖରୁ ଶୁଣି ଉଦ୍ଧବ ନିବେଦନ କଲେ— ''ପ୍ରଭୋ ! ମୋ କହିବାର ଅଭିପ୍ରାୟ ହେଉଛି, ସମସ୍ତଙ୍କ ପକ୍ଷରେ ନୁହେଁ, ମୋ ପକ୍ଷରେ ହିଁ ଦୁଃସାଧ। ଯେ ବୀତରୋଗ, ସନ୍ୟାସୀ, ପରିବ୍ରାଜକ, ତା'ପକ୍ଷରେ ସବୁକିଛି ସହଜ ସାଧ୍ୟ। କିନ୍ତୁ ଯେଉଁମାନେ ମୋଭଳି ବିଷୟାସକ୍ତ ସେମାନଙ୍କ ପକ୍ଷେ କାମନା ତ୍ୟାଗ କରିବା ଅତ୍ୟନ୍ତ କଷ୍ଟକର। ରସଗୋଲାଟିଏ ଦେଖି ଜିହ୍ୱା ଲାଳସିକ୍ତ ହେବାପରେ, ତାକୁ ପାଇବାର ଯେଉଁ ଆକାଂକ୍ଷା ଜାତ ହୁଏ ତାହା ଦମନ କରିବା ଅତି ଅସମ୍ଭବ। ଇନ୍ଦ୍ରିୟମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ବିଷୟ ମଧ୍ୟରେ ଥାଏ। ସେଗୁଡ଼ିକ ଦୃଷ୍ଟିଗୋଚର ହେବାମାତ୍ରେ ହୃଦୟରେ ବ୍ୟାକୁଳତା ସୃଷ୍ଟି ହୁଏ। ମନର ଅବସ୍ଥା ବଦଳିଯାଏ। ଇନ୍ଦ୍ରିୟଗଣ ବଶ୍ୟତା ସ୍ୱୀକାର କରନ୍ତି ନାହିଁ। ଏହାହିଁ ଆମ୍ଭମାନଙ୍କର ଅବସ୍ଥା। ଏପରି ଲୋକଙ୍କୁ ଆପଣ କର୍ମ ତ୍ୟାଗ ନିମିତ୍ତ ଉପଦେଶ ଦେଉଛନ୍ତି। ଯଦି ଆପଣଙ୍କ କହିବା ଅନୁସାରେ ସମସ୍ତ କର୍ମ ତ୍ୟାଗ କରିବା ତେବେ ମନକୁ ଆୟତ୍ତ କରିବା କିପରି ? ମନକୁ ସଂଯତ ନ କରି ସାଧୁବେଶ ଧାରଣ କଲେ ତାହା ଆମ ପତନର କାରଣ ହେବ। ମିଥ୍ୟା ଦ୍ୱେଷ ଜନିତ ଅହଙ୍କାର, ଦମ୍ଭ, ଗର୍ବ ଓ ପ୍ରବଞ୍ଚନାଦ୍ୱାରା ଆମର ଆତ୍ମା ଅଧୋଗାମୀ ହେବ। କିନ୍ତୁ ଭଗବାନଙ୍କୁ ଭକ୍ତି କରିବା ଅବସ୍ଥାରେ ଯଦି ଚିତ୍ତଭ୍ରାନ୍ତି ବା ମିଥ୍ୟାଭିମାନ ସୃଷ୍ଟି ହେବ ତେବେ ପଶ୍ଚାତ୍ତାପ ଓ ଭଗବଦ୍ ପ୍ରାର୍ଥନାଦ୍ୱାରା ଧୀରେ ଧୀରେ ତାହାର ପରିବର୍ତ୍ତନ ଘଟିବ। ଦିନେ ନା ଦିନେ ଆପଣ ତା'ର ପ୍ରାର୍ଥନା ଅବଶ୍ୟ ଶୁଣିବେ। କିନ୍ତୁ ଯେ ଆପଣଙ୍କ ଭକ୍ତ ନୁହେଁ କି ସରସ ଓ ଉଦାର ହୃଦୟର ନୁହେଁ, ତ୍ୟାଗର ଦୀକ୍ଷା ନେଲେ ମଧ ତାହାର ବିଷୟବାସନା ପ୍ରତି ଆସକ୍ତି ନିଶ୍ଚୟ ରହିବ। ସେ ତା'ର ମନକୁ ସଂଯତ କରିପାରିବ ନାହିଁ, କାରଣ ସଂସାରର ସବୁକିଛି ଆପଣଙ୍କ ବଳବତୀ ମାୟାରେ ଆଚ୍ଛନ୍ନ। ସାଧାରଣତଃ ସ୍ତ୍ରୀଲୋକଙ୍କୁ ଅବଳା କହନ୍ତି, କିନ୍ତୁ ଆପଣଙ୍କର ମାୟାରୂପିଣୀ ଅବଳା ଯେ ସବୁଠାରୁ ବଳବାନ ଏଥିରେ ସନ୍ଦେହ ନାହିଁ। କେତେ ବଡ଼ ବଡ଼ ସାଧୁ ସନ୍ଥ ଯେଉଁ ମାୟା କବଳରୁ ମୁକ୍ତି ପାଇ ନାହାନ୍ତି, ସେଥିରୁ ମୁକ୍ତି ପାଇବା ମୋ ପକ୍ଷେ ଆଦୌ ସମ୍ଭବ ନୁହେଁ।''

ଭଗବାନ୍ ଆଶ୍ୱାସନା ଦେଇ କହିଲେ— ''ଅସମ୍ଭବ ବୋଲି କାହିଁକି କହୁଛ ଉଦ୍ଧବ, ଅନେକ କେବଳ ତ୍ୟାଗଧର୍ମର ଦୀକ୍ଷା ନେଇ ମୋ ମାୟାରୁ ଉତ୍ତୀର୍ଣ୍ଣ ହୋଇଯାଇଛନ୍ତି।''

ଉଦ୍ଧବ କହିଲେ— ''ହଁ ମହାରାଜ ! ଅନେକ ଯେ ମାୟାରୁ ପାର ହୋଇଯାଇଛନ୍ତି, ସେ ବିଷୟରେ ଅବିଶ୍ୱାସ ମୋ'ର ନାହିଁ। କିନ୍ତୁ ମୁଁ ମୋ ନିଜକଥା ଭାବୁଛି। ଏ ସଂସାର

ପ୍ରତି ମୋର କେତେଦୂର ଆକର୍ଷଣ ରହିଛି। ମୁଁ ବ୍ରାହ୍ମଣ, କ୍ଷତ୍ରିୟ, ସୁନ୍ଦର, ରୂପବାନ୍, ଯୁବକ, ବଳବାନ, ବିଦ୍ୱାନ୍, ଜ୍ୟେଷ୍ଠ, ଶ୍ରେଷ୍ଠ ବୋଲି ନିଜକୁ ଭାବି ନେଇ ସର୍ବଦା ଅହଙ୍କାର ମଧ୍ୟରେ ବୁଡ଼ିରହିଛି। ପୁଣି ଏହା ମୋର ଘର, ପଶୁ, ପକ୍ଷୀ, ଭାଇ, ବନ୍ଧୁ, ଇଷ୍ଟ, ମିତ୍ର, ଆତ୍ମୀୟ, ସମ୍ପର୍କୀୟ, ଭୃତ୍ୟ ବୋଲି ଭାବୁଥିବାରୁ ମୋ ଶିରା ପ୍ରଶିରାରେ ମମତାର ପ୍ରବାହ ଭରି ରହିଛି। ଏହା ମୋ'ର, ତାହା ଅନ୍ୟର— ଏପରି ମିଥ୍ୟା ଅଭିନିବେଶରୁ ମୁଁ ମୁକ୍ତ ନୁହେଁ। ଈର୍ଷା ଓ ମମତା ହେତୁ ମୋର ବୁଦ୍ଧିବୃତ୍ତି ଯେ ଲୋପ ପାଇଯାଇଛି ତାହା ହିଁ ମୁଁ ଆପଣଙ୍କୁ ଜଣାଉଛି। ଏଭଳି ମୋହଗ୍ରସ୍ତ ଲୋକଙ୍କୁ 'ତୁମେ ସବୁକିଛି ତ୍ୟାଗ କରି ମୋର ଶରଣ ପଶ' ବୋଲି କହିଦେଲେ ଯଥେଷ୍ଟ ହେବ ନାହିଁ। କିପରି ଆପଣଙ୍କ ଶରଣାର୍ଥୀ ହେବି, କିପରି ଏ କାମନାପୂର୍ଣ୍ଣ କର୍ମସମୂହକୁ ତ୍ୟାଗ କରିବି ସେହି କଥା ମୋତେ ଉପଦେଶ ଦିଅନ୍ତୁ। ବାରମ୍ବାର ଉଦାହରଣ ଦେଇ ଆପଣ ଆପଣଙ୍କ ଉପଦେଶ ବୁଝାଇ ଦିଅନ୍ତୁ। ତାହାହେଲେ ହୁଏତ ମୁଁ କିଛି ବୁଝି ପାରିବି। ମୁନି, ଋଷି ଓ ଦେବଗଣଙ୍କୁ ଆପଣ ସଙ୍କେତଦ୍ୱାରା ହିଁ ବୁଝାଇ ଦେଉଥିଲେ। ଏବେ ଏକ ମୂର୍ଖର ପାଲରେ ପଡ଼ିଛନ୍ତି। ଏ ଦାସକୁ ଆପଣଙ୍କର ସବୁକଥା ଦୟାକରି ବୁଝାଇ ଦିଅନ୍ତୁ।''

ଏହାଶୁଣି ହସି ହସି ଭଗବାନ୍ କହିଲେ, ''ଆରେ ଭାଇ! ଏ ସବୁ କଥା ଜଣେ ଗୁରୁଙ୍କୁ ଯାଇ ପଚାର। ବ୍ୟାଖ୍ୟା କରି ବୁଝାଇବାରେ ମୋର ଆଦୌ ଅଭ୍ୟାସ ନାହିଁ।''

ବିନୀତଭାବରେ ଉଦ୍ଧବ ପଚାରିଲେ, ''ପ୍ରଭୋ! ଆପଣ ମୋତେ ଆଉ ଭୁଲାନ୍ତୁ ନାହିଁ। ଏ ସଂସାରରେ ମାୟାମୋହିତ ଗୁରୁବର୍ଗ କ'ଣ ବା ଉପଦେଶ ଦେବେ! ବ୍ରହ୍ମାଦି ଦେବଗଣ ଯେତେବେଳେ ଆପଣଙ୍କ ମାୟାରେ ବିମୋହିତ ହୋଇ ମାନବ ସୁଲଭ ବ୍ୟବହାର କରୁଛନ୍ତି ସେତେବେଳେ ଅନ୍ୟମାନଙ୍କ କଥା ପଚାରେ କିଏ। ସେମାନଙ୍କ ଉପଦେଶର କ'ଣ ବା ପ୍ରଭାବ ପଡ଼ିବ? ବହୁ ବଡ଼ ବଡ଼ ପଣ୍ଡିତ ନିଜ ନିଜର ସମ୍ମାନ, ପ୍ରତିଷ୍ଠା ଓ ଧନ ଅର୍ଜନ ନିମିତ୍ତ ବହୁ ଗ୍ରନ୍ଥ ରଚନା କରିଛନ୍ତି। ସେଭଳି ପୁସ୍ତକକୁ ପଢ଼ିଲେ କି' ପ୍ରକାର ଶାନ୍ତି ମିଳିବ? ଯାହା ଧନ ଓ ପ୍ରତିଷ୍ଠା ପାଇଁ ଲେଖା ଯାଇଛି, ତାହାହିଁ ସଂସାରୀ ଲୋକର ଅଶାନ୍ତିର କାରଣ ହୋଇଛି। ବହୁଲୋକ ଦିନରାତି ଅନ୍ୟକୁ ଉପଦେଶ ଦେଉଛନ୍ତି କ'ଣ ପାଇଁ ? ଆମର ନାମ ହେଉ, କୌଣସି ଧନିକ ଆମ ଆୟତ୍ତକୁ ଆସୁ, ବିପୁଳମାତ୍ରାରେ ଗୋପୀଚନ୍ଦନ ମିଳୁ- ଏହାହିଁ ସେହି ଗୁରୁବର୍ଗଙ୍କ ଆନ୍ତରିକ ଲକ୍ଷ୍ୟ। ସେଭଳି ଗୁରୁଙ୍କ ଦେଶରେ କାହାର କ'ଣ ହୋଇପାରିବ! ଏସବୁ ଲୋକବ୍ୟବହାରର କଥା। ତେଣୁ ଆପଣ ହେଉଛନ୍ତି ପ୍ରକୃତ ଗୁରୁ। ଆପଣ ମାୟାହୀନ, ନିରହଙ୍କାର, ସରଳ, ସ୍ୱୟଂ ପ୍ରକାଶ, ସତ୍ୟସ୍ୱରୂପ ପରମାତ୍ମା। ଆପଣଙ୍କୁ ଛାଡ଼ି ସାଧାରଣ ମାନବ କାହିଁକି, ଦେବଗଣ ମଧ୍ୟରେ ବି ମୋତେ କୌଣସି ଉପଦେଶ ମିଳିବେ ନାହିଁ। ମୁଁ ନାନାବିଧ ଅଶାନ୍ତିରେ ଅହରହ ସନ୍ତପ୍ତ ହେଉଛି। ସୁଖ ବା ସରଳସାଧନ ମାର୍ଗ ମୋତେ ମିଳୁ ନାହିଁ। ମୋର ବୁଦ୍ଧି, ମଳିନ, କିନ୍ତୁ ଆପଣ ନିର୍ମଳ, ଅନନ୍ତ, ସର୍ବଜ୍ଞ, ଈଶ୍ୱର। ତେଣୁ ଆପଣ ବୈକୁଣ୍ଠରେ ସର୍ବଦା ରହିଛନ୍ତି ଯେଉଁଠି କାଳର ପ୍ରବେଶ ନାହିଁ। ବୈକୁଣ୍ଠଧାମ ନିତ୍ୟ, ଶାଶ୍ୱତ ଓ ସନାତନ। ଆପଣ ନରର ସଖା ନାରାୟଣ, ଆତ୍ମାର ପରମାତ୍ମା ଓ ସଚ୍ଚିଦାନନ୍ଦ। ମୁଁ ଏ ସଂସାରରୁ କିପରି ମୁକ୍ତ ହେବି ଓ କାହାକୁ ଗୁରୁ କରିବି, ଦୟା କରି ଏହା ବୁଝାଇ ଦିଅନ୍ତୁ।''

ଉଦ୍ଧବଙ୍କର ବିନୟରେ ଦୟାର୍ଦ୍ର ହୋଇ ଭଗବାନ କହିଲେ, ''ହେ ଉଦ୍ଧବ ! ତୁମରି ଆତ୍ମା ହିଁ ତୁମର ବଡ଼ ଗୁରୁ । ଶାସ୍ତ୍ର ଅଧୟନଦ୍ୱାରା ମାନବ ଭବମାୟାରୁ ମୁକ୍ତିଲାଭର ଯଥାର୍ଥ ମାର୍ଗ ଜାଣିପାରେ ।''

ଏହା ଶୁଣି ଉଦ୍ଧବ କହିଲେ, ''ପ୍ରଭୋ ! ଶାସ୍ତ୍ର ତ ଖଣ୍ଡିଏ ନୁହେଁ, ଏହା ଅସଂଖ୍ୟ, ବିଦ୍ୟା ବି ବହୁପ୍ରକାର । ତେବେ କେଉଁ ଶାସ୍ତ୍ର ପଢ଼ିବା ଉଚିତ ହେବ । ଆୟୁର୍ବେଦ ଅନୁସାରେ, ଧର୍ମ, ଅର୍ଥ, କାମ ଓ ମୋକ୍ଷର ମୂଳ ହେଉଛି ଆରୋଗ୍ୟ । ସ୍ମୃତିଶାସ୍ତ୍ରରେ ଧର୍ମଚରଣକୁ ଇଷ୍ଟସିଦ୍ଧିର ଉପାୟ ରୂପେ ବର୍ଣ୍ଣନା କରାଯାଇଛି । ସାଂଖ୍ୟଦର୍ଶନ ଅନୁସାରେ ଛବିଶ ତତ୍ତ୍ୱର ଜ୍ଞାନଦ୍ୱାରା ମୁକ୍ତି ମିଳେ । ଯୋଗଶାସ୍ତ୍ର ଚିତ୍ତବୃତ୍ତି ନିରୋଧକୁ ମୁକ୍ତି ବୋଲି କହିଛି । ସେହିପରି ମୀମାଂସା ଦର୍ଶନରେ ଯଜ୍ଞାଦିକର୍ମ, ନ୍ୟାୟ ଶାସ୍ତ୍ରରେ ପରମାଣୁ ଜ୍ଞାନ, କାମଶାସ୍ତ୍ରରେ କାମର ସେବା, କୁଣ୍ଡଳିନୀ ଯୋଗରେ ଷଟ୍‌ଚକ୍ର ସାଧନଦ୍ୱାରା ମୁକ୍ତିଲାଭ ହୁଏ ବୋଲି ଉଲ୍ଲେଖ ରହିଛି । ପୁଣି କେହି ଅଦ୍ୱୈତ ଭାବନାକୁ ମୁକ୍ତି କହୁଥିବାବେଳେ ଅନ୍ୟକେହି ମୁକ୍ତିଠାରୁ ଭକ୍ତିର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି । ଭଗବାନ୍ ଖୁବ୍ ସହଜରେ ମୁକ୍ତି ଦେଇପାରନ୍ତି, କିନ୍ତୁ ଭକ୍ତିଦାନରେ କୃପଣତା ପ୍ରକାଶ କରନ୍ତି । ଭକ୍ତିରେ ମଧ୍ୟ ଅସଂଖ୍ୟ ଭେଦ ରହିଛି । ତେଣୁ କେଉଁ ଶାସ୍ତ୍ରକୁ ମାନିବା, ଆଉ କେଉଁ ଶାସ୍ତ୍ରକୁ ପଢ଼ିବା ? ଏତେ ସମୟ କାହିଁ । ଆୟୁଷ ମଧ୍ୟ ଖୁବ୍ କମ୍ । ତଦ୍‌ବ୍ୟତୀତ ଦୈହିକ, ଦୈବିକ, ଭୌତିକ ପ୍ରଭୃତି ସନ୍ତାପ ଅହରହ ଲାଗିରହିଛି । ମନରେ ସର୍ବଦା ଅଶୁଭ କାମନା ଜାଗ୍ରତ ହେଉଛି । ଯେତେ ଧ୍ୟାନ କଲେମଧ୍ୟ ଭଗବାନଙ୍କଠାରେ ମନ ରହୁନାହିଁ । ବିଷୟ ବାସନାକୁ ଭୁଲିବାପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ବାରମ୍ବାର ତାର ସ୍ମୃତି ଅଧିକରୁ ଅଧିକ ଜାଗ୍ରତ ହେଉଛି । ତେବେ ଉପାୟ କଣ ?''

ଭଗବାନ ହସିଦେଇ କହିଲେ, ''ଉଦ୍ଧବ ! ତାଳପତ୍ର ବା କାଗଜରେ ଲେଖା ହୋଇଥିବା ଶାସ୍ତ୍ର ଶାସ୍ତ୍ର ନୁହେଁ । ସେହି ଶାସ୍ତ୍ରର ପଠନ ମନନ ଯଥାର୍ଥ ନୁହେଁ । **ସବୁଠାରୁ ବଡ଼ ଉପାଦେୟ ଶାସ୍ତ୍ର ହେଉଛି ସଂସାର । ସଂସାରର ଘଟନାବଳୀକୁ ଲକ୍ଷ୍ୟ କରି ବିଚାର ଓ ମନନ କରୁଥିବା ଲୋକର କୌଣସି ଗୁରୁ ଦରକାର ନାହିଁ । ବିଚାରଶୀଳ ବ୍ୟକ୍ତି ନିଜେ ନିଜେ ସ୍ୱୀୟ ଚିତ୍ତବୃତ୍ତିକୁ ଅଶୁଭ କାମନା ଓ ବାସନାରୁ ମୁକ୍ତ କରିଥାଏ ।** ଏହି ସଂସାରର ଅଧ୍ୟୟନ ଦ୍ୱାରା ସେ ନିଜକୁ ନିଜେ ଉଦ୍ଧାର କରେ । ''କିନ୍ତୁ ବିନା ଗୁରୁରେ ଜ୍ଞାନାର୍ଜନ ସମ୍ଭବ କି ? ବୋଲି ଉଦ୍ଧବ ପଚାରିବାରୁ ଭଗବାନ ବୁଝାଇଦେଇଥିଲେ— ଗୁରୁ କରିବା କ'ଣ ଦରକାର ? ଗୁରୁ ତ ନିଜ ଭିତରେ ବିଦ୍ୟମାନ । ଆତ୍ମା ତ ଗୁରୁଙ୍କର ଗୁରୁ । ପରୀକ୍ଷା ଦେଉଥିବା ଓ କରୁଥିବା ବ୍ୟକ୍ତି ମଧ୍ୟରେ କିଏ ବଡ଼— ଏହାର ଉତ୍ତର ଦିଅ ଉଦ୍ଧବ !''

'ପରୀକ୍ଷାର୍ଥୀଠାରୁ ପରୀକ୍ଷକ ଯେ ବଡ଼— ଏଥିରେ ସନ୍ଦେହର କାରଣ କ'ଣ ?' ଏ ପ୍ରକାର ଉତ୍ତର ଶୁଣି ଭଗବାନ୍ କହିଲେ— ''ତେବେ ବିଚାର କର, ତୁମରି ଆତ୍ମା ତୁମକୁ ପରୀକ୍ଷା କରୁଛି । ଜଣେ ସାଧକ ଜନୈକ ସାଧୁଙ୍କୁ ଶ୍ରଦ୍ଧା କରନ୍ତି । କିନ୍ତୁ ସାଧୁ ଯାହାକୁ ଆଦର କରନ୍ତି, ସାଧକ ତାକୁ ଶ୍ରଦ୍ଧା କରନ୍ତି ନାହିଁ । ଏହାର କାରଣ ସ୍ୱରୂପ ସାଧକ କହନ୍ତି— ତାଙ୍କର ଅନ୍ତରାତ୍ମା ତାହା ସ୍ୱୀକାର କରୁନାହିଁ । ଏ କ୍ଷେତ୍ରରେ ସାଧୁ ବଡ଼ ନା ଅନ୍ତରାତ୍ମା ବଡ଼ ? ଆଉ ଏକ ଉଦାହରଣ ଶୁଣ— କୌଣସି ସ୍ଥାନରେ ବଡ଼ ବଡ଼ ବିଦ୍ୱାନ, ଯୋଗୀ, ପ୍ରତିଷ୍ଠିତ ଜ୍ଞାନୀ, ସାଧୁ ସନ୍ଥମାନେ ବସିଛନ୍ତି । ଭଗବାନ ଗହଣରେ ଜଣେ ସାଧାରଣ ଲୋକ ବି ବସିଥାଏ । କେହି ଜଣେ ସାଧକ ସେଠାରେ ଉପସ୍ଥିତ ହୋଇ ସମସ୍ତଙ୍କୁ ପ୍ରଣାମ ଜଣାଇବା

ସଙ୍ଗେ ସଙ୍ଗେ ଜନୈକ ସାଧାରଣ ବ୍ୟକ୍ତିଙ୍କୁ ସେ ଗୁରୁଭାବେ ସ୍ୱୀକାର କଲେ। ଯଦି କେହି ପ୍ରଶ୍ନ କରେ ଯେ, ଏତେ ବଡ଼ ଜ୍ଞାନୀ ବିଦ୍ୱାନ ପଣ୍ଡିତଙ୍କୁ ଛାଡ଼ି କାହିଁକି ଏପରି ସାଧାରଣ ଲୋକଙ୍କୁ ଗୁରୁଭାବେ ଗ୍ରହଣ କଲ, ତେବେ ତା'ର ଉତ୍ତରରେ ସେ କହନ୍ତି, ମୋର ଆତ୍ମା ତାଙ୍କରିଠାରେ ସନ୍ତୁଷ୍ଟ ହେଲା। ଏବେ ବିଚାର କରି କୁହ, ଯେ ଗୁରୁ ହେଲା ସେ ବଡ଼ ନା ଯେ ଗୁରୁ ବାଛିଲା ସେ ବଡ଼?

''ଲୋକେ କହନ୍ତି— ଗୁରୁଦେବଙ୍କ ଆଦେଶ ଅନୁସାରେ ଆମେ କାର୍ଯ୍ୟ କରୁଛୁ। କିନ୍ତୁ ଏକଥା ସତ୍ୟ ଯେ, କେହି କାହାକୁ ଆଦେଶ ଦେଉ ନାହିଁ ବା କେହି କାହାର ଆଜ୍ଞା ପାଳନ କରୁ ନାହିଁ। ବ୍ୟକ୍ତିର ଅନ୍ତରାତ୍ମା ଯାହା ପ୍ରେରଣା ଦିଏ ସେ ତାହାହିଁ କରେ। 'ଆତ୍ମପୂତଂ ସମାଚରେତ୍' ଅର୍ଥାତ୍ ଆତ୍ମାର ସ୍ୱୀକୃତି ଓ ପ୍ରେରଣା ବିନା କୌଣସି କାର୍ଯ୍ୟ ହୋଇପାରେ ନାହିଁ। ତେଣୁ ନିଜର ମଙ୍ଗଳ ବା ଅମଙ୍ଗଳ ଜାଣିବାରେ ପ୍ରାଣୀଜଗତର ଅନ୍ତରାତ୍ମା ଗୁରୁଭାବେ ନିଜ ଆଗରେ ଉପସ୍ଥିତ ହୁଅନ୍ତି। ଗୁରୁ ନିର୍ବାଚନ ଓ ମର୍ଯ୍ୟାଦା ରକ୍ଷା କରିଥାଏ ନିଜର ଆତ୍ମା। ଅନ୍ତରାତ୍ମାର ଆଦେଶ ବିନା କେହି କାହାକୁ ଗୁରୁ ବୋଲି ସ୍ୱୀକାର କରେ ନାହିଁ। ଏହିଭାବେ ସ୍ଥାବର ଓ ଜଙ୍ଗମଠାରେ ଆତ୍ମା ସର୍ବଥା ସ୍ୱତନ୍ତ୍ରଭାବରେ ଅବସ୍ଥିତ ରହିଥାଏ।''

''କିନ୍ତୁ ଅନେକ ଲୋକ କିଛି ବିଚାର କରନ୍ତି ନାହିଁ। କୌଣସି ଜଣକ ଉପରେ ନିଜର ସମସ୍ତ ଇଚ୍ଛାକୁ ଛାଡ଼ିଦିଅନ୍ତି, ଏବଂ ତାଙ୍କରି ଆଦେଶ ଅନୁସାରେ କାର୍ଯ୍ୟ କରନ୍ତି। ଯେପରି ଲକ୍ଷ୍ମଣ ନିଜର ସମସ୍ତ ଭାବନା ଶ୍ରୀରାମଚନ୍ଦ୍ରଙ୍କଠାରେ ସମର୍ପଣ କରି ତାଙ୍କରି ଆଦେଶ ଅନୁସାରେ ଚଳୁଥିଲେ।'' ଉଦ୍ଧବଙ୍କ ଏପ୍ରକାର ପ୍ରଶ୍ନରେ ଭଗବାନ୍ କହିଲେ— ''ଦେଖ, ଏ ବିଷୟଟି ଗୁରୁତ୍ୱର ସହିତ ବିଚାର କରିବା ଉଚିତ। ଲକ୍ଷ୍ମଣ ଗଭୀର ଚିନ୍ତା କରିବା ପରେ ନିଜର ଅନ୍ତରାତ୍ମାରେ ଏପରି ସିଦ୍ଧାନ୍ତ ନିର୍ଣ୍ଣୟ କରିନେଇଥିଲେ ଯେ, ଶ୍ରୀରାମଙ୍କ ଇଚ୍ଛାନୁସାରେ ଚଳିଲେ ମୋର ମଙ୍ଗଳ ହେବ। ଏଣୁ ସବୁବେଳେ ସେ ଶ୍ରୀରାମଙ୍କ ଆଦେଶକୁ ଶ୍ରେଷ୍ଠ ମଣୁଥିଲେ। ରାଜ୍ୟ ଛାଡ଼ି ବଣକୁ ଯିବାପାଇଁ ତାଙ୍କର ଆଦୌ ଇଚ୍ଛା ନଥିଲା। ଶ୍ରୀରାମଙ୍କୁ ରାଜ୍ୟ ସିଂହାସନରେ ବସାଇବାକୁ ସେ ଚାହୁଁଥିଲେ। କିନ୍ତୁ ଶ୍ରୀରାମ ଏହା ଚାହୁଁ ନଥିଲେ। ଏଣୁ ଲକ୍ଷ୍ମଣ ଶ୍ରୀରାମଙ୍କ ଇଚ୍ଛା ବିରୁଦ୍ଧରେ ଆପତ୍ତି କରି ନଥିଲେ। ତାଙ୍କ ପକ୍ଷରେ ଶ୍ରୀରାମଚନ୍ଦ୍ରଙ୍କ ଆଦେଶ ଥିଲା ସର୍ବୋଚ୍ଚ ଆଦେଶ। ସେଥିପାଇଁ ସେ କେବେହେଲେ ତାଙ୍କ ଆଦେଶ ବିରୁଦ୍ଧରେ କିଛି କରି ନଥିଲେ।''

ମାନବ ସବୁଠାରୁ ବିବେକଶୀଳ। କ'ଣ କଲେ ନିଜର ମଙ୍ଗଳ ହେବ ସେ ବିଷୟରେ ପ୍ରତ୍ୟକ୍ଷ ପ୍ରମାଣ ଦ୍ୱାରା ହେଉ, ବା ଅନୁମାନ ଦ୍ୱାରା ହେଉ, ବ୍ୟକ୍ତି ତା'ର ସିଦ୍ଧାନ୍ତ ଗ୍ରହଣ କରିଥାଏ। ତେଣୁ ପ୍ରକୃତି ଓ ପୁରୁଷ ବିବେଚନାରେ ପଣ୍ଡିତ, ସାଂଖ୍ୟ, ଶାସ୍ତ୍ରବିଦ୍‌ଗଣ ସର୍ବଶକ୍ତିସମ୍ପନ୍ନ ମୋର ସ୍ୱରୂପକୁ ସହଜରେ ବୁଝିପାରନ୍ତି ଏବଂ ବିଚାର ଦୃଷ୍ଟିରେ ମଧ୍ୟ ଦେଖି ପାରନ୍ତି।

ଉଦ୍ଧବ ପଚାରିଲେ— ''ମହାରାଜ! ଯଦି ଆତ୍ମା ସମାନ ଓ ସର୍ବବ୍ୟାପୀ ତେବେ ମାନବଙ୍କୁ ଆପଣ ଏତେ ପ୍ରଶଂସା କରୁଛନ୍ତି କାହିଁକି? ସମସ୍ତେ କ'ଣ ଆପଣଙ୍କୁ ଜାଣିପାରନ୍ତି, ଆପଣଙ୍କ ଜ୍ଞାନ ଲାଭ କରିପାରନ୍ତି?''

ଭଗବାନ୍ କହିଲେ, ''ହଁ, ଏ ସମସ୍ତ ବିଶ୍ୱ ମୋହରି ସୃଷ୍ଟି। ସମସ୍ତ ପ୍ରକାର ପ୍ରାଣୀଙ୍କୁ ମୁଁ ରଚନା କରିଛି। ନାନା ପ୍ରକାର ଯୋନି ମଧ୍ୟରେ ମାନବ ଯୋନି ମୋର ଅତ୍ୟନ୍ତ ପ୍ରିୟ।

ସାଧନାଦ୍ୱାରା ମାନବ ମୋତେ ଲାଭ କରେ। ତେଣୁ ସେ ସାଧକ ଭାବେ ପରିଚିତ। ଆହାର, ନିଦ୍ରା, ଭୟ, ମୈଥୁନ ମଧ୍ୟରେ ମାନବର କାର୍ଯ୍ୟ ସିମୀତ ନୁହେଁ। ସଂଯମ ହେଉଛି ମାନବର ମାନବିକତା। ସଂଯମୀ ପୁରୁଷ ହିଁ ସାଧକ ହେବାର ଅଧିକାରୀ। ଏଥିପାଇଁ ତ ମନୁଷ୍ୟର ଅନ୍ୟ ନାମ ସାଧକ୍। ଇନ୍ଦ୍ରିୟ ମଧ୍ୟରେ ମନ ହେଉଛି ଶ୍ରେଷ୍ଠ। ମନର ଉପରେ ବୁଦ୍ଧି ଓ ବୁଦ୍ଧିର ପରେ ମୁଁ। ବେଦରେ ମୋତେ 'ନେତି ନେତି' ବୋଲି ବର୍ଣ୍ଣନା କରାଯାଇଛି। ବୁଦ୍ଧିମାନ୍ ପୁରୁଷ ନିଜର ବିଚାରଦ୍ୱାରା ଏହି ମାନବ ଶରୀରରେ ପୂର୍ଣ୍ଣ ଜ୍ଞାନ ଲାଭ କରିପାରେ। ପୂର୍ବେ ମହାରାଜ ଯଦୁଙ୍କୁ ଦତ୍ତାତ୍ରେୟ ଏହି ଉପଦେଶ ଦେଇଥିଲେ।''

ଏହା ଶୁଣି ଉଦ୍ଧବ ଉତ୍ସୁକ ହୋଇ କହିଲେ, ''ରାଜା ଯଦୁଙ୍କ ସହ ଅବଧୂତ ଦତ୍ତାତ୍ରେୟଙ୍କ ସାକ୍ଷାତ କେଉଁଠି ହେଲା, ଏବଂ ସେ ଦୁହେଁ କି କି ପ୍ରସଙ୍ଗ ଆଲୋଚନା କରିଥିଲେ ତାହା ଦୟାକରି ବୁଝାଇ ଦିଅନ୍ତୁ।''

### ଛପ୍ପୟ

ନାନା ଯୋନି ବନାଇ ସବନି ମହଁ ନିବସୁଁ ଭାଇ।
କିନ୍ତୁ ମୋଇ ନରଯୋନି ସମନିତୈ ଅତି ସୁଖଦାଈ॥
କିଇକେ ମନୁଜ ବିଚାର ଭେଦ ମେରୋ ସବ ଜାନେ।
ଇନ୍ଦ୍ରିୟ ମନ ଧୀ ପରୈ ମୋଇ ସାଧକ ପହିଚାନେ॥
ନୃପ ଯଦୁ ଅରୁ ଅବଧୂତ କୋ, ଭୟୋ ସୁଖଦ ସମ୍ବାଦ ଜୋ।
ଅତି ପାବନ ଅତି ଜ୍ଞାନମୟ, କହୁଁ ପ୍ରେମ ତେ ସୁନହୁ ସୋ॥



# ଅବଧୂତ ଗୀତା

ଅବଧୂତଂ ଦ୍ୱିଜଂ କଞ୍ଚିଚ୍ଚରନ୍ତମକୁତୋଭୟମ୍ ।
କବିଂ ନିରୀକ୍ଷ୍ୟ ତରୁଣଂ ଯଦୁଃ ପପ୍ରଚ୍ଛ ଧର୍ମବିଦ୍ ।। ★

[ଶ୍ରୀଭା.୧୧ସ୍କ, ୭ଅ, ୨୫ଶ୍ଳୋକ]

**ଛପ୍‌ପୟ**

ଏକ ଦିବସ ଯଦୁ ଗଏ ନିହାରେ ବନମହଁ ଜ୍ଞାନୀ ।
ଥୂଳ, ନଗନ, ନିରଭୀକ ଯୁବକ କବି ସରଲ ଅମାନୀ ।।
ନିତ୍ୟ ମଗନ ଅବଧୂତ ଦେଖି ନୃପ ପୂଛହିଁ ମୁନିବର ।
ବିଚାରୋ ବାଲକ ସରିସ ବୁଦ୍ଧି କହାଇ ସୁଖକର ।।
ଦକ୍ଷ ମଧୁରଭାଷୀ ସୁଧର, ତୋ ଭ ଜଡ଼ ଉନମତ୍ତ ସମ ।
ନିରଧନ ହ୍ୱୈ ବିଚରୋ ସୁଖୀ, କାମ ଅଗିନିମହଁ ତପହିଁ ହମ ।।

ଆମେମାନେ ଇନ୍ଦ୍ରିୟର ଅଧୀନ ହୋଇଥିବାରୁ ବିଷୟ ଜନିତ ସୁଖକୁ ସୁଖ ବୋଲି ମନେକରୁ । ଭୋଗ ସାମଗ୍ରୀ ଯେତେ ପ୍ରଚୁର ମାତ୍ରାରେ ମିଳିବ ଆମେ ସେତେ ସୁଖୀ ହୋଇପାରିବା ବୋଲି ଏକ ମିଥ୍ୟା ଧାରଣା ସମସ୍ତଙ୍କର ରହିଛି । କିନ୍ତୁ, ଯଦି ଏହି ପାର୍ଥିବ ଉପାଦାନଦ୍ୱାରା ପ୍ରକୃତ ସୁଖ ମିଳୁଥାନ୍ତା, ତେବେ ରାଜା ରାଜୁଡ଼ାଗଣ ରାଜକୀୟ ସୁଖଭୋଗ ଓ ରାଜ୍ୟ ତ୍ୟାଗକରି ଚାଲିଯାଉଥାନ୍ତେ କାହିଁକି ? **ସୁଖ, ବିଷୟର ଗ୍ରହଣରେ ନୁହେଁ, ବିଷୟର ତ୍ୟାଗରେ ହିଁ ଥାଏ । ଆଶା ଅପେକ୍ଷା ଆଶାର ପରିତ୍ୟାଗରେ ସୁଖ ମିଳେ, ଭୋଗ ଅପେକ୍ଷା ଯୋଗରେ ହିଁ ସୁଖ ଥାଏ ।** ତା' ନହେଲେ ତୂଳିତଳ୍ପରେ ଧନିକମାନେ ସୁଖ ଶାନ୍ତିରେ ଶୋଇପାରୁ ନ ଥିବାବେଳେ ଖାଲି ମାଟି ଗୋଡ଼ି ଉପରେ ତ୍ୟାଗୀଲୋକ ସୁଖରେ ଶୋଇ ପାରୁଛି କିପରି ! ନ' ତିଅଣ ଛ'ଭଜାରେ ଧନୀ ଲୋକ ତୃପ୍ତିଲାଭ କରିପାରୁ ନାହିଁ, କିନ୍ତୁ ଭୋକ ଲାଗିଲେ ତ୍ୟାଗୀ ଲୋକଙ୍କୁ ସିଝା ଅସିଝା ବା ଶୁଖିଲା ଯାହା କିଛି ଖାଦ୍ୟ ମିଳେ ସେଥିରେ ସେ

---

★ ଏବେ ହୋ କହିବା ବିଶ୍ୱାସେ । ଯେ ପୁରାତନ ଇତିହାସେ ।।
ଯଦୁରାଜନ ଅବଧୂତ । ଏ ବେନିଜନଙ୍କ ଚରିତ ।।
ବ୍ରାହ୍ମଣ ଅବଧୂତ ରୂପେ । ମିଳିଲେ ନୃପତି ସମୀପେ ।।
ସେ ସର୍ବଭୂତେ ଦୟାପର । ନିର୍ଭୟ ନିର୍ମଳ ଶରୀର ।।
ଦେଖି ତାହାଙ୍କ ଦିବ୍ୟଗତି । ବିଶ୍ୱାସେ ପୁଛଇ ନୃପତି ।।

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ.୮ ଅ.]

ପରମ ତୃପ୍ତି ପାଏ । ସେହିପରି ଜଣେ ରାଜମହଲରେ ଶାନ୍ତିରେ ରହିପାରୁ ନ ଥିବାବେଳେ, ଅନ୍ୟଜଣେ ନଦୀଧାର, ବନଗିରି, ଗୁମ୍ଫାରେ ଶିଳାଖଣ୍ଡ ଉପରେ ଆନନ୍ଦରେ କାଳ କଟାଇ ପାରୁଛି । ତେଣୁ ଯେ ଯେତେ ସଂଗ୍ରହ ଓ ସଞ୍ଚୟ କରିବ ସେ ସେତିକି ଭୟାଳୁ, ଅଶାନ୍ତ ଓ ଦୁଃଖୀ ହେବ । ପ୍ରକୃତ ଶାନ୍ତି, ସୁଖ ଓ ନିର୍ଭୟଭାବ ତ୍ୟାଗଦ୍ୱାରା ହିଁ ସମ୍ଭବ ହୁଏ ।

କୌଣସି ଏକ ସାଧୁ ମହାତ୍ମାଙ୍କର ପ୍ରଶଂସା ଶୁଣି ଜଣେ ସମ୍ରାଟ୍ ତାଙ୍କୁ ଦର୍ଶନ କରିବାପାଇଁ ଗଲେ । ଶୀତକାଳ ହୋଇଥାଏ । ସାଧୁ ଜଣକ ଏକ ପଥରଖଣ୍ଡ ଉପରେ ଅନାବୃତ ଦେହରେ ବସି ଖରା ଖାଉଥିଲେ । ଯଥାବିଧି ସମ୍ମାନ ପ୍ରଦର୍ଶନ ପରେ ସମ୍ରାଟ୍ କହିଲେ— 'ପ୍ରଭୋ ! ମୁଁ ଆପଣଙ୍କର କି ଉପକାର କରିପାରିବି ?' ସାଧୁ ମହାରାଜ କଡ଼ଲେଉଟାଇ କହିଲେ— 'ତୁମର ଶରୀର ଛାୟା ମୋ ଉପରେ ପଡୁଥିବାରୁ ସୂର୍ଯ୍ୟ ତାପରେ ବାଧ ପଡୁଛି । ଛାୟା ଛାଡ଼ିଦେବାଦ୍ୱାରା ତୁମେ ମୋର ବଡ଼ ଉପକାର କରିପାରିବ ! ସମ୍ରାଟ୍ ସାଧୁଙ୍କ ନିସ୍ପୃହ ବ୍ୟବହାରରେ ମୁଗ୍ଧ ହୋଇଗଲେ, ଏବଂ ନିଜର ବିଶାଳ ରାଜବୈଭବ ଓ ସୁଖସ୍ୱାଚ୍ଛନ୍ଦ୍ୟକୁ ତୁଚ୍ଛ ମନେ କରିଥିଲେ ।

ଆଉ ଜଣେ ସାଧୁ ଗଙ୍ଗାତୀରରେ ବସିଥା'ନ୍ତି । ନିଶ୍ଚିନ୍ତରେ ଥିବାରୁ ତାଙ୍କର ଶରୀର ସ୍ଥୂଳ ହୋଇଗଲା । ଗାଁ ପିଲାମାନେ ଦିନେ ସାଧୁଙ୍କ ପୃଥୁଳ ଶରୀରକୁ ନେଇ ଖେଳିବାପାଇଁ ସିଦ୍ଧାନ୍ତ କଲେ, ଏବଂ ଛୁରୀରେ ସାଧୁଙ୍କ ଜଂଘରେ ଗାର କାଟିବାକୁ ଲାଗିଲେ । ଦେହ ଚିରିହେବାରୁ କଟା ସ୍ଥାନରୁ ରକ୍ତ ବାହାରିଲା । ଏହି ସମୟରେ ଜଣେ ବୁଦ୍ଧିମାନ୍ ଲୋକ ସେଠାରେ ପହଞ୍ଚି ପିଲାମାନଙ୍କୁ ଘଉଡ଼େଇଦେଲେ ଏବଂ କନାପଟି ବାନ୍ଧିବାରେ ଲାଗିଗଲେ । ସେତେବେଳେ ସାଧୁ ହସି ହସି କହିଲେ— 'ଆରେ ଚମଡ଼ା ପଟିତ ବନ୍ଧା ଯାଇଛି, ଆଉ ପଟି ବାନ୍ଧିବା କ'ଣ ଦରକାର ? ସବୁ ଆପେ ଆପେ ଭଲ ହୋଇଯିବ ।' ତାଙ୍କର ଏହି କଥା ଶୁଣି ପଟିବାନ୍ଧୁଥିବା ଲୋକ ଆଶ୍ଚର୍ଯ୍ୟ ହୋଇଗଲେ । ନିଜ ଶରୀର ପ୍ରତି ମମତା ନ ରହିବା ଆଶ୍ଚର୍ଯ୍ୟର କଥା ନୁହେଁ କି ?

ଏସବୁର ସାରକଥା ହେଉଛି, ଯଦି ଦୁଃଖର କାରଣଭୂତ ମାୟା ମୋହକୁ ଜଣେ ତ୍ୟାଗ କରିପାରିବ, ତେବେ ତା'ର କୌଣସି ଦୁଃଖ ହେବ ନାହିଁ । ଆମେ ସୁଖ ଇଚ୍ଛା କରୁଛୁ କିନ୍ତୁ ମାୟାମୋହକୁ ତ୍ୟାଗ କରିପାରୁ ନାହେଁ । ଏ ଦୁଇ କଥା ଏକ ସମୟରେ କିପରି ସମ୍ଭବ ହେବ ତ୍ୟାଗରୁ ଶାନ୍ତି, ବୈରାଗ୍ୟରୁ ନିର୍ଭୟତା, ଅନାସକ୍ତିରୁ ସୁଖ, ସରସତାରୁ ଆନନ୍ଦ ଓ ନିଷ୍କପଟତାରୁ ଆତ୍ମପରିଚୟ ମିଳେବୋଲି ସମସ୍ତେ ମନେରଖିବା ଉଚିତ ହେବ ।

ମହର୍ଷିସୂତ କହୁଛନ୍ତି— ହେ ମୁନିଗଣ ! ଉଦ୍ଧବଙ୍କୁ ଉପଦେଶ ଦେବା ଲକ୍ଷ୍ୟରେ ଭଗବାନ୍ ଶ୍ରୀକୃଷ୍ଣ ଅବଧୂତ ଗୀତା ବର୍ଣ୍ଣନା କରିଥିଲେ । ଭଗବାନ୍ କହିବାକୁ ଆରମ୍ଭ କଲେ— "ହେ ଉଦ୍ଧବ ! ପୂର୍ବେ ଆମ ବଂଶରେ ଯଦୁ ନାମରେ ଜଣେ ରାଜା ଥିଲେ । ଦିନେ ସେ ଶିକାର କରିବା ନିମିତ୍ତ ବଣକୁ ଯାଇଥିଲେ । ନିବିଡ଼ ଅରଣ୍ୟ ମଧ୍ୟରେ ଏକ ପୁଷ୍କରିଣୀ କୂଳରେ ପଡ଼ିଥିବା ଏକ ପଥର ଉପରେ ଜଣେ ସାଧୁଙ୍କୁ ବସିଥିବାର ଦେଖି ମହାରାଜା ଯଦୁ ଆଶ୍ଚର୍ଯ୍ୟ ହୋଇଗଲେ । ସାଧୁଙ୍କ ଶରୀର ଗୌରବର୍ଣ୍ଣ ଓ ପୃଥୁଳ ହୋଇଥିବାରୁ ଦେଖିବାକୁ ଯୁବକ ଭଳି ମନେ ହେଉଥିଲେ । ତାଙ୍କ ମୁଖମଣ୍ଡଳର ଉଜ୍ଜ୍ୱଳତାରେ ଏକପ୍ରକାର ପ୍ରଭା ନିର୍ଗତ ହେଉଥିଲା । ସେ ଉଲଗ୍ନ ଥିଲେ ଓ ସର୍ବାଙ୍ଗ ତାଙ୍କର ଧୂଳିଧୂସରିତ ହୋଇଥିଲା । ହସ ହସ ମୁଖରୁ ଆନନ୍ଦର ଛଟା ଉକୁଟି ଉଠିଲା । ମହାରାଜ ଯଦୁ ତାଙ୍କୁ ପ୍ରଣାମ ଜଣାଇ ପଚାରିଲେ— 'ହେ ବ୍ରହ୍ମନ୍ !

ମୁଁ ଆପଣଙ୍କୁ କିଛି ପ୍ରଶ୍ନ କରିବାକୁ ଇଚ୍ଛା କରୁଛି, ଅନୁମତି ଦେଲେ ପଚାରିବି।' ରାଜାଙ୍କ ପ୍ରଶ୍ନରେ ଅବଧୂତଙ୍କ ଆଖି ଖୋଲିଗଲା। ସେ ନିବିଷ୍ଟ ଚିତ୍ତରେ ରାଜାଙ୍କୁ କିଛି ସମୟ ଚାହିଁ, ହସି ହସି କହିଲେ— 'ହେ ରାଜନ୍! ଆପଣ କ'ଣ ପଚାରିବାକୁ ଚାହୁଁଛନ୍ତି ? ଯାହା ପଚାରିବେ ମୁଁ ଉତ୍ତର ଦେବି, ଆପଣ ନିଶ୍ଚିନ୍ତରେ ପଚାରନ୍ତୁ।'

ଅବଧୂତଙ୍କଠାରୁ ଆଶ୍ୱାସନା ପାଇ ରାଜା କହିଲେ—''ଭଗବନ୍! ଲୋକେ କର୍ତ୍ତାପଣର ଅଭିମାନରେ ଚିନ୍ତିତ ରୁହନ୍ତି। ମୁଁ ଘର ତିଆରି କରିଛି, ଏହାକୁ ଅନ୍ୟ କେହି ଅଧିକାର ନ କର। ଘରଟି ଫାଟି ନ ଯାଉ ବା ଭାଙ୍ଗି ନ ଯାଉ ବୋଲି' ଗୃହସ୍ୱାମୀ ସବୁବେଳେ ଚିନ୍ତା କରନ୍ତି। କିନ୍ତୁ ଯେ ଘରଟିଏ ତିଆରି ନ କରିଛି, ତା'ର ସେ ବିଷୟରେ କୌଣସି ଚିନ୍ତା ହୁଏ ନାହିଁ। ସହର ବଜାରରେ ପ୍ରତ୍ୟେହ କେତେ ଘର ଭାଙ୍ଗିଯାଉଛି, ଏବଂ କେତେ ପୁଣି ତିଆରି ହେଉଛି। କିନ୍ତୁ ଯାହାର ଏ ବିଷୟରେ ଆଗ୍ରହ ନାହିଁ, ତା'ର ଦୁଃଖ ବା ଆନନ୍ଦ ଜାତ ହୁଏ ନାହିଁ। ମୁଁ ଦେଖୁଛି, ଆପଣଙ୍କର କୌଣସିଥିରେ ଆପଣାର ଭାବ ନାହିଁ। ପ୍ରଭୁପଣଠାରୁ ଆପଣ ବହୁଦୂରରେ। କିନ୍ତୁ, ଏ ପ୍ରକାର ବୁଦ୍ଧି ଆପଣଙ୍କର ଆସିଲା କିମିତି ? ଆପଣଙ୍କର ଗୁରୁ କିଏ ? କାହାଠାରୁ ଓ କାହା ଆଶ୍ରୟରେ ଏପରି ଶିକ୍ଷା ଲାଭ କଲେ ଯାହାଦ୍ୱାରା ଆପଣ ଅବୋଧ ବାଳକ ଭଳି ବ୍ୟବହାର ପ୍ରଦର୍ଶନ କରୁଛନ୍ତି।' କିନ୍ତୁ, ଆପଣ କାହିଁକି ଏପରି ପ୍ରଶ୍ନ କରୁଛନ୍ତି ବୋଲି ଅବଧୂତ ପଚାରିବାରୁ ମହାରାଜ ଯଦୁ କହିଲେ— ''ବିନା କାରଣରେ ମନ୍ଦଲୋକ ମଧ୍ୟ କୌଣସି କାର୍ଯ୍ୟରେ ଆଗ୍ରହ ପ୍ରକାଶ କରେ ନାହିଁ। ପ୍ରାୟ ଦେଖାଯାଏ ଧର୍ମ, ଅର୍ଥ, କାମ ବା ତତ୍ତ୍ୱଜିଜ୍ଞାସାରେ ଲୋକେ କେବଳ ଆୟୁ, ଯଶ ଓ ଐଶ୍ୱର୍ଯ୍ୟର କାରଣ ସମ୍ବନ୍ଧୀୟ ଚିନ୍ତାରେ ମଗ୍ନ ରହନ୍ତି। ଯେ ଶକ୍ତିହୀନ ଓ ଅକର୍ମଣ୍ୟ ସେ ବସିରହିବାକୁ ବାଧ ହୁଏ, କିନ୍ତୁ ଅନେକ କାମ କରିବାର ଶକ୍ତି ଓ ସାମର୍ଥ୍ୟ ଥିଲେ ମଧ ଶିକ୍ଷା ଅଭାବରୁ ନିଜେ କୌଣସି କାର୍ଯ୍ୟ କରିବାକୁ ଆଗ୍ରହୀ ହୁଅନ୍ତି ନାହିଁ। ଯଦି କେହି ତାଙ୍କୁ ପ୍ରେରଣା ଦେବେ ତେବେ ତାହାର କାର୍ଯ୍ୟ କରିବାକୁ ଇଚ୍ଛା ହେବ। କିନ୍ତୁ ଆପଣ ସବୁଦିଗରୁ ସମର୍ଥ ଓ ବିଦ୍ୱାନ୍। ଅନେକଲୋକ ପାଠ ପଢ଼ିଯାଆନ୍ତି, କିନ୍ତୁ ସେଥିରେ ଦକ୍ଷତା ଅର୍ଜନ କରିଥିବା ଲୋକ ବିରଳ। ଆପଣ କାର୍ଯ୍ୟଦକ୍ଷ ଓ ବ୍ୟବହାର କୁଶଳ ବୋଲି ମୋର ମନେହୁଏ। କିନ୍ତୁ ଅନେକ ବିଦ୍ୱାନ୍ ହୋଇ ମଧ ଉତ୍ତମଗୁଣରୁ ବଞ୍ଚିତ ହୋଇଥାନ୍ତି। ଆପଣ ସୁନ୍ଦର, ସୁଭଗ ଓ ସୌଭାଗ୍ୟଶାଳୀ। କିନ୍ତୁ ଅନେକ ଯଶସ୍ୱୀ, ତେଜସ୍ୱୀ, ପଣ୍ଡିତ ଅଛନ୍ତି ଯେଉଁମାନଙ୍କର ବଚନ ଅତି କଠୋର ଓ ଅନ୍ୟର ଦୁଃଖଦାୟକ ହୋଇଥାଏ। ଏହାଦ୍ୱାରା ତାଙ୍କର ସମସ୍ତ ଗୁଣ ବ୍ୟର୍ଥ ହୋଇଯାଏ। ଜଣେ ହତ୍ୟାକାରୀ ହତ୍ୟାଦ୍ୱାରା ଯେତିକି ପାପ କରି ନ ପାରେ, ଜଣେ କଟୁଭାଷୀ କଥା କଥାକେ ତା'ଠାରୁ ଅଧିକ ପାପ ଅର୍ଜନ କରେ। ଆପଣ ଯେ ମଧୁରଭାଷୀ, ତାହା ମୁଁ ପଦିଏ କଥାରୁ ଜାଣୁଛି। ଆପଣ ସାଧାରଣ ଲୋକବ୍ୟବହାରର ଉପରେ। ଆପଣ ସଂସାରୀ ଲୋକ ଭଳି କିଛି କରୁ ନାହାନ୍ତି କି କରିବାର ଇଚ୍ଛା ବି ରଖି ନାହାନ୍ତି। ଆପଣ ନିଶ୍ଚିନ୍ତ ଅଛନ୍ତି।''

'କ'ଣ ପାଇଁ ଚିନ୍ତା କରିବି' ବୋଲି ସାଧୁଙ୍କଠାରୁ ଶୁଣି ବିସ୍ମିତ ହୋଇ ରାଜା କହିଲେ— ''ଏ ସଂସାରରେ ସମସ୍ତଙ୍କର କିଛି ନା କିଛି ଚିନ୍ତା ରହିଛି। ଧନ, ସ୍ତ୍ରୀ, ପୁତ୍ର, କନ୍ୟା ପ୍ରତିଷ୍ଠା, ମାନସମ୍ମାନ, ପଦପଦବୀ, ପୁସ୍ତକ ଲେଖକ ବା ପୁସ୍ତକ ପ୍ରକାଶନ ଆଦି କୌଣସି ନା କୌଣସି ଚିନ୍ତାରେ ଲୋକ ମଗ୍ନ ରହିଥାଏ। ଅନ୍ୟପକ୍ଷରେ ସନ୍ନ୍ୟାସୀର ମଧ ଦଣ୍ଡ, କମଣ୍ଡଳୁ, କନ୍ଥା ଓ କୌପୀନ ବିଷୟରେ ଚିନ୍ତା ଥାଏ। ସମସ୍ତେ ଲୋଭ ଓ କାମନାର ଦାବାନଳରେ ଦଗ୍ଧ

ହେଉଛନ୍ତି। ସଂସାର ରୂପକ ବନରେ ଚିନ୍ତାରୂପକ ଦାବାନଳ ଜଳୁଛି। ସମସ୍ତେ ସେଥିରେ ହାହାକାର କରୁଛନ୍ତି। ଏଭଳି ଚିନ୍ତା ପରିପୂର୍ଣ୍ଣ ସଂସାରରେ ଥାଇ ମଧ୍ୟ ଆପଣ କିପରି ଏତେ ନିଶ୍ଚିନ୍ତ ଓ ନିର୍ଭୟ ହୋଇପାରିଛନ୍ତି ତାହା ମୋତେ ବିସ୍ମିତ କରୁଛି। ସ୍ତ୍ରୀ ପୁତ୍ର କନ୍ୟାଦିଙ୍କ ଗହଣରେ ଥିବା ବ୍ୟକ୍ତି ଯେ କେତେ କଷ୍ଟ ଓ ଯନ୍ତ୍ରଣା ସହୁଛି, ତାହା ଆପଣ ଜାଣନ୍ତି ନାହିଁ। ଆପଣ ସର୍ବଦା ଆତ୍ମଚିନ୍ତନରେ ରହି ଅଲୌକିକ ଆନନ୍ଦ ଲାଭ କରୁଛନ୍ତି। ଏ ଶିକ୍ଷା ଓ ଆନନ୍ଦର ମାର୍ଗ ନିର୍ଦ୍ଦେଶକ କିଏ ତାହାହିଁ ମୋତେ କହନ୍ତୁ।''

ଏହାଶୁଣି ଅବଧୂତ ଖୁବ୍ ଜୋରରେ ହସି ଉଠିଲେ। ଅନ୍ୟ କେହି ଏ ପ୍ରକାର ପ୍ରଶ୍ନ କରିଥିଲେ ହୁଏତ ସେ ଉତ୍ତର ଦେଇ ନଥାନ୍ତେ। କିନ୍ତୁ ମହାରାଜ ଯଦୁ ହେଉଛନ୍ତି ବ୍ରାହ୍ମଣ ଭକ୍ତ। ସେ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଓ ପରମାର୍ଥପ୍ରିୟ। ଅଧିକାରୀ ବ୍ୟକ୍ତିଙ୍କୁ ହିଁ ସମୁଚିତ ଉତ୍ତର ଦିଆହୁଏ। ସେଥିପାଇଁ ସେ ଉତ୍ତର ଶୁଣିବାର ପ୍ରକୃତ ଅଧିକାରୀ। ଏ ସମସ୍ତ ବିଚାର କରି ଅବଧୂତ ସେହି ରାଜାଙ୍କୁ ଚାହିଁ କହିଲେ, ''ରାଜନ୍! ମୋର ଜଣେ କେହି ଗୁରୁ ଥିଲେ ମୁଁ ନିଶ୍ଚୟ ତାଙ୍କର ନାମ କହିଥାନ୍ତି। ଦୀକ୍ଷାଗୁରୁ ସିନା ଜଣେ, କିନ୍ତୁ ଶିକ୍ଷାଗୁରୁ ତ ଅନେକ। ଯାହାଠାରୁ ଯେଉଁ ଗୁଣ ଶିଖିଲି ସେହି ଗୁଣର ଅଧିକାରୀ ମୋର ଗୁରୁଭାବେ ପରିଚିତ।''

ଆପଣଙ୍କର କିଏ କିଏ ପ୍ରକୃତ ଗୁରୁ ସେ ବିଷୟରେ ଶୁଣିବାକୁ ଇଚ୍ଛା କରୁଛି, ବୋଲି ଯଦୁ ମହାରାଜଙ୍କଠାରୁ ଶୁଣି ଅବଧୂତ କହିଲେ— ''ରାଜନ୍! ମୋର ଚବିଶ ଜଣ ଗୁରୁ ଅଛନ୍ତି। ସେମାନଙ୍କଠାରୁ ଶିକ୍ଷାଲାଭ କରି ମୁଁ ନିର୍ଭୀକଭାବେ ଏ ସଂସାର ମଧ୍ୟରେ ବିଚରଣ କରୁଛି। ମୋର କୌଣସି ବିଷୟରେ ଚିନ୍ତା ନାହିଁ।''

ରାଜା କହିଲେ— ''ଭଗବନ୍! ଆପଣଙ୍କର ଏଇ ଚବିଶ ଗୁରୁଙ୍କ ପରିଚୟ କ'ଣ? ସେଇ ଋଷିଗଣ କେଉଁ ବଣରେ ରହି ତପସ୍ୟା କରୁଛନ୍ତି। ସେମାନଙ୍କର ନାମ କ'ଣ?

ଅବଧୂତ କହିଲେ— ରାଜନ୍! ମୋର ଚବିଶ ଗୁରୁ ସର୍ବତ୍ର ବିଦ୍ୟମାନ। ସେମାନଙ୍କର ନାମ କହୁଛି ମନ ଦେଇ ଶୁଣନ୍ତୁ। (୧)ପୃଥିବୀ, (୨)ବାୟୁ, (୩)ଆକାଶ, (୪)ଜଳ, (୫)ଅଗ୍ନି, (୬)ଚନ୍ଦ୍ର, (୭)ସୂର୍ଯ୍ୟ, (୮)କପୋତ, (୯)ଅଜଗର, (୧୦)ସମୁଦ୍ର, (୧୧)ପତଙ୍ଗ, (୧୨)ମହୁମାଛି, (୧୩)ହାତୀ, (୧୪)ମଧୁହାରୀ, (୧୫)ହରିଣ, (୧୬)ମୀନ, (୧୭)ପିଙ୍ଗଳାବେଶ୍ୟା, (୧୮)କୁରର ପକ୍ଷୀ, (୧୯)ବାଳକ, (୨୦)କୁମାରୀ କନ୍ୟା, (୨୧)ବାଣ ନିର୍ମାତା, (୨୨)ସର୍ପ, (୨୩)ବୁଢ଼ୀଆଣି, (୨୪)କୁମ୍ଭାରୁଆ ପୋକ। ଏହି ଚବିଶ ଜଣ ମୋର ଗୁରୁ। ଏଇମାନଙ୍କଠାରୁ ଶିକ୍ଷା ଲାଭ କରି ମୁଁ ନିର୍ଭୟ ଓ ନିଶ୍ଚିନ୍ତ ହୋଇପାରିଛି।''

ମହାରାଜ ଯଦୁ କହିଲେ— ''ବ୍ରହ୍ମନ୍! ଏହା ଅତି ଅଦ୍ଭୁତ କଥା, ଏଇ ଅଶିକ୍ଷିତମାନଙ୍କଠାରୁ ଆପଣ କିପରି ଶିକ୍ଷାଲାଭ କଲେ? ଦୟାକରି କାହାଠାରୁ କି'ପ୍ରକାର ଶିକ୍ଷା ପାଇଲେ ତାହା କହନ୍ତୁ।''

ସୂତ କହୁଛନ୍ତି— ''ମୁନିଗଣ! ରାଜା ଯେତେବେଳେ ଅବଧୂତ ଦତ୍ତାତ୍ରେୟଙ୍କର ଚବିଶ ଗୁରୁଙ୍କ ଠାରୁ ଲାଭ କରିଥିବା ଶିକ୍ଷା ସମ୍ବନ୍ଧରେ ଜାଣିବାକୁ ଆଗ୍ରହ ପ୍ରକାଶ କଲେ, ସେତେବେଳେ ଅବଧୂତ, ରାଜାଙ୍କୁ ପ୍ରକୃତ ଅଧିକାରୀ ବୋଲି ଜାଣି ଲାଭ କରିଥିବା ଶିକ୍ଷା ପ୍ରସଙ୍ଗ ବର୍ଣ୍ଣନା

କରିବାକୁ ଲାଗିଲେ। ସେହି ଶିକ୍ଷା ବିଷୟରେ ମୁଁ କହୁଛି, ଆପଣମାନେ ନିବିଷ୍ଟ ଚିତ୍ତରେ ଶୁଣନ୍ତୁ।''

**ଛପ୍ପୟ**

ହଁସି ବୋଲେ ଅବଧୂତ– 'ଭୂମି, ନଭ, ଅନିଲ, ଅନଲ, ଜଳ।
ରବି, ଶଶି, ଅଜଗର ଜଳଧି, କବୂତର, ହରିନ, ରୁଦନବଲ॥
ମଧୁମକ୍ଷୀ, କରି, ମୀନ, ପିଙ୍ଗଳା- ବେଶ୍ୟା, କୁରରୀ।
ଶରକୃତ, ଭୃଙ୍ଗୀ, ସରପ, କୁମାରୀ କନ୍ୟା, ମକରୀ॥
ମଧୁହାରୀ, ଅରୁ ପତଙ୍ଗା, ଗୁରୁ ଚୌବାସ ବନାଇକେ।
ସବନ୍ତେ ତେ ଶିକ୍ଷା ଲଈ, ଇନ ସବକେ ତିଗ ଜାଇକେ॥



# ପୃଥିବୀମାତା ମୋର ଗୁରୁ

**ଭୂତୈରାକ୍ରମ୍ୟମାଣୋଽପି ଧୀରୋ ଦୈବବଶାନୁଗୈଃ।**
**ତଦ୍ ବିଦ୍ୱାନ୍ ନ ଚଲେନ୍ମାର୍ଗାଦନ୍ୱଶିକ୍ଷଂ କ୍ଷିତେର୍ବ୍ରତମ୍॥** ★

[ଶ୍ରୀଭା.୧୧ସ୍କ. ୧୭ଅ, ୩୭ଶ୍ଳୋକ]

**ଛପ୍ପୟ**

ହୋବେ ନିତ ଉତପାତ ଅପନି ପୈ ସବଈ ଖୋଦେ।
କହିଁ ଗିଁଦୀ କହିଁ କନକ ଖୋଦିକେ ନର ନିତ ସୋଦେ॥
ତଜ ନ ହୋବେ କୁପିତ ଧୀରତା ମନମହିଁ ଧାରେ।
ଜ୍ଞାନୀ କୋ ସତ୍କାର କରେ ଚାହେ ତୋ ମାରେ॥
ମାଲା ମେଲୀ କଣ୍ଠ ମେ, କାହୂ ନେ ଗାରୀ ଦଈ।
ରହେ ସଦାଇ ଏକ ରସ, ବହ ଶିକ୍ଷା ଭୂ ତେ ଲଈ॥

---

 ଏ ଜୀବ ଆତ୍ମା ପରବଶ । ଅଦୃଷ୍ଟ କାରଣ ବିଶ୍ୱାସ ॥
ଦୁଃଖ ପୀଡ଼ିତ କର୍ମଫଳେ । ସଂସାରେ ଜନ୍ମି ଅବହେଳେ ॥
କର୍ମ ଆଦରି ସହେ ଦୁଃଖ । କେବେହେଁ ନୋହଇ ବିମୁଖ ॥
ଦୁଃଖେ ନ ଛାଡ଼ି ନିଜ ପଥ । ଚଞ୍ଚଳ ନ କରଇ ଚିତ୍ତ ॥
ଏଣୁ ମୁଁ ଦୁଃଖ ସୁଖ ସହି । ଏହା ଶିଖିଲି ଭୂମି ଠାହିଁ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ. ୮ମ.ଅ.]

ଏକଦା ଜଣେ ସାଧୁ ଭିକ୍ଷା ମାଗି ବୁଲୁଥିଲେ। ଜଣେ ଲୋକ ତାଙ୍କୁ ଭିକ୍ଷା ଦେବା ପାଇଁ ଆଦର କରି ଡାକିଲେ। ସାଧୁ ଜଣକ ଭିକ୍ଷାପାଇଁ ଆସି ପହଞ୍ଚିବା ମାତ୍ରେ ଭଦ୍ରଲୋକ ତାଙ୍କୁ ଅନେକ ଗାଳି ଦେଇ ବିଦା କରିଦେଲେ। ସାଧୁ ସେଠାରୁ କିଛି ଦୂର ଚାଲିଯିବା ପରେ ଭଦ୍ରଲୋକ ଜଣକ ପୁଣି ତାଙ୍କୁ ଡାକିଲେ। ସାଧୁ ଫେରି ଆସି ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ଭଦ୍ରଲୋକ ଅତି କଠୋରଭାବେ ଗାଳିଦେବାରୁ ସାଧୁ ସେଠାରୁ ଫେରିଗଲେ। ଏହିଭଳି କେତେଥର କରିବା ପରେ ଲଜ୍ଜିତ ହୋଇ ଭଦ୍ରଲୋକ ସାଧୁଙ୍କୁ ପ୍ରଣାମ ଜଣାଇ ତାଙ୍କ ଧୈର୍ଯ୍ୟ ଓ କ୍ରୋଧଶୂନ୍ୟତାର ଭୂୟସୀ ପ୍ରସଂଶା କଲେ। ସାଧୁ ମହାରାଜ କହିଲେ— ''ପେଟ ପାଇଁ ଲୋକଙ୍କୁ ସବୁକିଛି କରିବାକୁ ପଡ଼େ, ଏଥର ଧୈର୍ଯ୍ୟର ପ୍ରଶ୍ନ ଉଠୁଛି କେଉଁଠି ? ମଣିଷ ଅପେକ୍ଷା କୁକୁରଠାରେ ଅଧିକ ସହିଷ୍ଣୁତା ଦେଖାଯାଏ। ଟିକିଏ ଖାଦ୍ୟ ଦେଖେଇ ଦେଲେ ସେ ଆସେ ଏବଂ ବାଡ଼ିରେ ବାଡ଼େଇବାମାତ୍ରେ ଦୌଡ଼ି ପଳାଏ। ପୁଣି ଖାଦ୍ୟ ଟିକିଏ ଦେଖେଇଦେଲେ କୁକୁର ପାଖକୁ ଚାଲିଆସେ। ତୁମେ ତ ମୋତେ କେବଳ ଗାଳିଗୁଲଜ କରିଛ। କୁକୁରଠାରୁ ମୁଁ ଅଧିକ ସହିଷ୍ଣୁ ହେଲି କିପରି ?''

ଆଉ ଏକ ଘଟଣାରେ ଜଣେ ଦୁଷ୍ଟ ଲୋକ ଜଣେ ସାଧୁଙ୍କ ଧୈର୍ଯ୍ୟର ପରୀକ୍ଷା କରିବାକୁ ଇଚ୍ଛା କଲା। ସାଧୁ ଜଣକ ନଦୀରୁ ଗାଧୋଇ ଆସିବା ମାତ୍ରେ ଦୁଷ୍ଟଟି ତାଙ୍କ ଉପରେ ଛେପ ପକେଇ ଦେଲା। ସାଧୁ ପୁଣି ନଦୀକୁ ସ୍ନାନ କରିବାକୁ ଗଲେ। ସେ ଉପରକୁ ଆସିବା ମାତ୍ରେ ଦୁଷ୍ଟଟି ପୁଣି ଛେପ ପକେଇଲା। ଏହିପରି ୧୦୮ଥର କରିବା ପରେ ସାଧୁଙ୍କ ଅବିଚଳିତ ଭାବ ଦେଖି ଦୁଷ୍ଟଟି ନିଜର ଅପରାଧପାଇଁ ତାଙ୍କୁ କ୍ଷମା ମାଗିଲା। ସାଧୁ କହିଲେ— ''ଆରେ, ତୁ ମୋ ଉପରେ ଛେପ ପକେଇ ଉପକାର କରିଛୁ। ଗଙ୍ଗାନଦୀରେ ଥରେ ସ୍ନାନ କଲେ କେତେ ଫଳ ମିଳେ। ତୋ ଯୋଗୁଁ ମୋର ସେହି ଫଳ ଏକା ଦିନକେ ୧୦୮ଗୁଣ ବଢ଼ିଗଲା।'' ସାଧୁଙ୍କ ଧୈର୍ଯ୍ୟର ପ୍ରଭାବରେ ଦୁଷ୍ଟଟି ସାଧୁ ପାଲଟିଗଲା।

ସୂତ କହୁଛନ୍ତି— ''ହେ ମୁନିଗଣ ! ଯଦୁ ମହାରାଜ ଯେତେବେଳେ ଚବିଶ ଗୁରୁଙ୍କଠାରୁ କି କି ଶିକ୍ଷା ଲାଭ କଲେ ବୋଲି ପ୍ରଶ୍ନ କଲେ, ତାହାର ଉତ୍ତର ଦେବାକୁ ଯାଇ ଅବଧୂତ ବୁଝାଇଲେ— ହେ ପୁରୁଷ ସିଂହ ! ଆପଣ ଯେଉଁ ଗୁରୁଙ୍କ ବିଷୟରେ ପଚାରିବେ ମୁଁ ତାଙ୍କରି ବିଷୟରେ କହିବି।''

ରାଜା ପଚାରିଲେ— ''ପ୍ରଭୋ ! ପ୍ରଥମେ ଆପଣ ପୃଥିବୀଠାରୁ କ'ଣ ଶିଖିଲେ ତାହା କୁହନ୍ତୁ। ପୃଥିବୀକୁ ଆପଣ କାହିଁକି ଗୁରୁଭାବେ ସ୍ୱୀକାର କଲେ ?''

ଅବଧୂତ କହିଲେ— ''ପୃଥିବୀଠାରୁ ଅଧିକ ସହନଶୀଳତା ମୁଁ ଅନ୍ୟ କେଉଁଠି ଦେଖିଲି ନାହିଁ। ତେଣୁ ପୃଥିବୀକୁ ଗୁରୁ କରି ମୁଁ ଧୈର୍ଯ୍ୟବ୍ରତ ଶିକ୍ଷା ଗ୍ରହଣ କଲି।''

ଧୈର୍ଯ୍ୟବ୍ରତ କ'ଣ ତାହାକୁ ସରଳଭାବେ ବୁଝାଇଦେବାପାଇଁ ମହାରାଜ ଯଦୁ ଅନୁରୋଧ କରିବାରୁ ଅବଧୂତ କହିଲେ— ''ଦେଖ, ପୃଥିବୀ ସମସ୍ତଙ୍କୁ ଧାରଣ କରିଛି। ହାଣିବା, ତାଡ଼ିବା, ଖୋଳିବା, ହଳକରିବା ଆଦି ବହୁଭାବରେ ଲୋକେ ପୃଥିବୀ ଉପରେ ନାନାପ୍ରକାର ଅତ୍ୟାଚାର କରୁଛନ୍ତି। କିନ୍ତୁ ପୃଥିବୀ କେବେହେଲେ ତା'ର କୋପ ପ୍ରକାଶ କରିନାହିଁ। ବରଂ ସେ ଅଧିକ ଅନ୍ନ ଜଳ ଦାନ କରିଛି। ଗୋଟିଏ ଶସ୍ୟ ବୀଜକୁ ପୃଥିବୀ ଅଜସ୍ରଭାବେ ବର୍ଦ୍ଧନ କରି ଜୀବଜଗତର ପ୍ରତିପୋଷଣ କରିଆସୁଛି। ସୁନା, ରୁପା, ହୀରା, ନୀଳା ଆଦି ରତ୍ନ,

ନାନାପ୍ରକାର ଇନ୍ଧନ ଓ ଧାତୁ ଜୀବଜଗତର ଉପକାରପାଇଁ ପୃଥିବୀ ଦାନ କରୁଛି। ଯୁଦ୍ଧାଦି ମାନବିକ ବିପ୍ଳାତ, ମଳମୂତ୍ର ତ୍ୟାଗଠାରୁ ଆରମ୍ଭ କରି ନାନାବିଧ କୁତ୍ସିତ କାର୍ଯ୍ୟ କରୁଥିଲେ ସୁଦ୍ଧା ପୃଥିବୀ ଶାନ୍ତଭାବେ ଧୈର୍ଯ୍ୟର ସହିତ ସବୁକିଛି ସହୁଛି। ଏହା ଦେଖି ମୁଁ ବିଶେଷ ପ୍ରଭାବିତ ହୋଇଛି। ତେଣୁ ପୃଥିବୀକୁ ଗୁରୁଭାବେ ଗ୍ରହଣ ପୂର୍ବକ ମୁଁ ଧୈର୍ଯ୍ୟବ୍ରତ ପାଳନ କରୁଛି।''

''ସାଧୁ ଲୋକ ହଠାତ୍ କେବେହେଲେ କାହାକୁ କଷ୍ଟଦେବା ଉଚିତ ନୁହେଁ। ପୂର୍ବଜନ୍ମର ସଂସ୍କାର ବଶତଃ ଲୋକେ ବାଧ୍ୟ ହୋଇ ଇଚ୍ଛା ବିରୁଦ୍ଧରେ ଅନେକ ପ୍ରକାର ଅପରାଧ କରି ବସନ୍ତି। ତେଣୁ ଯଦି କେହି ଦୈବୀ ମାୟା ବଶତଃ ସାଧୁଙ୍କୁ କଷ୍ଟ ଦିଏ, ତେବେ ସାଧୁ ପକ୍ଷରେ ତାହା ସହନୀୟ। ମୂର୍ଖ ଲୋକେ ମୂର୍ଖତା ପ୍ରଦର୍ଶନ କଲେ ଜ୍ଞାନୀ ଲୋକ ନିଜର ଉଦାରତା ଓ ନମ୍ରତାର ପରିଚୟ ଦେବା ଉଚିତ। ବିଦ୍ୱାନ୍ କେବେ ହେଲେ ନ୍ୟାୟ ଓ ସତ୍ୟ ପଥରୁ ଓହରି ଆସିବା ଉଚିତ ନୁହେଁ। ଯଦି ମନ ଭିତରେ କେବେ ଅପରାଧ ଭାବନା ଜାଗ୍ରତ ହେବ, ତେବେ ବାରମ୍ବାର ଭୂମି ଉପରେ ଦୃଷ୍ଟିପାତ କଲେ ଏବଂ ତା'ର ସହିଷ୍ଣୁତା ପ୍ରତି ଲକ୍ଷ୍ୟ କଲେ, ନିଜର କହିବା ଅଭ୍ୟାସ ଧୀରେ ଧୀରେ ବଢ଼ି ପାରିବ। ପୃଥିବୀଠାରୁ ସହିଷ୍ଣୁତା ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ତା' ଉପରେ ବିରାଜିତ ପର୍ବତ ଓ ବୃକ୍ଷଠାରୁ ମଧ ଶିକ୍ଷା ପାଇଛି।''

ବୃକ୍ଷ ଓ ପର୍ବତ ଗୁଡ଼ିକଠାରୁ ଆପଣ କି ପ୍ରକାର ଶିକ୍ଷା ଲାଭକଲେ ବୋଲି ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତରରେ ଅବଧୂତ କହିଲେ— ''ବୃକ୍ଷ ଓ ପର୍ବତଠାରୁ ମୁଁ ପରୋପକାର କରିବା ଶିକ୍ଷା ଲାଭ କଲି। ବୃକ୍ଷ ଏକସ୍ଥାନରେ ରହି ଖରା, ବର୍ଷା, ପାଣି ପବନର ଦୌରାତ୍ମ୍ୟ ସହି ଅନ୍ୟକୁ ଯଥାଶକ୍ତି ରକ୍ଷା କରେ। ବୃକ୍ଷ କାହାକୁ ନିରାଶ କରେନାହିଁ। ପତ୍ର, ପୁଷ୍ପ, ଫଳ ଓ କାଷ୍ଠ ମଧ୍ୟରେ ଯେ ଯାହା ପ୍ରାର୍ଥନା କରେ ବୃକ୍ଷ ତାହା ଅକାତରେ ଦାନ କରେ। ଦୈହିକ ଓ ମାନବିକ ଅତ୍ୟାଚାର ସହି ମଧ ବୃକ୍ଷ କେବଳ ପରୋପକାର ସମ୍ପାଦନ କରିଥାଏ। ବୃକ୍ଷର ପତ୍ର ଔଷଧ, ଦେବପୂଜା, କେତେକ ପଶୁଙ୍କ ଖାଦ୍ୟ, ଇନ୍ଧନ, କାଗଜ, ସାର ଆଦି ବହୁ ଉପାଦେୟ କାର୍ଯ୍ୟରେ ବ୍ୟବହୃତ ହୁଏ। ସେହିପରି ଫୁଲରେ ମାଳା, ଔଷଧ, ଶାଗ, ଶୁଷ୍କଖାଦ୍ୟ, ସୁଗନ୍ଧତୈଳ ଆଦି ପ୍ରସ୍ତୁତ ହେଉଛି। ବୃକ୍ଷର ଫଳ ପ୍ରାଣୀମାନଙ୍କୁ ଜୀବନଦାନ କରେ। ପଶୁ, ପକ୍ଷୀ, ମୁନି ଋଷିଗଣ ଫଳଦ୍ୱାରା ଜୀବନ ଧାରଣ କରନ୍ତି। ତେଣୁ ବୃକ୍ଷର ପତ୍ର, ପୁଷ୍ପ, ଫଳାଦି ଉପାଦାନଗୁଡ଼ିକ ପ୍ରାଣୀଜଗତର ମହତ ଉପକାର ସାଧନ କରନ୍ତି। ବୃକ୍ଷ ନିଜର ବୀଜଦ୍ୱାରା ବଂଶବୃଦ୍ଧି କରେ, ଏବଂ ତା'ର ବଂଶଜଗଣ ପରୋପକାର ଦୀକ୍ଷା ନେଇ ଉତ୍ପନ୍ନ ହୁଅନ୍ତି। ପରର କଲ୍ୟାଣ ହିଁ ବୃକ୍ଷ ଲତା ଇତ୍ୟାଦିଙ୍କ ଜୀବନର ପରମବ୍ରତ।''

''ବୃକ୍ଷ ଖରା ବର୍ଷାରେ ସମସ୍ତଙ୍କୁ ଆଶ୍ରୟଦାନ କରେ। ତା'ର ମୂଳ ଖାଦ୍ୟ ଓ ଔଷଧରୂପେ ବ୍ୟବହାର କରାଯାଏ। ତା'ର ବଲ୍କଳ, ବସ୍ତ୍ର ଓ ଲିଖନ ସାମଗ୍ରୀରୂପେ ଏବଂ ମନ୍ତ୍ର, ଯନ୍ତ୍ର ଓ ତନ୍ତ୍ରରେ ଆବଶ୍ୟକ ହୁଏ। ବୃକ୍ଷର କାଷ୍ଠ ଗୃହୋପକରଣ ଓ ଅନ୍ୟାନ୍ୟ ବ୍ୟବହାରୀୟ ସାମଗ୍ରୀ ପସ୍ତୁତି ସହିତ ବ୍ୟକ୍ତିର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ସମସ୍ତ କାର୍ଯ୍ୟରେ ଦରକାର ହୁଏ। ଚନ୍ଦନାଦି ବୃକ୍ଷ ବହୁ କଠିନ ରୋଗରୁ ଜୀବଜଗତକୁ ନିରୋଗ , ସୁସ୍ଥ ଓ ସୁନ୍ଦର କରି ରଖେ। ବୃକ୍ଷ ଉପରେ ଜନ୍ମ ଗ୍ରହଣ କରୁଥିବା କେତେକ ପ୍ରକାର ଉଦ୍ଭିଦ ଓ ବୃକ୍ଷର ରସ ମାନବର ଯେତେ ଯେତେ ଉପକାର କରେ ତାହାର ତୁଳନା ନାହିଁ। ଏହିସବୁ ଦୃଷ୍ଟିରୁ

ବୃକ୍ଷ ନିଜର ପ୍ରତ୍ୟେକ ଉପାଦାନ ଦ୍ୱାରା ଅକାତରଭାବେ ଯେପରି ପରର ଉପକାର କରିଚାଲିଛି ସେହିପରି ସାଧୁପୁରୁଷ ନିଜର ସମସ୍ତ ପ୍ରକାର ଚେଷ୍ଟାଦ୍ୱାରା ପରୋପକାର କରିବା ଉଚିତ।''

ପର୍ବତର ଉପକାର ସମ୍ବନ୍ଧରେ ଯଦୁ ମହାରାଜଙ୍କ ପ୍ରଶ୍ନର ଉତ୍ତର ଦେଇ ଅବଧୂତ କହିଲେ— ''ବୃକ୍ଷ ଭଳି ପର୍ବତ ମଧ୍ୟ ଜୀବଜଗତର ଯଥେଚ୍ଛାଚାରକୁ ସହି ତା'ରି କାର୍ଯ୍ୟ କରିଚାଲେ। ପାଷାଣ ଖଣ୍ଡକୁ ଲୋକ କାଟି କାଟି ନିଜର ଇଚ୍ଛା ଅନୁସାରେ ମୂର୍ତ୍ତି ମନ୍ଦିର ଓ ପ୍ରାସାଦ ଗଢ଼େ। ପର୍ବତର ଗୁହା ସମସ୍ତଙ୍କୁ ଆଶ୍ରୟ ଦିଏ। ପର୍ବତରୁ ବାହାରିଥିବା ଝରଣା ସମସ୍ତଙ୍କ ଜୀବନ ରକ୍ଷା କରେ। ପାଷାଣରୁ ଜନ୍ମ ଶିଳାଜୀତ ଆଦି ମାନବଙ୍କୁ ଆୟୁ ବଳ ଓ ଆରୋଗ୍ୟ ଦାନ କରେ। ସର୍ବସଂହା ପୃଥିବୀରୁ ଜାତ ପର୍ବତ ଓ ବୃକ୍ଷଲତା ନିରନ୍ତର ପରୋପକାର କରି ଚାଲିଛନ୍ତି। ତେଣୁ ପୃଥିବୀଠାରୁ ମୁଁ ଧୈର୍ଯ୍ୟ ଓ ପରୋପକାର ରୂପ ଦୁଇଟି ଉପାଦେୟ ତତ୍ତ୍ୱ ଶିକ୍ଷା କଲି।''

ମହର୍ଷିସୂତ କହିଲେ— ''ମହାରାଜ ! ଯଦୁ ପୃଥିବୀଗୁରୁଙ୍କ ପ୍ରଦତ୍ତ ଶିକ୍ଷା ବିଷୟ ଜାଣିବା ପରେ, ଅବଧୂତଙ୍କୁ ଗୁରୁ ବାୟୁଦେବଙ୍କଠାରୁ କି ଶିକ୍ଷା ଲାଭ କଲେ ବୋଲି ପ୍ରଶ୍ନ କରିଥିଲେ। ହେ ମୁନିଗଣ ! ଅବଧୂତ ରାଜା ଯଦୁଙ୍କୁ ଯେଉଁ ଉତ୍ତର ଦେଇଥିଲେ ତାହା କହୁଛି, ଆପଣମାନେ ପ୍ରକୃତିସ୍ଥ ହୋଇ ଶୁଣନ୍ତୁ।''

**ଛପ୍ପୟ**

ପର କାରଜମହିଁ ନିରତ ରହୈ ସବ ଅଁଗ ତୈ ନଗ ଗିରି।
ପତ୍ର, ପୁଷ୍ପ, ଫଲ, ମୂଲ, କାଷ୍ଠ, ବଲକଲ, ଛାୟା କରି॥
ଦେହିଁ ସବନି ବିଶ୍ରାମ କରେ ନିଜ ଜୀବନ ଅରପିତ।
ଆଶ୍ରୟ, ଜଲ ଆହାର, ଦାନ କରି ହୋବେ ପ୍ରମୁଦିତ॥
ନିତ ପ୍ରତି ପର ଉପକାର କୀ, ଶିକ୍ଷା ଗିରି ବୃକ୍ଷନି ଦଈ।
କହୁଁ ତାହି ଜୋ ବାୟୁଜୀ, ଗୁରୁ ବନାଇ ଶିକ୍ଷା ଲଈ॥



# ମୋ' ଶିକ୍ଷାଗୁରୁ ବାୟୁଦେବ

**ପ୍ରାଣବୃତ୍ତ୍ୟୈବ ସନ୍ତୁଷ୍ୟେନ୍ମୁନିର୍ନୈବେନ୍ଦ୍ରିୟପ୍ରିୟୈଃ ।**
**ଜ୍ଞାନଂ ଯଥା ନ ନଶ୍ୟେତ ନାବକୀର୍ୟେତ ବାଙ୍ମନଃ ।। ★**

[ଶ୍ରୀଭା.୧୧ସ୍କ, ୭ଅ, ୩୯ଶ୍ଳୋକ]

### ଛପ୍‌ପୟ

କେବଲ କରି ଆହାର ପ୍ରାନ ସନ୍ତୁଷ୍ଟ ରହେ ନିତ।
ହୈ ସୁନ୍ଦର ରସଯୁକ୍ତ ପଦାରଥ ନହିଁ ଦେବେ ଚିତ।।
ପ୍ରାନବାୟୁ ତେ ଲୀନୀ ମୈନେ ସଂଯମ ଶିକ୍ଷା।
ମିଲେ ଭାଗ୍ୟବଶ ରୂଖୀ ସୂଖୀ ଜୈସୀ ଭିକ୍ଷା।।
ତାକୂଁ ପାବୈ ପ୍ରେମ ତେ, ପ୍ରାନମାତ୍ର ଧାରନ କରୈ।
କବହୂଁ ନ ରସନା-ସ୍ୱାଦ କେ, ଚକ୍କର ମହଁ ଯୋଗୀ ପରୈ।।

ମନ ହେଉଛି ଏକ ପାଗଲା ହାତୀ। ତାକୁ ବଶ କରି ଆୟତ୍ତରେ ରଖିବାପାଇଁ ସଂଯମ ରୂପକ ଅଙ୍କୁଶ ଆବଶ୍ୟକ। ସଂଯମ ବିନା ଏ ସଂସାର ସାଗରକୁ ପାର ହେବା ଅସମ୍ଭବ। ଅସଂଯମ ଜୀବନ ନାଉରୀହୀନ ନଉକା ସହିତ ସମାନ। ସଂସାରର ପ୍ରତ୍ୟେକ ବସ୍ତୁ ଆମକୁ ସବୁବେଳେ ଆକର୍ଷଣ କରୁଛି। ସମସ୍ତେ ଆମକୁ ତାଙ୍କ ସହିତ ମିଶିବାପାଇଁ ଚାହାନ୍ତି। ସେହି ଆକର୍ଷଣରୁ ଯେ ମୁକ୍ତ ହେବାକୁ ଇଚ୍ଛା କରୁଛି, ଲୋକେ ତାହାରି ବିଷୟରେ ଅଧିକରୁ ଅଧିକ ବ୍ୟସ୍ତ ହେଉଛନ୍ତି। ହୋଲି ଖେଳାଳୀମାନେ ନିଜ ଦଳର ଲୋକଙ୍କ ଉପରେ ରଙ୍ଗ ପକାନ୍ତି ନାହିଁ। ଯିଏ ସେମାନଙ୍କ ସହିତ ଯୋଗ ନ ଦିଏ, ଯିଏ ଲୁଚେ, ସେମାନେ ତାକୁ ଖୋଜନ୍ତି, ତାଙ୍କ ଉପରେ ରଙ୍ଗ ପକାଇଥାନ୍ତି। ଆଉ ତାକୁ ନିଜ ଦଳର ଲୋକଙ୍କ ଭଳି ରଙ୍ଗିଲା କରିଦିଅନ୍ତି। ଏହାପରେ ତାକୁ ଛାଡ଼ି ଦିଅନ୍ତି। ଯିଏ ତାଙ୍କ ସହିତ ମିଶିଯାଏ ସେ ସେମାନଙ୍କ ସହିତ ଏକାକାର ହୋଇଯାଏ। ଚୋର ଚୋର ମଧ୍ୟରେ ମାଉସୀପୁଅ ଭାଇ ସମ୍ବନ୍ଧ ହେଲା ଭଳି ସାଧୁ ସାଧୁ ମଧ୍ୟରେ ସମ୍ପର୍କ ସହଜରେ ସ୍ଥାପିତ ହୋଇଯାଏ। ଏହାଦ୍ୱାରା 'ତୁ ତ ମୃତୁରୀ ମୁ ତ ମୃତୁରୀ, ହେଁସ କାହିଁ ପାଇଁ ଧୋଇବା' ନ୍ୟାୟରେ କେହି କାହାରି ଦୋଷାଦୋଷ ବାଛ ବିଚାର କରନ୍ତି

---

 କେବଳ ଦେହ ମାତ୍ର ଧରି । ଇନ୍ଦ୍ରିୟ ପ୍ରବଳ ନ କରି ।।
ଜ୍ଞାନ ଉଦ୍ଦେଶ୍ୟେ ଶୁଦ୍ଧମନ । ନ କରି ମାୟାଜଡ଼େ ଛନ୍ନ ।।
ନ ଘେନ ପର ଗୁଣ ଦୋଷ । ଇନ୍ଦ୍ରିୟ ଭୋଗ ସୁଖ ଲେଶ ।।
ଦେଖ ପବନ ଏ ଶରୀରେ । ବହଇ ଅନ୍ତର ବାହାରେ ।।
କାହାରି ସାଙ୍ଗେ ସଙ୍ଗ ନୋହେ । ସମେ ବସଇ ସର୍ବଦେହେ ।।
ଏ ରୂପେ ସର୍ବଦେହେ ଥାଇ । ଉଦାସି ଜନ ପ୍ରାୟ ହୋଇ ।।

[ଭାଗବତ : ଜଗନ୍ନାଥ ଦାସ ୧୧ସ୍କ.୮ଅ.]

ନାହିଁ। ଅନେକ ପଣ୍ଡିତ ସାଧାରଣଙ୍କ ମଧ୍ୟରେ ମିଶିଯାଆନ୍ତି, ହୋ ହୋ କରନ୍ତି, ଏବଂ ସେଠାରୁ ପୃଥକ୍ ହେବା ପରେ ନିଜସ୍ଥିତିକୁ ଫେରିଯାଆନ୍ତି। ସଂସାରରେ ଥିବା ଯାଏ ଜ୍ଞାନୀ ଲୋକ ପଦ୍ମପତ୍ରସ୍ଥ ଜଳ ଭଳି ନିର୍ଲିପ୍ତ ରହିଥାଆନ୍ତି।

ସୂତମୁନି କହିଲେ— ହେ ମୁନିଗଣ ! ଯଦୁଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ କହିଲେ— ''ରାଜନ୍ ! ବାୟୁ ହେଲେ ମୋର ଦ୍ୱିତୀୟ ଗୁରୁ। ବାୟୁ ଦୁଇ ପ୍ରକାର। ଏକ ଆଭ୍ୟନ୍ତରବାୟୁ ବା ପ୍ରାଣବାୟୁ, ଏବଂ ଦୁଇ, ବାହାରର ବାୟୁ ବା ସାଧାରଣ ବାୟୁ ଭାବେ ଅଭିହିତ। କ୍ଷୁଧା, ତୃଷା ସୃଷ୍ଟି ପ୍ରାଣବାୟୁର କାର୍ଯ୍ୟ ଏବଂ ଅନ୍ନ-ଜଳଦ୍ୱାରା ତାହା ପରିତୃପ୍ତ ହୁଏ। ଅନ୍ନଭାବେ ଖିରି, ପୁରି, ମହନଭୋଗ, ଲଡୁ ହେଉ ବା ଶୁଖିଲା ରୁଟି ହେଉ ସେଥିରେ ବାଛ ବିଚାର ନାହିଁ। ପ୍ରାଣବାୟୁର କେବଳ ଆହାର ଆବଶ୍ୟକ। ସେହିପରି ଜ୍ଞାନୀଲୋକ ପ୍ରାଣର ଆଧାରଭୂତ ଶରୀର ସୁରକ୍ଷାପାଇଁ କେବଳ ଆହାର ଇଚ୍ଛା କରେ। ଆହାରର ଭଲମନ୍ଦ, ଗୁଣାଗୁଣ, ପରିବେଷଣୀୟ ପାତ୍ରାପାତ୍ର ବିଷୟରେ ଜ୍ଞାନୀ ବ୍ୟକ୍ତି ଆଦୌ ବିଚାର କରନ୍ତି ନାହିଁ। କାରଣ ସେ ଜାଣନ୍ତି ଯେ କଣ୍ଠତଳକୁ ଯିବାମାତ୍ରେ ସମସ୍ତ ଖାଦ୍ୟର ଗତି ଏକପ୍ରକାର ହୋଇଥାଏ।''

ଖାଦ୍ୟର ଆବଶ୍ୟକତା ବିଷୟରେ ଯଦୁ ମହାରାଜଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ କହିଲେ— ''ଦେଖନ୍ତୁ ! ଏହି ଶରୀରର ସହାୟତାରେ ଆମେ ପରମାର୍ଥ ସାଧନ କରୁ। ଶରୀର ବିନା ସାଧନା ଅସମ୍ଭବ। ତେଣୁ ଆସକ୍ତି ବା ମୋହ ମମତାବଶତଃ ନୁହେଁ, କେବଳ ପରମାର୍ଥ ସାଧନଭୂତ ଶରୀରର ରକ୍ଷାପାଇଁ ଖାଦ୍ୟ ଆବଶ୍ୟକ, ଭୋଜନ ବିନା ଜ୍ଞାନ ନଷ୍ଟ ହୋଇଯାଏ। ତେଣୁ କହନ୍ତି— ଅନ୍ନ ବିହୁନେ ହଂସହାନି।

''ଗୋଟିଏ କାହାଣୀ ଅଛି। ଜଣେ ଋଷିଙ୍କର ଶିଷ୍ୟଟିଏ ଥାଏ। ସେ ଦିନେ ପଚାରିଲା— 'ଗୁରୁଦେବ ! ବ୍ରହ୍ମ କ'ଣ ?' ମୁନି ଉତ୍ତର ଦେଲେ, 'ଆଚ୍ଛା, ତୁମେ କିଛିଦିନ ଉପବାସ କର।' ଶିଷ୍ୟ ଜଣକ ଗୁରୁଙ୍କ ଉପଦେଶ ଅନୁସାରେ କିଛି ନ ଖାଇ ନିରାହାରରେ ରହିବା ଫଳରେ ତା'ର ସ୍ମୃତିଶକ୍ତି ଲୋପ ପାଇଲା। ଗୁରୁ ଯେତେବେଳେ ତାକୁ ବେଦମନ୍ତ୍ର ପଚାରିଲେ ସେ ଆଦୌ ସ୍ମରଣ କରିପାରିଲା ନାହିଁ। ପୁଣି ତାକୁ ଖାଇବାକୁ ଦିଆଗଲା। ଖାଇବା ପରେ ଶିଷ୍ୟର ଚେତନା ଜାଗ୍ରତ ହେଲା ଏବଂ ବେଦମନ୍ତ୍ର ସବୁ ତା'ର ମନେ ପଡ଼ିଗଲା। ସେତେବେଳେ ଋଷି କହିଲେ— 'ଅନ୍ନ ହେଉଛି ବ୍ରହ୍ମ।'

''ଏହା କହିବାର ଲକ୍ଷ୍ୟ ହେଉଛି ଯେ, ଅନ୍ନରୁ ମନର ସୃଷ୍ଟି। ମନ ସୁସ୍ଥ ରହିଲେ ଜ୍ଞାନ ବଢ଼େ। ଅଧିକ ପରିମାଣ ବା ଅହିତକର ଭୋଜନ ଦ୍ୱାରା ତମୋଗୁଣ ବୃଦ୍ଧିପାଏ। ତମୋଗୁଣର ଅଭିବୃଦ୍ଧି ଦ୍ୱାରା ଜ୍ଞାନ ଲୋପ ପାଇଥାଏ। ଏଣୁ ହିତଭୁକ୍, ମିତଭୁକ୍ ଓ ଋତୁଭୁକ୍ ହେବା ବାଞ୍ଛନୀୟ। କେବଳ କ୍ଷୁଧା ନିବୃତ୍ତି ହିଁ ଭୋଜନର ଲକ୍ଷ୍ୟ ହେବା ଉଚିତ୍। ଭୋଜନ ବିନା ମନ ଓ ବଚନର ବିକୃତି ଜାତ ହୁଏ। ସେହିପରି ଅଧିକ ଭୋଜନଦ୍ୱାରା ବସିବା ଉଠିବାରେ କଷ୍ଟ ହୁଏ। ତେଣୁ ଭୋଜନ ସେହି ପରମାଣରେ ହେବା ଉଚିତ, ଯାହାଦ୍ୱାରା ମନ ଓ ବଚନର ବିକୃତି ଜାତ ହେବନାହିଁ କି ଚଳପ୍ରଚଳ ହେବାରେ ଦୁଃଖ ଲାଗିବ ନାହିଁ। କିନ୍ତୁ ରସନାର ତୃପ୍ତି ଇଚ୍ଛା କେବେହେଲେ ପୂର୍ଣ୍ଣ ହୁଏ ନାହିଁ। କାରଣ ମିଠା ଖାଉଥିବାବେଳେ ଖଟା, ତା'ପରେ ଲୁଣିଆ, ତା'ପରେ ପିତା, ତା'ପରେ କଷା ଏପରି ନାନା ପ୍ରକାର ଇଚ୍ଛା ଜାତ ହୁଏ। ଏହାଦ୍ୱାରା ଇନ୍ଦ୍ରିୟଗଣ ପ୍ରିୟବସ୍ତୁର ଅନୁଗମନ କରନ୍ତି ଓ ପରମାର୍ଥ ପଥରୁ

ଓହରି ଯାଆନ୍ତି । ତେଣୁ ଭୋଜନ ବିଷୟରେ ସର୍ବଦା ସଂଯମ ରକ୍ଷା କରିବା ଉଚିତ । ଭୋଜନରେ ସଂଯମ ରକ୍ଷା କରିବାର ଶିକ୍ଷା ମୁଁ ପ୍ରାଣବାୟୁଠାରୁ ଲାଭ କଲି ।

''ବାହ୍ୟବାୟୁ ସର୍ବତ୍ର ବିଦ୍ୟମାନ । ବାୟୁ ସର୍ବଗାମୀ ହେଲେ ମଧ ସର୍ବଦା ନିର୍ଲିପ୍ତ ରହେ । ସେହିପରି ସନ୍ୟାସୀ ରାଜା, ଧନୀ, ନିର୍ଦ୍ଧନ, ପୁରୁଷ, ସ୍ତ୍ରୀ, ଶିକ୍ଷିତ, ଅଶିକ୍ଷିତ, ଦୁଷ୍ଟ ସମସ୍ତଙ୍କ ପାଖକୁ ଗମନ କରି ମଧ ସର୍ବତ୍ର ଓ ସର୍ବଦା ନିର୍ଲିପ୍ତ ରହନ୍ତି । ବାହ୍ୟ ବାୟୁ ସାଧାରଣତଃ ସୁଗନ୍ଧ ବା ଦୁର୍ଗନ୍ଧଯୁକ୍ତ ବୋଲି ମନେହୁଏ । କିନ୍ତୁ, ବାୟୁ ବାସ୍ତବରେ ଗନ୍ଧହୀନ । କିଛି ସମୟପାଇଁ ହୁଏତ ବାୟୁ ସୁଗନ୍ଧ ବା ଦୁର୍ଗନ୍ଧ ବହନ କରିଥାଏ, ମାତ୍ର ସେହି ଅବସ୍ଥାରେ ସେ ସବୁସମୟ ରହେ ନାହିଁ । ଯେପରି ଶବକୁ କିଛିଦୂର ପର୍ଯ୍ୟନ୍ତ କାନ୍ଧରେ ବହିନେଉଥିବା ଲୋକ କେବେହେଲେ ଶବ ପାଲଟିଯାଏନାହିଁ, ସେହିପରି ବାୟୁ ସୁଗନ୍ଧ ବା ଦୁର୍ଗନ୍ଧ ବହି ଆଣୁଥିଲେ ମଧ ତାହା ସୁଗନ୍ଧ ବାୟୁ ବା ଦୁର୍ଗନ୍ଧ ବାୟୁ ଭାବେ ଅଭିହିତ ହୁଏ ନାହିଁ । ଏହାଦ୍ୱାରା ବାୟୁର ଶୁଦ୍ଧତାରେ ମଧ କୌଣସି ପାର୍ଥକ୍ୟ ଅନୁଭୂତ ହୁଏ ନାହିଁ । ଗନ୍ଧ ହେଉଛି ପୃଥିବୀର ଧର୍ମ । ତେଣୁ ପୃଥିବୀକୁ ଗନ୍ଧବତୀ ବୋଲି କହନ୍ତି । ସ୍ପର୍ଶ ହେଉଛି ବାୟୁର ଧର୍ମ । ବାୟୁରେ ସୁଗନ୍ଧ ବା ଦୁର୍ଗନ୍ଧ, ଶୀତଳ ବା ଉଷ୍ଣତା ନ ଥିଲେ ବି ସୁଗନ୍ଧ, ଦୁର୍ଗନ୍ଧ, ଶୀତ ଓ ଉଷ୍ଣ କାରଣରୁ ବାୟୁର ସେହି ସେହି ଅବସ୍ଥା ଅନୁଭୂତ ହୁଏ । କିନ୍ତୁ ଏସବୁର ସଂପର୍କରେ ଆସୁଥିଲେ ମଧ ବାୟୁରେ କୌଣସି ପ୍ରକାର ସ୍ୱାଭାବିକ ବିକାର ଜାତ ହୁଏ ନାହିଁ ।

''ଆତ୍ମାଜ୍ଞାନୀ ବାୟୁ ଭଳି ଏହି ଶରୀରରେ ଅବସ୍ଥାନ କରେ । କାରଣ ଶରୀର ଅଶୁଦ୍ଧ, ଆତ୍ମା ଶୁଦ୍ଧ, ଶରୀର ନଶ୍ୱର ଆତ୍ମା ଅବିନେଶ୍ୱର, ଅଜର ଓ ଅମର । ଶରୀର ଅନିତ୍ୟ ଆତ୍ମା ନିତ୍ୟ । ସେହିପରି ବିଭିନ୍ନ ଗୁଣଯୁକ୍ତ ଏହି ଶରୀର ଭଳି ଜ୍ଞାନୀଲୋକ ବିଭିନ୍ନ ଗୁଣକୁ ଆଶ୍ରୟ କରିଥାଏ । କିନ୍ତୁ ସେଥିରେ ସେ କେବେହେଲେ ଲିପ୍ତ ହୁଏ, ନାହିଁ । ଶରୀର ଓ ଆତ୍ମାକୁ ଏକ ବୋଲି ଭାବିବା ଠିକ୍ ନୁହେଁ । କେହି ଆମର ନିନ୍ଦା କରୁଛି, କରୁ, କିନ୍ତୁ ଆତ୍ମାର ନିନ୍ଦା କରୁଥିଲେ ତାକୁ ମୂର୍ଖ କୁହାଯିବ । କାରଣ ଆତ୍ମା ହେଉଛି ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ । ତେଣୁ ଆତ୍ମାର ନିନ୍ଦା କରୁଥିବା ଲୋକ ନିଜର ନିନ୍ଦା କରୁଛି ବୋଲି ବୁଝିବାକୁ ହେବ । ସୂର୍ଯ୍ୟଙ୍କ ଉପରକୁ ଯେ ଟେକା ଫିଙ୍ଗିବ ତାହା ଫେରିଆସି ତାହାରି ମୁଣ୍ଡରେ ପଡ଼ିବ । ଶରୀରର ନିନ୍ଦାକଥା ବିଚାରକର । ଶରୀର ତ ସ୍ୱତଃ ନିନ୍ଦିତ ଅଟେ । ଝାଳ, ଚକ୍ଷୁ, ନାଶା ଓ କର୍ଣ୍ଣମଳ, ଦନ୍ତମଳ ଓ ଉଦରସ୍ଥ ମଳମୂତ୍ରଦ୍ୱାରା ଶରୀର ଏପରି ଘୃଣ୍ୟ ଓ ଅଶୁଦ୍ଧ ହୋଇଥାଏ ଯେ ତା'ର ନିନ୍ଦା କେହି କରୁଥିଲେ ସେଥିରେ ଆପତ୍ତି କରିବା ଅନାବଶ୍ୟକ । ଆତ୍ମଜ୍ଞାନୀ ଶରୀରକୁ ବଡ଼ ମନେକରେ ନାହିଁ । ଶରୀର ଜଡ଼ ଓ ଆତ୍ମା ଚୈତନ୍ୟରୂପ । ଯେଉଁମାନେ ଶରୀରକୁ ଆତ୍ମାବୋଲି ମନେକରନ୍ତି ସେମାନେ ଈର୍ଷା, କଳହ ଆଦିରେ ପଡ଼ିଯାଇ ବହୁ ଦୁଃଖ କଷ୍ଟ ଭୋଗର ସମ୍ମୁଖୀନ ହୁଅନ୍ତି । ସେମାନେ ବାରମ୍ବାର ଜନ୍ମଗ୍ରହଣ କରନ୍ତି ଓ ମରନ୍ତି । ଶରୀର ମଧରେ ଥାଇ ମଧ ତା'ଠାରୁ ଦୂରରେ ରହିବା, ଏବଂ ପ୍ରାଣରକ୍ଷା ନିମିତ୍ତ ନିୟମିତ ହିତକାରକ ଭୋଜନ କରିବା ଭଳି ଦୁଇଟି କଥା ମୁଁ ବାୟୁଠାରୁ ଶିକ୍ଷା କରିଛି । ଏହିପରି ବାୟୁ ହେଉଛି ମୋର ଦ୍ୱିତୀୟ ଗୁରୁଦେବ ।''

ରାଜା କହିଲେ– ''ହେ ବ୍ରହ୍ମନ୍ ! ପୃଥିବୀ ଓ ବାୟୁଠାରୁ ଲାଭ କରିଥିବା ଶିକ୍ଷା ପ୍ରସଙ୍ଗ ମୁଁ ଶୁଣିଲି । ଦୟାକରି ଏବେ କହନ୍ତୁ ଆପଣ ଆକାଶଠାରୁ କି ଶିକ୍ଷା ପାଇ ତାଙ୍କୁ ଗୁରୁଭାବେ ଗ୍ରହଣ କଲେ ।''

ସୂତ କହିଲେ– "ମୁନିଗଣ ! ମହାରାଜ ଯଦୁଙ୍କ ପ୍ରଶ୍ନର ଉତ୍ତରଦେବାକୁ ଯାଇ ଅବଧୂତ ଦତ୍ତାତ୍ରେୟ ଯାହା କହିଥିଲେ ତାହା ଏହାପରେ ବର୍ଣ୍ଣନା କରିବି।"

ଛପ୍ପୟ

ଗନ୍ଧ ବହନ ନିତ କରେ ରହେ ନିରଲେପ ଅନିଲ ହୂ।
ପରସ ନ ତାକୁଁ କରେ ଗନ୍ଧ ଦୁରଗନ୍ଧ ତନିକ ହୂ॥
ୟୋ ହୀ ୟୋଗୀ ରହୈ ବିରତ ବିଷୟନିତେ ନିତ ନିତ।
ତନକେ ଆଶ୍ରୟ ରହେ ଦେହି ନହିଁ ତିନକେ ଗୁନ ଚିତ॥
ହୋହି ଗନ୍ଧମହଁ ଲିପ୍ତ ନହିଁ, ଅନିଲ ସର୍ବଗାମୀ ସତତ।
ଶିକ୍ଷା ଲଈ ଅସଂଗ କୀ, ବିଜ୍ଞ ବାୟୁବତ ନିତ ବିଂରତ॥



# ମୋର ଶିକ୍ଷାଗୁରୁ ଆକାଶ

ଅନ୍ତର୍ହିତଶ୍ଚ ସ୍ଥିରଜଙ୍ଗମେଷୁ
ବ୍ରହ୍ମାତ୍ମଭାବେନ ସମନ୍ୱୟେନ।
ବ୍ୟାପ୍ତ୍ୟାବ୍ୟବଚ୍ଛେଦମସଙ୍ଗମାତ୍ମନୋ
ମୁନିର୍ନଭସ୍ତ୍ୱ ବିତତସ୍ୟ ଭାବୟେତ୍॥ ★

[ଶ୍ରୀଭା.୧୧ସ୍କ, ୭ଅ, ୪୨ଶ୍ଳୋକ]

ଛପ୍ପୟ

କରିକେ ଗୁରୁ ଆକାଶ ଲଈ ଜୋ ଶିକ୍ଷା ଭୂପତି।
କହୁଁ ତାହି ଅବ ସୁନହୁ ଆତମା ହୈ ଅସଙ୍ଗ ଅତି॥
ବ୍ୟାପ୍ତ ଚରାଚର ମାହିଁ ସର୍ବଗତ ଅନଗଢ଼-ସବକେ।
ସୂତ୍ର ବ୍ୟପ୍ତ ସ୍ରକ୍ ମାଁହ ରହେ ମନିକା ବଶ ତିନକେ॥
ସୀଖୀ ଅପରିଚ୍ଛିନ୍ନତା, ଆତ୍ମା ଦେହ ଅସଂଗତା।
ଇନ ଭୂତନି ତେ ଆତମା, କୀ ହୋବେ ନହିଁ ଏକତା॥

---



| | | | |
|---|---|---|---|
| ଆକାଶ ପ୍ରାୟ ସର୍ବଠାରେ | । | ବ୍ୟାପିଛି ଆତ୍ମା ନିର୍ବିକାରେ | ॥ |
| ଦେହରେ ଥାଇ ସଙ୍ଗ ନୋହେ | । | ଘଟ ଆକାଶ ପ୍ରାଣ ରହେ | ॥ |
| ମେଘ ଯେ ଶୂନ୍ୟେ ଜନ୍ମ ହୋଇ | । | ଶରୀରେ ଆକାଶ ଢାଙ୍କଇ | ॥ |
| ଭୂମି ଲୋକଙ୍କୁ ଛାୟା ଦିଶେ | । | ସେ ଯେହ୍ନେ ଆକାଶେ ନ ମିଶେ | ॥ |
| ଏଣୁ ଆକାଶେ ଗୁରୁ କରି | । | ଅବନୀ ମଧ୍ୟେ ଦେହ ଧରି | ॥ |
| ଆନନ୍ଦେ ଭ୍ରମଇ ସଂସାରେ | । | ସ୍ୱରଶ ନ କରି କାହରେ | ॥ |

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ ୮ମ ଅ.]

ଅନାଦିକାଳରୁ କାଳ, କର୍ମ ଓ ସ୍ୱଭାବ ଅନୁସାରେ ସୃଷ୍ଟିର ପ୍ରବାହ ପ୍ରବାହିତ ହେଉଛି। ସଂସାରର ଯାବତୀୟ ଭୌତିକ ପଦାର୍ଥ ପ୍ରାକୃତ ଓ କାଳର ଅଧୀନ। ସମୟର ଗତି ଅନୁସାରେ ଅବ୍ୟକ୍ତ ବ୍ୟକ୍ତ ହୁଏ ଓ ବ୍ୟକ୍ତ ଅବ୍ୟକ୍ତ ହୁଏ। କର୍ମ କରିବା ପ୍ରାଣୀମାନଙ୍କ ସ୍ୱାଭାବିକ ଧର୍ମ। କେହି କର୍ମ ନ କରି କ୍ଷଣେ ମାତ୍ର ରହିପାରିବ ନାହିଁ। ସ୍ୱଭାବ ଓ ପ୍ରକୃତିବଶତଃ ପ୍ରତ୍ୟେକ ବ୍ୟକ୍ତି ହେବାକୁ ଆଗ୍ରହୀ। କର୍ମ ପ୍ରତି ଆସକ୍ତି ଜନ୍ମ ଓ ମରଣର ମୂଳ କାରଣ। କିନ୍ତୁ ଆତ୍ମା କେବେହେଲେ ଦେଶ, କାଳ ଓ କର୍ମର ସୀମାମଧ୍ୟରେ ଆବଦ୍ଧ ନୁହେଁ। ଆତ୍ମାକୁ ନିତ୍ୟ, ଶୁଦ୍ଧ ଓ ଅସଙ୍ଗ ବୋଲି ଯେ ଜାଣେ, ସେ ଜନ୍ମ ମରଣ ରୂପ ଆବର୍ତ୍ତନରୁ ମୁକ୍ତି ପାଏ।

ମହର୍ଷି ସୂତ କଥା ପ୍ରସଙ୍ଗର ଅବତାରଣା କରି କହୁଛନ୍ତି, ହେ ମୁନିଗଣ ! ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତର ଦେଇ ଅବଧୂତ ଦତ୍ତାତ୍ରେୟ କହିବାକୁ ଲାଗିଲେ, 'ହେ ରାଜନ୍! ଦେଖନ୍ତୁ, ଆପଣ ଏପରି କୌଣସି ସ୍ଥାନ ପାଇବେ ନାହିଁ ଯେଉଁଠି ଆକାଶର ଅବସ୍ଥିତି ନାହିଁ। ତେଣୁ ଆକାଶ ସର୍ବତ୍ର ବିଦ୍ୟମାନ।''

ରାଜା ପଚାରିଲେ, ''ଭଗବନ୍ ! ଆମର ଉପରିଭାଗରେ ଦେଖାଯାଉଥିବା ନୀଳ ଆବରଣଟି ଆକାଶ କି ? ଏହା ଆକାରରେ ଏକ କରେଇ ଭଳି ଦେଖାଯାଉଛି କିପରି ?''

ହସି ହସି ଅବଧୂତ କହିଲେ, ''ରାଜନ୍! ଏହା ଆକାଶ ନୁହେଁ। ଏହା ବାଷ୍ପ ଓ ଧୂମରେ ନିର୍ମିତ ଭାସମାନ ମେଘ। ଆକାଶର କୌଣସି ରୂପ, ରଙ୍ଗ ବା ଆକୃତି ନାହିଁ। ଅବକାଶର ନାମ ଆକାଶ। ଆମର ପାଦ ପୃଥିବୀ ପରେ ଓ ପୂରା ଶରୀର ଆକାଶରେ। କଳସୀର ଚାରିପାଖରେ ମାଟି ଆଉ ତା' ଭିତରେ ଆକାଶ। ଏହାକୁ ଘଟାକାଶ କହନ୍ତି। ମଠର ଚାରିପାଖରେ କାନ୍ଥ, ଉପରେ ଛାତ ଏବଂ ମଧ୍ୟସ୍ଥ ଆକାଶକୁ ମଠାକାଶ କହନ୍ତି। ସେହିପରି ଦେହର ଚାରିଆଡ଼େ ଅଙ୍ଗ-ପ୍ରତ୍ୟେଙ୍ଗରେ ଆବୃତ ଓ ଅଭ୍ୟନ୍ତରସ୍ଥ ଆକାଶକୁ ଶରୀରାକାଶ କହନ୍ତି। ଏ ସମସ୍ତ ବସ୍ତୁର ନାମ ଅନୁସାରେ ନାମିତ। ଘଟର ଭିତରେ ଓ ବାହାରେ ଯେପରି ଆକାଶ ରହିଛି, ଅଣୁ, ପରମାଣୁରେ ମଧ୍ୟ ସେହିପରି ଆକାଶ ପରିବ୍ୟାପ୍ତ ଅଛି। ତେଣୁ ସ୍ଥାବର ଜଂଗମ ସର୍ବତ୍ର ଆକାଶ ବିଦ୍ୟମାନ। ଆକାଶରେ ନିରନ୍ତର ଭ୍ରମଣରତ ଜଳକଣା ଆକାଶ-ଗଙ୍ଗା ନାମରେ ଅଭିହିତ। ସେହି ଜଳକଣାରୁ ତୁଷାର, ବରଫ, ଜଳ ସୃଷ୍ଟି ହୁଏ। ସମଗ୍ର ଜୀବ-ଜଗତ ଏହାଦ୍ୱାରା ପରିପୁଷ୍ଟ ହୁଅନ୍ତି।''

''ସେହି ଆକାଶରେ ଆଲୋକରଶ୍ମି ପରିବ୍ୟାପ୍ତ ରହିଛି। ସେଥିରୁ ବିଦ୍ୟୁତ୍‌ର ଜନ୍ମ। ଆକାଶରେ ଏଭଳି କୌଣସି ସ୍ଥାନ ନାହିଁ, ଯେଉଁଠି ତେଜର କିରଣ ନାହିଁ। ଆକାଶ ବିନା ଅନ୍ନମୟ ପଦାର୍ଥ ସମୂହର କଳ୍ପନା କରାଯାଇ ନ ପାରେ। **ଆକାଶରେ ସର୍ବତ୍ର ବାୟୁ ବିଦ୍ୟମାନ। ତେଣୁ ପୃଥ୍ୱୀ, ଜଳ, ତେଜ ଓ ବାୟୁ ଆକାଶରେ ହିଁ ଅବସ୍ଥିତ।** ବାୟୁଦ୍ୱାରା ପ୍ରେରିତ ହୋଇ ମେଘମାଳା ଆକାଶରେ ଉଡ଼ି ବୁଲନ୍ତି। ଏହାଦ୍ୱାରା ଆକାଶ ଅପରିଚ୍ଛିନ୍ନ ରହେ। ସେହିପରି ସ୍ୱର୍ଗକାମନାରେ ଯଜ୍ଞ କରୁଥିବା ବ୍ରାହ୍ମଣ, ଯୋଦ୍ଧା, କ୍ଷତ୍ରିୟ, ମିଛସତ କହି ବେପାର କରୁଥିବା ବୈଶ୍ୟ, ସେବା କରୁଥିବା ଶୂଦ୍ର, ପାପକାର୍ଯ୍ୟଦ୍ୱାରା ଜୀବିକା ଅର୍ଜନ କରୁଥିବା ହିଂସୁକ, ବିଚାରର ହିତରେ ମନକୁ ଆକର୍ଷଣ କରୁଥିବା ସ୍ତ୍ରୀଲୋକ, ସରଳ ବାଳକ ଓ ମଦମତ୍ତ ଯୁବକମାନଙ୍କ ମଧ୍ୟରେ ଯୋଗୀ ଅବସ୍ଥାନ କରିଥାଏ। କିନ୍ତୁ ଆକାଶ ଭଳି ଯୋଗୀ ସର୍ବଦା ନିର୍ଲିପ୍ତ ରହେ। ଯୋଗୀ ଶରୀର ଅପେକ୍ଷା ଆତ୍ମାର ସ୍ୱରୂପକୁ ହିଁ ଅନୁଭବ କରେ।

''ସଂସାରରେ ଦେହର ସଂଖ୍ୟା ଅସଂଖ୍ୟ। ଦେହ ଆତ୍ମାର ଗୃହ ସଦୃଶ। ତେବେ ଯେତେ ଦେହ ସେତେ ଆତ୍ମା ଅଛି କି?'' ରାଜାଙ୍କ ଏପରି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ କହିଲେ, ''ରାଜନ୍! ଆତ୍ମା ହେଉଛି ଅଦ୍ୱିତୀୟ। ଆକାଶ ପରି ସର୍ବବ୍ୟାପକ। ଘଟ ମଧ୍ୟସ୍ଥ ଆକାଶ ମହାକାଶଠାରୁ ପୃଥକ୍ ନୁହେଁ। କିନ୍ତୁ ଘଟର ସୀମା ମଧ୍ୟରେ ଥିବା ପର୍ଯ୍ୟନ୍ତ ତାହା ଘଟାକାଶ ରୂପେ ଅଭିହିତ; ମାତ୍ର ଘଟ ଭାଙ୍ଗିଗଲେ ତାହା ପୁଣି ମହାକାଶ ଉପାଧି ଧାରଣ କରେ। ସେହିପରି ପରମାତ୍ମା ବା ବ୍ରହ୍ମ ସମସ୍ତ ସ୍ଥାବର ଜଙ୍ଗମ ମଧ୍ୟରେ ନିର୍ଲିପ୍ତ ଭାବେ ଥାଏ। ଆତ୍ମା ସର୍ବଗତ ଓ ସର୍ବବ୍ୟାପକ। ସମସ୍ତେ ଆତ୍ମା ମଧ୍ୟରେ ଅବସ୍ଥାନ କରନ୍ତି। ତେଣୁ ଆତ୍ମା ଅବିଚ୍ଛିନ୍ନ। ଆକାଶଠାରୁ ପ୍ରଥମେ ମୁଁ ଆତ୍ମାର ବ୍ୟାପକତା ବିଷୟ ଶିକ୍ଷାଲାଭ କଲି।

''ଦ୍ୱିତୀୟରେ ଦେଖିଲି, ଆକାଶ ସବୁମଧ୍ୟରେ ରହି ମଧ୍ୟ ଆଶ୍ରିତାଧାର ପ୍ରତି ଅନାସକ୍ତ ରହିଛି। ତେଣୁ ଯୋଗୀ ଆକାଶଭଳି ଆତ୍ମାର ଅନାସକ୍ତ ଓ ବ୍ୟାପକରୂପର ଭାବନା କରିବା ଉଚିତ। ମଣିମାଳାରେ ଗ୍ରଥିତ ସୂତ୍ର ମାଳାର ସମସ୍ତ ମଣିକୁ ଭେଦ କରି ମଧ୍ୟ ତା'ଠାରୁ ପୃଥକ୍ ରହିବା ଭଳି। ଆତ୍ମା ଦେହସ୍ଥ ହୋଇଥିଲେ ମଧ୍ୟ, ଦେହର (ଦୁଃଖ-ସୁଖ), ହର୍ଷ, ଶୋକ ଆଦି ଗୁଣଠାରୁ ସ୍ୱତନ୍ତ୍ର ଥାଏ। ଅସଙ୍ଗତା ଓ ଅପରିଚ୍ଛିନ୍ନତା କଥା ଦୁଇଟି ମୁଁ ଶିକ୍ଷାକରି ଥିବାରୁ ମୁଁ ଆକାଶକୁ ଗୁରୁଭାବେ ଗ୍ରହଣ କରିଛି।''

ରାଜା କହିଲେ, ''ହେ ବ୍ରହ୍ମନ୍! ପୃଥିବୀ, ବାୟୁ ଓ ଆକାଶଠାରୁ ଆପଣ ଯେଉଁ ଶିକ୍ଷା ଲାଭ କରିଥିଲେ ତାହା ଆପଣ ମୋତେ କହିଲେ। ବର୍ତ୍ତମାନ ଜଳକୁ ଗୁରୁ କରି ଆପଣ କ'ଣ ଶିଖିଲେ ତାହା ଶୁଣିବାକୁ ମୋର ଇଚ୍ଛା ହେଉଛି।''

ମହର୍ଷି ସୂତ କହୁଛନ୍ତି, ''ମୁନିଗଣ! ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତରରେ ଅବଧୂତ ଯାହା କହିଥିଲେ ତାହା ମନଦେଇ ଶୁଣନ୍ତୁ।''

### ଛପ୍‌ପୟ

ତେଜ କିରଣ ଆକାଶ ମାଁହି ଚହୁଁ ଦିଶିତେ ଭ୍ରାଜେ।
ଜଳସାକର ନିତ ବ୍ୟାପ୍ତ ବାୟୁ ସର୍ବତ୍ର ବିରାଜେ॥
ପୃଥିବୀ ଜନିତ ପଦାର୍ଥ ରହେ ସବ ତା କେ ମାହିଁ।
ଭରେ ରହେ ନିତ ମେଘ ଲିପ୍ତ ନିଜ ମହିଁ ନଭ ନାହିଁ॥
ତୈସେ ମୁନି ନିତ ସମାହିତ, କରେ ଭାବନା ଗଗନମହିଁ।
ଆତ୍ମା ଶୁଦ୍ଧ ଅନାଦି ଅଜ, ଫସେ ନ ତାନହୁ ଗୁନନିମହିଁ॥



# ଜଳଠାରୁ ଶିକ୍ଷା

ସ୍ୱଚ୍ଛଃ ପ୍ରକୃତିତଃ ସ୍ନିଗ୍‌ଧୋ ମାଧୁର୍ଯ୍ୟସ୍ତୀର୍ଥଭୂର୍ନୃଣାମ୍ ।
ମୁନିଃ ପୁନାତ୍ୟପାଂ ମିତ୍ରମୀକ୍ଷୋପସ୍ପର୍ଶକୀର୍ତ୍ତନୈଃ ।।★

[ଶ୍ରୀଭା. ୧୧ସ୍କ, ୭ଅ, ୪୪ଶ୍ଳୋକ]

### ଛପ୍‌ପୟ

ଜଳ ଗୁରୁ ତେଁ ଗୁନ ତାର ରୂପ ସାଖେ ଅତି ସୁନ୍ଦର ।
ନିତ ସ୍ୱଭାବ ତେଁ ଶୁଦ୍ଧ ରହେଁ ମୁନି ବାହର ଭୀତର ।।
ସ୍ନେହ ଯୁକ୍ତ ବନି ସବନି ପ୍ରେମ ମହଁ ନିତ୍ୟ ନ୍ହବାବୈ ।
କହିକେ କଡ଼ବେ ବଚନ ଚିଭ ନହିଁ କବହୁଁ ଦୁଖାବୈ ।।
ତୀର୍ଥ ରୂପେ ସବକୁଁ ବନୈ, ସଦା ତୃପ୍ତ ସବ ସବକୁଁ କରୈ ।
ହସୈ ହସାବୈ ସରଲ ଚିତ, ଦୁଖିୟନି କେ ଦୁଖ କୁଁ ହରେ ।।

ନିସ୍ପୃହତାର ଅର୍ଥ ରୁକ୍ଷତା ନୁହେଁ । କିନ୍ତୁ, ପ୍ରକୃତ କଥା ହେଉଛି, ନିଷ୍ପୃହତା ବିନା ସରସତା ମିଳେ ନାହିଁ । ଯେଉଁ ସଂସାରୀଲୋକ ବିଷୟ ବାସନାରେ ବୃତ୍ତି ରହିଛି ଏବଂ ଧନକୁ ନିଜର ସର୍ବସ୍ୱ ଓ ଲକ୍ଷ୍ୟ ବୋଲି ମନେକରୁଛି, ତା'ଠାରେ ସରସତା ଆସିବ କୁଆଡୁ ? ବିଷୟାସକ୍ତ ପୁରୁଷ କେବେହେଲେ ପ୍ରେମ କରିପାରିବ ନାହିଁ । ନିଷ୍ପୃହଦ୍ୱାରା ହିଁ ପ୍ରେମ କରିବା ସମ୍ଭବ, କାରଣ ପ୍ରେମ ଅଲୌକିକ ଏବଂ ଲୌକିକ ଧନସଂପଦ ସହିତ ତା'ର କୌଣସି ସଂପର୍କ ନାହିଁ । ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କୁହନ୍ତି 'ଆମର କ'ଣ ଅଛି ! ଆମେ ଠିକ୍ କଥା କହିବୁ । କାହାକୁ ଭଲ ଲାଗିଲା କି ଖରାପ ଲାଗିଲା, ସେଥିରେ ଆମର ଯାଏ ଆସେ ନାହିଁ ।' ଏହା କିନ୍ତୁ ଠିକ୍ କଥା ନୁହେଁ । ଆମର କିଛି ନେବାର ନାହିଁ କି ଦେବାର ନାହିଁ— ଏହା ସତ୍ୟ, ହେଲେ, କାହାରି ମନରେ ଉଦ୍‌ବେଗ୍ ପହଞ୍ଚାଇବା ଠିକ୍ କଥା ନୁହେଁ । ବିନା କାରଣରେ କୌଣସି ଲୋକର ମନରେ କଷ୍ଟ ଦେବାଦ୍ୱାରା ନିଜର ପ୍ରେମ, ତ୍ୟାଗ ବା ବୈରାଗ୍ୟର ନୁହେଁ, ଦୋଷ ତଥା ତ୍ରୁଟିର ପରିଚୟ ମିଳେ ।

---

★ ଜଳ ଯେସନେ ସୁନିର୍ମଳ । ସ୍ୱଭାବେ ସ୍ନିଗ୍‌ଧ ସୁମଧୁର ।।
ମଧୁର ସୁରୁଚି ବଚନ । ଶୁଣି ହରଷ ସର୍ବଜନ ।।
ତୀର୍ଥର ପ୍ରାୟେ ଭବବନେ । ଭ୍ରମନ୍ତି ଜନ ପରିତ୍ରାଣେ ।।
ସ୍ନାହାନ ତର୍ପଣ ମାର୍ଜନେ । ପବିତ୍ର ହୋନ୍ତି ପ୍ରାଣୀମାନେ ।।
ଏ ଅନୁଭବେ ମୋର ଶିକ୍ଷା । ଜଳୁଁ ଶିଖିଲି ଗୁରୁଦୀକ୍ଷା ।।
ତୀର୍ଥର ପ୍ରାୟେ ଭବବଣେ । ଭ୍ରମନ୍ତି ଜନ ପରିତ୍ରାଣେ ।।

[ଭାଗବତ : ଜଗନ୍ନାଥ ଦାସ ୧୧ସ୍କନ୍ଧ ୮ମ ଅ.]

ସୂତ କହୁଛନ୍ତି ଅବଧୂତ ଦତ୍ତାତ୍ରେୟ ଜଳଠାରୁ ସ୍ୱଚ୍ଛତା, ସ୍ନେହ, ମଧୁର ଭାଷା ଓ ତୀର୍ଥ ରୂପତା ଭଳି ଚାରୋଟି କଥା ଶିକ୍ଷା କରିଥିଲେ। ରାଜା ଏହି ଚାରୋଟି ବିଷୟ ବିଶେଷ ଭାବେ ବୁଝିବା ନିମିତ୍ତ ଇଚ୍ଛା କରିବାରୁ ଅବଧୂତ କହିଲେ, ''ଦେଖନ୍ତୁ ଜଳ ସ୍ୱଭାବତଃ ସ୍ୱଚ୍ଛ ଜଳର ସ୍ୱଚ୍ଛତା ଭଳି ସାଧୁର ଅନ୍ତର ସର୍ବଦା ନିର୍ମଳ ରହିବା ଆବଶ୍ୟକ।''

ରାଜା କହିଲେ, ''ବ୍ରହ୍ମନ୍! ଆମ୍ଭେମାନେ ଜଳକୁ ଅନେକ ସମୟରେ ଆବିଳ କରିଥାଉ। ଅନେକ ସମୟରେ ଜଳ ମଧ୍ୟ ଦୁର୍ଗନ୍ଧଯୁକ୍ତ ହୋଇଥାଏ। ତେବେ ଜଳକୁ ଆପଣ ସାଧାରଣତଃ ସ୍ୱଚ୍ଛ ବୋଲି କିପରି କହୁଛନ୍ତି ?''

ଅବଧୂତ ବୁଝାଇଦେଲେ, ''ଜଳ ସ୍ୱଭାବତଃ ସ୍ୱଚ୍ଛ। ଜଳ କେବେହେଲେ ଅଶୁଦ୍ଧ ହୁଏନାହିଁ। ଆବିଳତା ଜଳର ସ୍ୱଭାବ ନୁହେଁ। ତାହା କେବଳ ପୃଥିବୀ ସହିତ ସଂପର୍କ ହେତୁ ଘଟିଥାଏ। କିନ୍ତୁ, ଆବିଳ ଜଳକୁ କୌଣସି ପାତ୍ରରେ ରଖିଦେଲେ ଆବିଳତା ତଳେ ବସିଯାଏ ଆଉ ଜଳ ସ୍ୱଚ୍ଛ ହୋଇଯାଏ। ସେହିପରି ଜଳରେ ଦୁର୍ଗନ୍ଧ ନାହିଁ କି ସୁଗନ୍ଧ ନାହିଁ। ଗନ୍ଧଗୁଣ ହେଉଛି ପୃଥିବୀର। ସେଥିପାଇଁ ଜଳରେ ସୁଗନ୍ଧ ବା ଦୁର୍ଗନ୍ଧ ଜାତ ହୁଏ। ଦୁର୍ଗନ୍ଧଯୁକ୍ତ ଜଳରୁ ପାର୍ଥିବ ଅଂଶସବୁ ବାହାର କରିଦେଲେ ଜଳ ସ୍ୱଚ୍ଛ ହୋଇଯାଏ। ଜଳ ଶୀତଳ ଆଉ ଶୀତଳତା ତା'ର ସ୍ୱାଭାବିକ ଧର୍ମ। ସେହିଭଳି ସାଧୁର ହୃଦୟ ସ୍ୱଚ୍ଛ ଓ ଶୀତଳ ହେବା ବାଞ୍ଛନୀୟ।

''ଅନେକ ସ୍ଥାନରେ ଗରମ ଜଳ ବାହାରିବାର ଦେଖାଯାଏ। ଲୋକେ ଗରମଜଳ ବ୍ୟବହାର କରୁଥିବାର ଦେଖାଯାଏ। କିନ୍ତୁ, ଜଳ କେବେହେଲେ ଉଷ୍ଣ ନୁହେଁ, ତା'ର ଉଷ୍ଣତା କ୍ଷଣିକ ସମ୍ପର୍କରୁ ଜାତ ହୁଏ। କିଛିକାଳ ତାକୁ ଅନ୍ୟତ୍ର ରଖିଦେଲେ ତାହା ନିଜ ପ୍ରକୃତିକୁ ଫେରିଆସେ, ଆଉ ଶୀତଳ ହୋଇଯାଏ। ଭୂଗର୍ଭରୁ ଯେଉଁଠି ଗରମ ଜଳ ବାହାରେ ତାହା ଗନ୍ଧକର ସଂସ୍ପର୍ଶ ହେତୁ ଘଟିଥାଏ। ସେଠାରୁ ଜଳକୁ ଅନ୍ୟଠାରେ ରଖିଲେ ତାହା ଶୀତଳ ହୋଇଯାଏ। ସାଧୁର ଅନ୍ତର ସର୍ବଦା ଏହିଭଳି ଥାଏ। କିନ୍ତୁ କୌଣସି ଉଦ୍ଧତ ପୁରୁଷର ଶାସନପାଇଁ ଓ ତାହାର ମଙ୍ଗଳପାଇଁ ସାଧୁ କ୍ୱଚିତ୍ ରୋଷ ପ୍ରକାଶ କରେ। ଏହାଦ୍ୱାରା ମନରେ ତା'ର କୌଣସି ବିକାର ଆସେନାହିଁ। ନିଜର ଜୀବନ ସଂଶୟ କାଳରେ ମଧ୍ୟ ସାଧୁ ସର୍ବଦା ଜଳଭଳି ସ୍ୱଚ୍ଛ ଓ ଶୀତଳ ହେବା ବାଞ୍ଛନୀୟ।

''ଦ୍ୱିତୀୟରେ ଜଳ, ସ୍ନେହଯୁକ୍ତ। ଜଳ ସର୍ବପ୍ରିୟ। ଜଳକୁ ପାଇ ସମସ୍ତେ ପ୍ରସନ୍ନ ହୁଅନ୍ତି। ଜଳର ସଂସର୍ଗରେ ଶୁଷ୍କ ସଜୀବ ଓ ସୁନ୍ଦର ହୁଏ। ସେହିପରି ମୁନିର ସଂସର୍ଗରେ ଶୁଷ୍କ ହୃଦୟର ଲୋକ ମଧ୍ୟ ଦ୍ରବିତ ହୋଇଯାଏ। ତାଙ୍କୁ ଦେଖିବା ମାତ୍ରେ ସବୁରି ହୃଦୟ ପୁଲକିତ ହୁଏ। ତୃତୀୟରେ, ଜଳ ସ୍ୱଭାବତଃ ମଧୁର। ଯୋଗୀ ସେହିପରି ସର୍ବଦା ମଧୁରଭାଷୀ ହେବା ଉଚିତ। ସମୁଦ୍ରଜଳ ଲୁଣିଆ ଲାଗେ। ଯେଉଁ ସ୍ଥାନର ଭୂମି ଲୁଣିଆ, ସେହି ଲୁଣ ମାଟି ସଂସର୍ଗରେ ଜଳ ଲୁଣିଆ ହୁଏ। ସମୁଦ୍ରଜଳ କ୍ଷେତ୍ରରେ ତାହା ହିଁ ଘଟିଥାଏ। ସ୍ୱଭାବତଃ ଜଳ ଲୁଣି ନୁହେଁ। ସମୁଦ୍ର ଜଳ ଲୁଣ ଅଂଶ ବାହାର କରିଦେଲେ ତାହା ସ୍ୱଚ୍ଛ ଓ ମଧୁର ହୋଇଯାଏ। ତେଣୁ ଜଳ ସ୍ୱଭାବତଃ ମଧୁର।

''ମିଠାଫଳ ସମ୍ପର୍କରେ ଆସିଲେ ଜଳ ଯେପରି ଅଧିକ ମଧୁର ହୁଏ, ଲୁଣ ମିଶାଇ ଦେଲେ ତାହା ଲୁଣିଆ ଲାଗେ। ଏହା ଜଳର ସଂସର୍ଗ ଜନିତ ପାର୍ଥିବ ଗୁଣ। ଜଳ ଅବିମିଶ୍ର ଅବସ୍ଥାରେ ମଧୁର ହୋଇଥାଏ।

"ବିନୟ ମଧୁର ବଚନ। କହି ତୋଷିବ ଜନ ମନ।। ମିଠା କଥା କହିବା ଏକ ବିଶେଷ ଗୁଣ। ଯେଉଁମାନଙ୍କର ହୃଦୟ ଦ୍ୱେଷପୂର୍ଣ୍ଣ, ସେମାନେ କଟୁଭାଷୀ ହୁଅନ୍ତି। ବିଦ୍ୱେଷ, ଅହଙ୍କାର ବା ଗର୍ବ ବିନା ଭାଷା କଠୋର ହୁଏ ନାହିଁ। ଯେଉଁ ପାତ୍ରରେ ଯେଉଁ ପ୍ରକାର ବସ୍ତୁ ରହିବ ସେ ପାତ୍ରରୁ ସେହି ପ୍ରକାର ବାଷ୍ପ ନିର୍ଗତ ହେବ। ମଣିଷର ପେଟରେ ଯେଉଁ ପ୍ରକାର ଖାଦ୍ୟ ପରିପାକ ହେଉଥିବ ସେହିଭଳି ହାକୁଟି ବାହାରିବ। ସେହିପରି ଯାହାର ଭିତର କଟୁତାରେ ପୂର୍ଣ୍ଣ, ସେହିଁ କଟୁ କଥା କହେ। ଯୋଗୀର ଅନ୍ତଃକରଣ ଶୁଦ୍ଧ ଥାଏ, ତେଣୁ ତା' ମୁଖରୁ କଟୁବଚନ ବାହାରେ ନାହିଁ। କଟୁ କଥା କହିବା ଏକ ବଡ଼ ଅପରାଧ। ବାଣର ଆଘାତ ପୂରିଯାଏ, କିନ୍ତୁ କଟୁକଥାର ଆଘାତ ସାରା ଜୀବନ ମନେ ରହିଯାଏ।"

ରାଜା ପଚାରିଲେ, "ବ୍ରହ୍ମନ୍! ପ୍ରେମରେ ମଧ୍ୟ କଟୁତା ପ୍ରକାଶ ପାଏ। ସ୍ନେହଶୀଳ ଲୋକ ପରସ୍ପର ମଧ୍ୟରେ କଟୁଭାଷା ବ୍ୟବହାର କରୁଥିବାର ଦେଖାଯାଏ।"

ଅବଧୂତ ହସି ହସି କହିଲେ, "ସ୍ନେହୀର ସେହ୍ନଜନିତ କଟୁତା ମିଶ୍ରିଠାରୁ ମଧ୍ୟ ଅଧିକ ମିଠାଲାଗେ। ଏହାଦ୍ୱାରା ପ୍ରେମଭାବନା ଉତ୍ତୋରତ୍ତର ବୃଦ୍ଧି ପାଇଥାଏ। ପ୍ରେମ ଏପରି ଏକ ଅନିର୍ବଚନୀୟ ବସ୍ତୁ ଯେ, ତାହାର ସମ୍ପର୍କରେ ଆସୁଥିବା ସମସ୍ତ ଦୋଷ ଗୁଣରେ ରୂପାନ୍ତରିତ ହୋଇଯାଏ। ପ୍ରେମ ଏକ ସ୍ପର୍ଶମଣି ସଦୃଶ, ଯାହାର ସ୍ପର୍ଶଦ୍ୱାରା ଅବିଗୁଣ ରୂପ ଲୁହା ସୁନା ପାଲଟିଯାଏ। ପ୍ରେମରୁ ମନର ସୃଷ୍ଟି, ମାନବଶତଃ ଯେଉଁ କଟୁ ବଚନ କୁହାଯାଏ ତାହା ପ୍ରେମକୁ ମଧୁରତର କରି ଗଢ଼ିତୋଳେ। ନିର୍ବେଦ, ବିଷାଦ, ଦୈନ୍ୟ, ଗ୍ଲାନି, ଶ୍ରମ, ମଦ, ଗର୍ବ, ଶଙ୍କା, ତ୍ରାସ, ଆବେଗ, ଉନ୍ମାଦ, ଅପସ୍ମାର, ବ୍ୟାଧି, ମୋହ, ସ୍ମୃତି, ଆଳସ୍ୟ, ଜଡ଼ତା, ବ୍ରୀଡ଼ା, ବିତର୍କ, ଚିନ୍ତା, ଉଗ୍ରତା, ଅମର୍ଷ, ଅସୂୟା ଓ ଚପଳତା ଆଦି ଦୋଷ ବୋଲି ଅଭିହିତ। କିନ୍ତୁ ପ୍ରେମ ସହିତ ଏଗୁଡ଼ିକର ସମ୍ବନ୍ଧ ଥିବାରୁ, ସେ ସମସ୍ତ ପ୍ରେମ ପରିପୋଷକ ବ୍ୟଭିଚାରୀ ଭାବଦ୍ୟୋତକ ହୋଇଥା'ନ୍ତି। ରସଶାସ୍ତ୍ରରେ ଏଗୁଡ଼ିକର ବିସ୍ତୃତ ବର୍ଣ୍ଣନା କରାଯାଇଛି। ଯୋଗୀର ହୃଦୟ ପ୍ରେମର ରସରେ ପରିପୂର୍ଣ୍ଣ। ଯୋଗୀ ଜଳଭଳି, ସ୍ୱଭାବତଃ ମଧୁରଭାଷୀ। କୌଣସି କାରଣରୁ କଟୁତା ସୃଷ୍ଟି ହେଲେ ମଧ୍ୟ ତାହା ଅଚିରେ ଅପସୃତ ହୋଇଯାଏ। ତେଣୁ, ଜଳଠାରୁ ମୁଁ ମଧୁରଭାଷୀ ହେବା ବିଷୟରେ ଶିକ୍ଷାଲାଭ କଲି।"

ଚତୁର୍ଥରେ, ଜଳଠାରୁ କି ପ୍ରକାର ଶିକ୍ଷା ଲାଭ କଲେ ବୋଲି ପଚାରିବାରୁ ଅବଧୂତ କହିଲେ, "ହେ ରାଜନ୍! ଜଳ ତୀର୍ଥ ନାମରେ ଅଭିହିତ। ଜଳ ସମସ୍ତଙ୍କୁ ପବିତ୍ର କରେ। ଆପଣଙ୍କର ଶୌଚ କାର୍ଯ୍ୟ, ବସ୍ତ୍ରର ସ୍ୱଚ୍ଛତା, ପାତ୍ରର ନିର୍ମଳତା ଜଳଦ୍ୱାରା ସମ୍ପାଦିତ ହୁଏ। ଶରୀରର ଯାବତୀୟ ଶୁଦ୍ଧି ଜଳଦ୍ୱାରା କରାଯାଏ। ଅଜ୍ଞାନତା ବଶତଃ କୃତ ପାପରୁ ମୁକ୍ତି ପାଇବା ନିମିତ୍ତ ଲୋକେ କାଶୀ, ପ୍ରୟାଗ, ପୁଷ୍କର, କୁରୁକ୍ଷେତ୍ର ଆଦି ତୀର୍ଥରେ ସ୍ନାନ କରି ଶୁଦ୍ଧ ହୁଅନ୍ତି। ତୀର୍ଥଜଳ, ଦର୍ଶନ, ସ୍ପର୍ଶନ ଓ ସ୍ନାନଦ୍ୱାରା ଯେପରି ସମସ୍ତଙ୍କୁ ପବିତ୍ର କରେ। ସେହିପରି ଯୋଗୀ ନିଜର ଦର୍ଶନ, ସ୍ପର୍ଶନ ଓ କୀର୍ତ୍ତନଦ୍ୱାରା ସବୁକିଛି ଶୁଦ୍ଧ ଓ ପବିତ୍ର କରିଥାଏ। ସେ ସମସ୍ତଙ୍କୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ନିରୀକ୍ଷଣ କରେ। ଯାହାର ଆଖିରେ ସରସତା ନାହିଁ କି ପ୍ରେମ ନାହିଁ, ତାକୁ ଦେଖିଲେ କାହାରି ମନରେ ଆନନ୍ଦ ଜାତ ହୁଏ ନାହିଁ। ସେହିପରି ଯାହାର ଆଖିରେ ଅନୁରାଗ ଫୁଟି ଉଠେ ତାକୁ ଦେଖି କାନ୍ଦୁଥିବା ଲୋକ ବି ହସିଦିଏ। ବିଶୁଦ୍ଧ ଅନ୍ତରର ଲୋକର ସ୍ପର୍ଶରେ ଦେହରେ ପୁଲକ ସୃଷ୍ଟି ହୋଇଥାଏ। ସାଧୁ ଲୋକ ଭଗବାନ୍‌ଙ୍କ ଗୁଣଗାନ୍ ଓ ନାମକୀର୍ତ୍ତନଦ୍ୱାରା ପ୍ରାଣୀଜଗତକୁ ପବିତ୍ର କରନ୍ତି। ଜଳଠାରୁ ମୁଁ ତୀର୍ଥ ସ୍ୱରୂପତା

ଶିକ୍ଷା କଲି । କାରଣ ସେହି ତୀର୍ଥରେ ତ୍ୟାଗୀ ଯୋଗୀ ପୁରୁଷଙ୍କର ଦର୍ଶନ, ସ୍ପର୍ଶନ ଓ ଗୁଣକୀର୍ତ୍ତନର ସୁଯୋଗ ମିଳେ । ଜଳ ଯେପରି ସମସ୍ତଙ୍କୁ ତୃପ୍ତି ଦିଏ ସେହିପରି ପରୋପକାରୀ, ଯୋଗୀମାନଙ୍କୁ ତୃପ୍ତ କରିବା ଉଚିତ୍ । ଏହି ସବୁ କାରଣରୁ ମୁଁ ଜଳଠାରୁ ସ୍ୱଚ୍ଛତା, ସ୍ନେହ, ମଧୁରଭାଷଣ ଓ ତୀର୍ଥଭାବ, ଏପରି ଚାରୋଟି କଥା ଶିକ୍ଷା କରିଛି ।''

ମହର୍ଷି ସୂତ ଶୌନକାଦି ମୁନିଗଣଙ୍କୁ କହୁଛନ୍ତି, ''ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ଅବଧୂତ ଅଗ୍ନିଙ୍କଠାରୁ ଯେଉଁ ଶିକ୍ଷା ଗ୍ରହଣ କରିଥିଲେ ତାହା ଏକାଗ୍ର ଚିତ୍ତରେ ସମସ୍ତେ ଶୁଣନ୍ତୁ ।''

### ଛପ୍‌ପୟ

ଦରଶନ ଦୈକେ କରୈ ସବନିକୁଁ ଶୁଦ୍ଧ ସରଲ ଚିତ ।
ପରସ ପ୍ରେମ ତୈ କରୈ, ନିତ ସବ ପ୍ରାନିନି ହିତ ।।
କୃଷ୍ଣ କୀରତନ କରୈ କଥା କୁଁ ସୁନୈ ସୁନାବୈ ।
ପର ସ୍ୱାରଥ ମହଁ ନିରତ ସବନି କୁଁ ଧାର ବଧାବୈ ।।
ଜୀବନ ହୀ ଜଲ କୁଁ କହତ୍ୱୋ, ସୃଷ୍ଟି ପ୍ରଥମ ଜଲ ତୈ ଭଈ ।
ଉତ୍ତମ ଶିକ୍ଷା ନୀର ଗୁରୁ, ତୈ ରାଜନ୍ ! ମୈନେ ଲଈ ।।



# ଗୁରୁ ଅଗ୍ନିଙ୍କଠାରୁ ଶିକ୍ଷା

**ତେଜସ୍ୱୀ ତପସା ଦୀପ୍ତୋ ଦୁର୍ଧର୍ଷୋଦର ଭାଜନଃ ।**
**ସର୍ବଭକ୍ଷୋଽପି ଯୁକ୍ତାତ୍ମା ନାଦତ୍ତେ ମଳମଗ୍ନିବତ୍ ।। ★**

[ଶ୍ରୀଭା.୧୧ସ୍କ, ୭ଅ, ୪୫ଶ୍ଳୋକ]

### ଛପ୍ପୟ

ତେଜସ୍ୱୀ ମୁନି ରହୈ ଅଗ୍ନି କେ ସରିସ ନିରନ୍ତର ।
ତପ ତେ ହ୍ୱୈ ଦେଦୀପ୍ୟ ପ୍ରକାଶିତ ଭୀତର ବାହର ।।
କ୍ଷୁଭିତ ହୋହି ନହିଁ କବହୁଁ ପେଟ ହୀ ପାତ୍ର ବନାବୈ ।
ଭିକ୍ଷା ମେ ଜୋ ମିଲୈ ତାହି ତାହୀ ଛିନ ଖାବୈ ।।
ରହେ ସର୍ବଭକ୍ଷୀ ତଊ, କବହୁଁ ନ ମଲ ଧାରନ କରୈ ।
କହୁଁ ଗୁପ୍ତ କହୁଁ ପ୍ରକଟ ହ୍ୱୈ, ଭିକ୍ଷାଦାନତନି ଅଘ ହରୈ ।।

ସଞ୍ଚୟ ମନୋବୃତ୍ତି କାରଣରୁ ମଣିଷଠାରେ ଦୀନତା ପ୍ରକାଶ ପାଏ । ଯିଏ ଯେତିକି ଅବିଶ୍ୱାସ କରେ ସେ ସେତିକି ଚିନ୍ତିତ ରହେ । ଭୋଗ ଲାଳସା ହିଁ ଆମକୁ ଅଧିକରୁ ଅଧିକ ସଂଗ୍ରହ ଓ ସଞ୍ଚୟ କରିବାପାଇଁ ବାଧ କରେ । ଅଧିକ ସଂଗ୍ରହ ନିମିତ୍ତ ଅଧିକ ଚିନ୍ତା କରିବାକୁ ହୁଏ । ଚିନ୍ତା ହିଁ ଦୁଃଖ, ଅଶାନ୍ତି ଓ ଅତୃପ୍ତିର ମୂଳ କାରଣ । କାରାଗାର୍‌ରେ ଥିବା ଫାଶୀ ଆସାମୀକୁ ଯେତେ ପ୍ରକାର ଆନନ୍ଦପ୍ରଦ ଉପାଦାନ ଦେଲେ ମଧ ସେ ଖୁସୀ ହୋଇପାରେ ନାହିଁ। କାରଣ ଫାଶୀ ପାଇବାର ଚିନ୍ତା ତାକୁ ଭୀତ ଓ ଚିନ୍ତାଗ୍ରସ୍ତ ରଖିଥାଏ । ନିର୍ଭୟତାରୁ ନିଶ୍ଚିନ୍ତତା, ବୈରାଗ୍ୟରୁ ଅଭୟ ଓ ତ୍ୟାଗରୁ ବୈରାଗ୍ୟ ଜାତ ହୁଏ । ସର୍ବନିମ୍ନ ଆବଶ୍ୟକତାଠାରୁ ଅଧିକ ଆଶା କରୁଥିବା ଲୋକ ସଂଗ୍ରହ କରେ । ସଂଗ୍ରହ ହିଁ ଚୌର୍ଯ୍ୟ ମନୋବୃତ୍ତିର ପରିଚାଳକ । ସଂଗ୍ରହକାରୀ ବାରମ୍ବାର ଜନ୍ମ ମରଣ ଦୁଃଖ ଭୋଗକରେ ।

---

★ ଦେଖ ତୁ ମୋର କଳେବର । ସୁଦୀପ୍ତ ତେଜ ବଳୀୟାର ।।
କେବଳ ପାତ୍ର ମୋ ଉଦର । ଏଣୁ ମୁଁ ଲୋକେ ଭୟଙ୍କର ।।
ତେଣୁ ମୁଁ ଧ୍ୟାନ ଯୋଗବଳେ । ଭୋଜନ କରେ ସର୍ବଠାରେ ।।
ଅଗ୍ନି ଯେସନେ ସର୍ବଖାଇ । ବିଚାରେ ଗୁଣ ଦୋଷ ନାହିଁ ।।
କେବେ ପ୍ରକାଶେ ଅପ୍ରକାଶେ । ଭୋଜନ କରେ ସର୍ବବାସେ ।।
ଶ୍ରେୟ ଇଚ୍ଛନ୍ତା ଦାତାଙ୍କର । ପାପ ନାଶଇ ପୂର୍ବାପର ।।

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ. ୮ମ ଅ.]

ସୂତ କହୁଛନ୍ତି, ହେ ମୁନିଗଣ ! ରାଜା ଯଦୁ କି କି ଶିକ୍ଷା ଅଗ୍ନିଙ୍କଠାରୁ ଲାଭ କରିଛନ୍ତି ବୋଲି ଅବଧୂତଙ୍କୁ ପଚାରିବାରୁ ଦତ୍ତାତ୍ରେୟ କହିଲେ, ''ହେ ରାଜନ୍ ! ମୁଁ ଅଗ୍ନିଙ୍କଠାରୁ ବହୁ କଥା ଶିଖିଛି । ତେଣୁ ଅଗ୍ନିଙ୍କୁ ମୁଁ ଗୁରୁରୂପେ ଗ୍ରହଣ କରିଛି ।''

ଅଗ୍ନି ଯେପରି ତେଜସ୍ୱୀ, ମୁନି ସେହିପରି ତେଜସ୍ୱୀ ହେବା ବାଞ୍ଛନୀୟ । ଏହା ମୁଁ ଅଗ୍ନିଙ୍କଠାରୁ ଶିକ୍ଷାକଲି । ଇନ୍ଦ୍ରିୟ ଲାଳସା ହେତୁ ତେଜ କ୍ଷୀଣ ହୁଏ । **ଯେଉଁ ଯୋଗୀର ଇନ୍ଦ୍ରିୟଗଣ ବଶୀଭୂତ ନୁହନ୍ତି, ସେ ମୂର୍ଖଲୋକଙ୍କୁ ଠକି ଦେଇପାରେ, ମାତ୍ର ଜ୍ଞାନୀ ଓ ସଜ୍ଜନଙ୍କଠାରେ ନିର୍ଭୟରେ କଥାବାର୍ତ୍ତା କରିବାପାଇଁ ସମର୍ଥ ହୁଏ ନାହିଁ । ଏପରି କୌଣସି ପାପ ନାହିଁ ଯାହାକୁ ଗୋପନୀୟ ରଖାଯାଇପାରେ । ଯାହାର ପାପକୁ ଦେବ, ମାନବ ସମସ୍ତେ ଜାଣନ୍ତି ସେ କେବେ ତେଜସ୍ୱୀ ହୋଇ ନ ପାରେ ।** ତେଣୁ ତେଜସ୍ୱୀ ଅଗ୍ନିଙ୍କ ପରି ଜିତେନ୍ଦ୍ରିୟ ହେବା ବାଞ୍ଛନୀୟ । ଅଗ୍ନି ଯେପରି ସର୍ବଦା ତାପ ପ୍ରଦାନ କରୁଛି ସେହିପରି ମୁନିଗଣ ତପସ୍ୟାରତ ରହିବା ଉଚିତ୍ । ତପସ୍ୟା ବିନା ଆତ୍ମାର ପ୍ରକାଶ ସମ୍ଭବ ନୁହେଁ । ଏହା ହିଁ ଅଗ୍ନିଙ୍କଠାରୁ ପାଇଥିବା ଦ୍ୱିତୀୟ ଶିକ୍ଷା ।

''କାୟିକ, ବାଚିକ ଓ ମାନସିକ ଭାବେ ତପସ୍ୟା ତିନିପ୍ରକାର । ଦେବତାଙ୍କ ନିମିତ୍ତ ପୂଜା-ସାମଗ୍ରୀର ଏକତ୍ରୀକରଣ, ପୁଷ୍ପଚୟନ, ମାଳା ନିର୍ମାଣ, ଚନ୍ଦନ ପ୍ରସ୍ତୁତି, ମନ୍ଦିର ପରିଷ୍କରଣ, ଦେବପୂଜାଦିକୁ କାୟିକ ତପସ୍ୟା କୁହାଯାଏ । ବିଭିନ୍ନ ଦେବତାଙ୍କ ଅର୍ଚ୍ଚନା ସହିତ ଭଗବଦ୍‌ଭକ୍ତଙ୍କ ପୂଜା, ବ୍ରାହ୍ମଣ ପୂଜା ଓ ସେବା, ନିଜଠାରୁ ବୟସ, ବିଦ୍ୟା, ଜ୍ଞାନ, ଅଭିଜ୍ଞତା, ତପସ୍ୟାଦିରେ ଶ୍ରେଷ୍ଠତର ବ୍ୟକ୍ତିଙ୍କ ପୂଜା ପ୍ରଭୃତି କାୟିକ ସେବାର ଅନ୍ତର୍ଗତ । ସ୍ନାନ ଓ ଶୁଦ୍ଧ ବସ୍ତ୍ର ପରିଧାନଦ୍ୱାରା ପବିତ୍ରତା ରକ୍ଷଣୀୟ । ପରସ୍ତ୍ରୀ ଦର୍ଶନ, ସ୍ପର୍ଶ ଓ ସଙ୍ଗ ବର୍ଜନୀୟ । ଅକ୍ରୋଧ, ଅହିଂସ ଓ ଉଦାର ଭାବନାଯୁକ୍ତ ହେବା ଉଚିତ । ଚାନ୍ଦ୍ରାୟଣାଦି ବ୍ରତଦ୍ୱାରା ଶରୀର ଶୁଦ୍ଧି କରଣୀୟ । ଏ **ସମସ୍ତ ଶାରୀରିକ ତପସ୍ୟା ।**

**''ବାଚିକ ତପସ୍ୟାରେ ସର୍ବଶ୍ରେଷ୍ଠ ହେଉଛି ମୌନ । ମୌନାବଲମ୍ବନ କାଳରେ ସଙ୍କେତ ବା ଲେଖାଦ୍ୱାରା ଅନ୍ୟକୁ ଦୁଃଖ ଦେବାଭଳି କାର୍ଯ୍ୟ କଲେ ତାହା ଦମ୍ଭ, ଶଠତା, ଜୀବିକାର୍ଜନର ବ୍ୟାପର ଭାବେ ଅଭିହିତ ।** ମୌନବ୍ୟକ୍ତି ମୌନଦ୍ୱାରା ଭଗବଦ୍ ଗୁଣଗାନରୁ ବଞ୍ଚିତ ହେବା ସଂଗେ ସଂଗେ ସଙ୍କେତଦ୍ୱାରା ଅନ୍ୟକୁ ଆଘାତ କରେ । କହିବାଠାରୁ ସଙ୍କେତର କୁପରିଣାମ ଅଧିକ ଭୟଙ୍କର । ତେଣୁ **ସର୍ବଦା ସତ୍ୟ କହିବା ଉଚିତ । ଅନେକ ସମୟରେ ସତ୍ୟବାଦୀର କଥାରେ ଶୁଣିବା ଲୋକର ଉଦ୍‌ବେଗ ଜାତ ହୁଏ । ସେଥିପାଇଁ ଅପ୍ରିୟ ସତ୍ୟ କହିବା ଉଚିତ୍ ନୁହେଁ ।** ସର୍ବଦା ହିତ, ମନୋହାରୀ, ମଧୁର, ମିତ ଓ ଅନୁଦ୍‌ବେଗକର ବଚନ କହିବା ବାଞ୍ଛନୀୟ । ଭଗବାନଙ୍କ ନାମ ଓ ଗୁଣଗାନ, ସଦ୍‌ଗ୍ରନ୍ଥ ଅଧ୍ୟୟନ ଏବଂ ମୁନିମାନଙ୍କ ବାଣୀ କଣ୍ଠସ୍ଥ କରିବାଦ୍ୱାରା ବାଚିକ ତପସ୍ୟା ପାଳିତ ହୁଏ ।

**''ସର୍ବଦା ପ୍ରସନ୍ନ ରହିବା ହିଁ ମାନସିକ ତପସ୍ୟା ।** ଅନ୍ତର ପ୍ରସନ୍ନ ରହିଲେ ତାହା ମୁଖମଣ୍ଡଳରେ ପ୍ରସ୍ଫୁଟିତ ହୁଏ । ଯାହାର ଅନ୍ତଃକରଣ ଅଶୁଦ୍ଧ ସେ ଖୋଲା ହସି ହସିପାରେ ନାହିଁ । ମନକୁ ପ୍ରସନ୍ନ ରଖିବା ଉଚିତ, ଏହା କହିଦେଲେ କଥାରେ ହେବ ନାହିଁ । ସେଥିପାଇଁ ଦୀର୍ଘ ଅଭ୍ୟାସ ଆବଶ୍ୟକ । ଯାହାର ମନ କୁଟୀଳ ସେ ସର୍ବଦା କୁଟୀଳ କଥା ହିଁ ଚିନ୍ତାକରେ । ତେଣୁ ମନର କୁଟିଳତା ତ୍ୟାଗକରି ସୌମ୍ୟଭାବନା, ସୁଶୀଳତା ଓ ସରସତା ଲାଭ ନିମିତ୍ତ ସଦ୍‌ବସ୍ତୁ ପ୍ରତି ଆକୃଷ୍ଟ ହେବା ଉଚିତ୍ । ମନକୁ ସଂଯତ ଓ ଭାବକୁ ପବିତ୍ର ରଖିବାଦ୍ୱାରା

ମାନସିକ ତପ ପାଳିତ ହୁଏ। ଅଗ୍ନିଙ୍କ ଭଳି ସର୍ବଦା ତପ୍ତ ରହିବା ନିମିତ୍ତ ବ୍ୟକ୍ତିବିଶେଷ କାୟିକ, ବାଚିକ ଓ ମାନସିକ ଏପରି ତ୍ରିବିଧ ତପସ୍ୟା ଆଚରଣ କରିବା ଉଚିତ। ତପସ୍ୟାଦ୍ୱାରା ସଦା ଦେଦୀପ୍ୟମାନ ରହିବାର ଶିକ୍ଷା ମୁଁ ଅଗ୍ନିଙ୍କଠାରୁ ଲାଭ କରିଛି।''

ଯଦୁରାଜ ଅଂଶଗ୍ରହଣର ଲକ୍ଷଣ ବିଷୟରେ ପଚାରିବାରୁ ଅବଧୂତ କହିଲେ, ''ହେ ରାଜନ୍! ଅଗ୍ନିକୁ ଯାହା ଓ ଯେତେ ଦେଲେ ବି ସେ ତାହା ଭସ୍ମ କରି ଦିଅନ୍ତି। ପରବର୍ତ୍ତୀ ସମୟପାଇଁ ଅଗ୍ନିଙ୍କଠାରେ କିଛି ସଞ୍ଚିତ ହୋଇ ରହେନାହିଁ। ସେହିପରି ତ୍ୟାଗୀ ଯୋଗୀ ଯାହା କିଛି ଭିକ୍ଷାଦ୍ୱାରା ପାଇବେ ତାହାର ସଦ୍‌ବ୍ୟବହାର କରିବେ, କିନ୍ତୁ ପରଦିନପାଇଁ ସଞ୍ଚୟ କରିବା ଉଚିତ୍ ନୁହେଁ। ପରଦିନ କିଛି ନ ମିଳିପାରେ, ଏହି ଭାବନାର ବଶବର୍ତ୍ତୀ ହୋଇ ଲୋକ ସଂଗ୍ରହ କରେ। କିନ୍ତୁ ଯେ ପେଟ ଦେଇଛି, ସେ ତା' ଭାବିବ ନିଶ୍ଚୟ, ଏଭଳି ବିଶ୍ୱାସ ରହିବା ଉଚିତ। ଯେ ଘୋଡ଼ା ରଖେ ସେ ଘୋଡ଼ାଶାଳର ବ୍ୟବସ୍ଥା କରେ। ପିଲାଟିଏ ଜନ୍ମ ହେବା ପରେ ପରେ ମାତୃସ୍ତନରୁ କ୍ଷୀର କ୍ଷରିତ ହୁଏ। ତେଣୁ ଆଗାମୀ କାଲିପାଇଁ ସଞ୍ଚୟ କରି ରଖ ବା ନ ରଖ, ଯାହା ତୁମର ପ୍ରାପ୍ୟ ଥିବ ତାହା ତୁମେ ନିଶ୍ଚୟ ପାଇବ। ଅନେକ କିଛି ତୁମ ହାତ ପାଖରେ ରହିଛି। କିନ୍ତୁ, ତୁମର ପାଇବାର ନଥିଲେ, ସେ ସବୁ ତୁମେ ଉପଭୋଗ କରିପାରିବ ନାହିଁ। ଏପରିକି କେତେକ ସମୟରେ ବଢ଼ା ହୋଇଥିବା ଭାତ ମଧ୍ୟ ଖାଇହୁଏ ନାହିଁ। ସବୁକିଛି ଯେତେବେଳେ ଭାଗ୍ୟର ଖେଳ ବୋଲି ଗ୍ରହଣ କରାଯାଇଛି ସେତେବେଳେ ତ୍ୟାଗୀ ଯତି ସଞ୍ଚୟ କରିବା ଜନିତ ଚିନ୍ତାରେ ଅଧିକ ଭାରାକ୍ରାନ୍ତ ହେବା ଉଚିତ ନୁହେଁ। ଅଭାବରେ ହିଁ ମନୋବଳ ବୃଦ୍ଧି ପାଏ। ସାଧୁଲୋକ ମାତ୍ର ଗୋଟିଏ ଦିନର ଚିନ୍ତା କରିବା ଆବଶ୍ୟକ।

''ଅଗ୍ନିରେ ଘୃତ, ସୁଗନ୍ଧ ବା ଦୁର୍ଗନ୍ଧ ଦ୍ରବ୍ୟ, ଯାହା କିଛି ଆହୁରି ଦିଆଯାଏ ସେ ସମସ୍ତ ସ୍ୱାହା ହୋଇଯାଏ। ଦ୍ରବ୍ୟର ଦୋଷାଦୋଷ ବା ଗୁଣାଗୁଣ ଅଗ୍ନିକୁ ସ୍ପର୍ଶ କରେନାହିଁ। ସେହିପରି ଯେ ଯାହା ଭିକ୍ଷା ସ୍ୱରୂପ ଦେଲେ, ଯତି ତାକୁ ପ୍ରସନ୍ନ ଚିତ୍ତରେ ସ୍ୱୀକାର କରିବା ଉଚିତ। ସେଥିରେ ଭେଦଭାବନା ରହିବା ଅନୁଚିତ। ସଂଯତଚିତ୍ତ ହୋଇ ଦୋଷଗୁଣ ବିଚାରଠାରୁ ମୁକ୍ତ ରହିବା କଥା ମୁଁ ଅଗ୍ନିଦେବଙ୍କଠାରୁ ଶିକ୍ଷା କଲି।''

''ପଞ୍ଚମରେ, ଆବଶ୍ୟକତା ଅନୁଯାୟୀ ଯେ କୌଣସି ପରିସ୍ଥିତିକୁ ସ୍ୱୀକାର କରିବା ଶିକ୍ଷା ମୁଁ ଅଗ୍ନିଙ୍କଠାରୁ ଲାଭ କଲି। ଅଗ୍ନି ଯଜ୍ଞାଦି କ୍ଷେତ୍ରରେ ପ୍ରକଟ ଅବସ୍ଥାରେ ଥିଲେ ବି ଅନ୍ୟ ସ୍ଥଳରେ ଅପ୍ରକଟ ଅବସ୍ଥାରେ ରହିଥାଏ। ସେହିପରି ସାଧୁ ଉଚିତ୍ ଅବସର ପାଇଲେ ନିଜକୁ ପ୍ରକାଶ କରେ, ଅନ୍ୟଥା ବନ ଗିରି ଗୁମ୍ଫାରେ ନିଜର ସାଧନା ଚଳାଇଥାଏ। କୌଣସି ଗୋଟିଏ ସ୍ଥାନରେ ଆତ୍ମୀୟତା ସୃଷ୍ଟି କରି ରହିବା ସାଧୁର ଧର୍ମ ନୁହେଁ।''

''ଶୀତ ଦିନରେ ଲୋକେ ନିଆଁ ଜାଳି ତା' ଚାରିପାଖରେ ଘେରି ବସି ଶୀତକଷ୍ଟ ନିବାରଣ କରନ୍ତି। ଗ୍ରୀଷ୍ମକାଳରେ ରୋଷେଇ କରୁଥିବା ଓ ଯଜ୍ଞକାର୍ଯ୍ୟ କରୁଥିବା ଲୋକ ମଧ୍ୟ ଅଗ୍ନିସେବନ କରିଥାଏ। କିନ୍ତୁ କୌଣସି କ୍ଷେତ୍ରରେ ଅଗ୍ନିର ତେଜରେ ନ୍ୟୂନତା ପ୍ରକାଶପାଏ ନାହିଁ। ସେହିପରି ଲୋକେ ନିଜର ମଙ୍ଗଳ ସାଧନପାଇଁ ସାଧୁଙ୍କୁ ଘେରି ଯାଆନ୍ତି। ମୁମୁକ୍ଷୁ ଯତି ସମସ୍ତଙ୍କର କଲ୍ୟାଣ କାମନା କରୁଥିଲେ ମଧ୍ୟ ତା'ର ତପୋବଳର ହ୍ରାସ ବା ବୃଦ୍ଧି ଘଟେ ନାହିଁ। ଏହା ହିଁ ଅଗ୍ନିଙ୍କଠାରୁ ପାଇଥିବା ମୋର ଷଷ୍ଠଶିକ୍ଷା।

''ଅଗ୍ନି ଯେପରି ମଳ ନାଶ କରି ସୁବର୍ଣ୍ଣକୁ ବିଶୁଦ୍ଧ ଓ ସମୁଜ୍ଜ୍ୱଳ କରେ, ସେହିପରି ଯୋଗୀ ସବୁପ୍ରକାର ଭିକ୍ଷା ଅକୁଣ୍ଠ ଚିତ୍ତରେ ସ୍ୱୀକାର ପୂର୍ବକ ଭିକ୍ଷାଦାତାର ଅଶୁଭ ନାଶ କରେ। ତେଣୁ, ଅବଧୂତ ସର୍ବତ୍ର ଅନ୍ନ ଗ୍ରହଣ କରିବା ସଂଗେ ସଂଗେ ସ୍ୱଚ୍ଛନ୍ଦ ଭାବେ ବିଚରଣ କରିବା ଉଚିତ। ମୁଁ ଅଗ୍ନିଙ୍କଠାରୁ ଏହିଭଳି ସପ୍ତମ ଶିକ୍ଷା ଲାଭ କଲି।

''ପୁନଶ୍ଚ ମୁଁ ଆତ୍ମଜ୍ଞାନ ରୂପ ଅଷ୍ଟମ ଶିକ୍ଷା ଅଗ୍ନିଙ୍କଠାରୁ ଗ୍ରହଣ କରିଛି।'' ଏ ବିଷୟରେ ଯଦୁରାଜଙ୍କ ସନ୍ଦେହ ମୋଚନପାଇଁ ଅବଧୂତ କହିଲେ, ''କମାରଶାଳରେ ଲୁହାକୁ ନିଆଁରେ ଉତ୍ତପ୍ତ କରି ଆବଶ୍ୟକୀୟ ବସ୍ତୁ ଇଚ୍ଛାନୁସାରେ ନିର୍ମିତ ହୁଏ। କିନ୍ତୁ ନିଆଁରେ ତାତିଲେ ଲୁହା କୃଷ୍ଣବର୍ଣ୍ଣ ବଦଳରେ ରକ୍ତବର୍ଣ୍ଣ ଧାରଣ କରେ। ଲୁହାର ଆକାର ପ୍ରକାର ଅନୁସାରେ ଅଗ୍ନିର ରୂପ ପ୍ରକଟିତ ହୁଏ। ସେହିପରି ଆତ୍ମା ମଧ୍ୟ ମାୟା ରଚିତ ସତ୍-ଅସତରୂପ ପ୍ରପଞ୍ଚ ମଧ୍ୟ ଦେଇ ଭିନ୍ନ ଭିନ୍ନ ଉପାଧି ଅନୁସାରେ ଭିନ୍ନ ଭିନ୍ନ ଚେଷ୍ଟା ବ୍ୟକ୍ତକରେ। ଅଗ୍ନି ସର୍ବବ୍ୟାପକ ହୋଇ ମଧ୍ୟ ଯେପରି ଉପାଧି ଭେଦରେ ଭିନ୍ନ ଭିନ୍ନ ଯୌନିର ଅନୁଗତ ହେବା ସଂଗେ ସଂଗେ ନବ ନବ ନାମରେ ଅଭିହିତ ହୁଏ, ସେହିପରି ସର୍ବବ୍ୟାପୀ ଆତ୍ମା ପଶୁ, ପକ୍ଷୀ, ମାନବ, କୀଟ, ପତଙ୍ଗାଦି ଯୋନି ଅନୁସାରେ ସ୍ୱତନ୍ତ୍ର ଭାବେ ପ୍ରତୀତ ହୁଏ। ମୁମୁକ୍ଷୁ ଯତି ଅଗ୍ନିଙ୍କୁ ଗୁରୁ କରି ଆତ୍ମାର ଏକରୂପତା ବିଷୟରେ ଶିକ୍ଷାଲାଭ କରିବା ଉଚିତ।''

ମହର୍ଷି ସୂତ କହୁଛନ୍ତି, ''ମୁନିଗଣ! ଦତ୍ତାତ୍ରେୟ ମହାମୁନି, ମହାରାଜ ଯଦୁଙ୍କୁ ଉତ୍ତର ଦେବାକୁ ଯାଇ ଚନ୍ଦ୍ରଙ୍କଠାରୁ ଲାଭ କରିଥିବା ଶିକ୍ଷା ପ୍ରସଙ୍ଗରେ ଯାହା ବୁଝାଇଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି। ଆପଣମାନେ ଆଦର ସହକାରେ ସେହି ପ୍ରସଙ୍ଗ ଶ୍ରବଣ କରନ୍ତୁ।''

**ଛପ୍‌ପୟ**

ଭେଦ ଭାବ ନହିଁ କରୈ ଅନ୍ନ ସବଣ୍ଣ କୋ ଖାବୈ।
ଜାମେ ପ୍ରବିସୈ ଅନଲ ରୂପ ତାକେ ହ୍ୱୈ ଜାବୈ॥
ଲେବୈ ଶିକ୍ଷା ୟହୀ - ଆତମା ସାବକେ ମାହୀ।
ପ୍ରବିସୈ ହ୍ୱୈ ତଦରୂପ ଲିପ୍ତ ତିନମହଁ ସୋ ନାହିଁ॥
ଲାୟେ ଆଠଗୁନ ଅଗିନି ତେ, ତାତେଁ ତେ ମମ ଗୁରୁ ଭୟେ।
କହୁଁ ତିନହିଁ ଅବ ଚନ୍ଦ୍ର ଗୁରୁ, କରି ତିନତେଁ ମେ ଗୁନ ଲୟେ॥



# ମୋର ଶିକ୍ଷାଗୁରୁ ଚନ୍ଦ୍ର

**ବିସର୍ଗାଦ୍ୟାଂ ଶ୍ମଶାନାନ୍ତା ଭାବା ଦେହସ୍ୟ ନାତ୍ମନଃ ।**
**କଳାନାମିବ ଚନ୍ଦ୍ରସ୍ୟ କାଳେନାବ୍ୟକ୍ତବର୍ତ୍ମନା ॥** ★

[ଶ୍ରୀ ଭା.୧୧ସ୍କ, ୧୭ଅ, ୪୮ଶ୍ଳୋକ]

**ଛପ୍‌ପୟ**

ଚନ୍ଦ୍ର ଏକରସ ରହେ ସ୍ୱୟଂ ନିଜଲୋକ ପ୍ରକାଶିତ ।
କୃଷ୍ଣପକ୍ଷ ମଇଁ ଘଟେ ଶୁକ୍ଳମହିଁ ବଢେ କଳା ନିତ ॥
ସୋଟେ ଯୋଗୀ ଜିହୀ ଆତମା ଅଜର ଅମର ଅଜ ।
ଗରମ, ଜନମ, ଅରୁ ଜରା ମୃତ୍ୟୁ ତନକେ ଭାବ କାରଜ ॥
ଛିନ ଛିନ ପଲ ପଲ ଜଗତ ମହିଁ, ପରିବର୍ତନ ହୋବୈ ସତତ ।
ଚଇତ ରହତ ତାତେ କହତ, ଜାକୁଁ ସବ ମୁନି ଜନ ଜଗତ ॥

ସଂସାରର ଦୃଶ୍ୟମାନ ପଦାର୍ଥ ପରିବର୍ତ୍ତନଶୀଳ । ଏପରି କୌଣସି ବସ୍ତୁ ନାହିଁ ଯାହା ଅପରିବର୍ତ୍ତିତ ରହିପାରେ । କିନ୍ତୁ ଏହି ପରିବର୍ତ୍ତନ ଏପରି ଭାବରେ ଘଟେ ଯେ, ତାହା ସ୍ଥୂଳ ଦୃଷ୍ଟିରେ ଅନୁଭବ କରାଯାଇପାରେ ନାହିଁ । ସମସ୍ତେ ଜାଣନ୍ତି ଋତୁର ପରିବର୍ତ୍ତନ ଘଟେ । ଗ୍ରୀଷ୍ମ ପରେ ବର୍ଷା, ବର୍ଷାପରେ ଶୀତ ଆସେ । ଗ୍ରୀଷ୍ମ, ବର୍ଷା ଓ ଶୀତ ଧୀରେ ଧୀରେ ଅନୁଭୂତ ହୁଏ । ଗ୍ରୀଷ୍ମ ପରେ ବର୍ଷା, ବର୍ଷା ପରେ ଶୀତକୁ ଗୋଟିଏ ପରେ ଗୋଟିଏ ଆମେ ଅନୁଭବ କରୁ । ଗୋଟିକର ଉପସ୍ଥିତିରେ ଆମେ ଅନ୍ୟଟିକୁ ଭୁଲିଯାଉ । ଗଙ୍ଗାନଦୀର ଜଳ ପ୍ରତିକ୍ଷଣ ବଦଳୁ ଥିଲେ ବି ଆମେ ତା'ର ପରିବର୍ତ୍ତନ ଦେଖିପାରୁନାହୁଁ । ସେହିପରି ଆମ ଶରୀର ମଧ୍ୟରେ ଥିବା ଅଣୁ ପରମାଣୁର ଯେଉଁଭଳି ଦ୍ରୁତ ପରିବର୍ତ୍ତନ ଘଟୁଛି ତାହା ଆମ ଅନୁଭୂତିରେ ଆସେନାହିଁ । ସେହି ପରିବର୍ତ୍ତନକୁ ଜାଣିପାରିଲେ ଦୃଶ୍ୟମାନ ପାର୍ଥିବ ଉପାଦାନ

---

★ ଜନ୍ମ ଯୌବନ ଜରା ମୃତ୍ୟୁ । ଶୁଭ ଅଶୁଭ ଦୁଃଖ ହେତୁ ॥
ଏ ସର୍ବଗୁଣ ବହେ ଦେହ । ଜୀବର ନୋହେ ପରିଗ୍ରହ ॥
ଚନ୍ଦ୍ରର କ୍ଷୟ ବୃଦ୍ଧି ଯେହ୍ନେ । କୃଷ୍ଣ ଶୁକ୍ଳ ପକ୍ଷମାନେ ॥
ଲୋକ ଲୋଚନେ ଭ୍ରାନ୍ତି ଦିଶେ । ଅକ୍ଷୟ ଏକକଳା ଶେଷେ ॥
ଜୀବର ଏମନ୍ତ ବେଭାର । ସ୍ୱଭାବେ ଅଜର ଅମର ॥
ଏ ଅନୁଭବ ଚନ୍ଦ୍ର ଠାହିଁ । ଭ୍ରମଇଁ ଗୁରୁ ଶିକ୍ଷା ପାଇ ॥

[ଭାଗବତ : ଜଗନ୍ନାଥ ଦାସ :୧୧ସ୍କ. ୮ମ ଅ.]

କିପରି କ୍ଷଣଭଙ୍ଗୁର, ପରିବର୍ତ୍ତନଶୀଳ ଓ ନାଶବାନ୍ ତାହା ସହଜରେ ବୁଝିହେବ। ଏହି ନଶ୍ୱର ରୂପ ମଧ୍ୟରେ ରହିଥିବା ଶାଶ୍ୱତ , ନିତ୍ୟ, ଅଜ, ଅବିନାଶୀ ଆତ୍ମାକୁ ଯେ ଜାଣିପାରେ ତାକୁ ଯଥାର୍ଥରେ ଜୀବନ୍ମୁକ୍ତ, ଯୋଗୀ ବା ବ୍ରହ୍ମଜ୍ଞାନୀ କୁହାଯାଏ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ଚନ୍ଦ୍ରଙ୍କଠାରୁ କି ଶିକ୍ଷାଲାଭ କଲେ ବୋଲି ଯଦୁରାଜ ପଚାରିବାରୁ ଅବଧୂତ ଉତ୍ତର ଦେଲେ, ''ରାଜନ୍! ଚନ୍ଦ୍ରଙ୍କଠାରୁ ମୁଁ ବହୁ ଉପାଦେୟ ଶିକ୍ଷା ଗ୍ରହଣ କରିଛି। ଚନ୍ଦ୍ରଙ୍କର ହ୍ରାସ ବୃଦ୍ଧି ଘଟେ ବୋଲି ଜ୍ଞାନହୀନ ଲୋକେ ଧାରଣା କରନ୍ତି। ଶୁକ୍ଳ ପକ୍ଷର ଦ୍ୱିତୀୟାଠାରୁ କ୍ରମଶଃ ବୃଦ୍ଧି ଲାଭ କରି ପୂର୍ଣ୍ଣିମାଦିନ ଚନ୍ଦ୍ରର ପୂର୍ଣ୍ଣ ରୂପ ଦେଖାଯାଏ ଏବଂ କୃଷ୍ଣପକ୍ଷର ପ୍ରତିପଦ ଠାରୁ କ୍ରମଶଃ ହ୍ରାସ ପାଇ ଅମାବାସ୍ୟା ଦିନ ଚନ୍ଦ୍ର ପୂର୍ଣ୍ଣତଃ ଅଦୃଶ୍ୟ ହୁଏ। କିନ୍ତୁ ଜ୍ଞାନୀ ଲୋକେ ଏହା ସ୍ୱୀକାର କରନ୍ତି ନାହିଁ। ସେମାନେ କହନ୍ତି, ଚନ୍ଦ୍ରର ହ୍ରାସବୃଦ୍ଧି ନାହିଁ। ସେ ସର୍ବଦା ଅପରିବର୍ତ୍ତିତ ରହନ୍ତି। କିନ୍ତୁ ହ୍ରାସ ଓ ବୃଦ୍ଧି ଘଟେ ଚନ୍ଦ୍ରଙ୍କ କଳାର। ଉଦାହରଣ ସ୍ୱରୂପ, ତେଲରେ ଭିଜା ଯାଇଥିବା ସଳିତାଟିଏ ଦୀପରେ ଜଳୁଛି। ତାକୁ ଦେଖି ଆମେ କହୁ ଦୀପ ଜଳୁଛି। ବାସ୍ତବରେ ଦୀପ ନୁହେଁ, ବତୀ ହିଁ ଜଳୁଛି। ତେଲ ସରିଗଲେ ଦୀପ ଲିଭିଯାଏ। ଅମେ ଦୀପ ଲିଭିଗଲା ବୋଲି କହୁ। କିନ୍ତୁ ଦୀପଟିର ଅବସ୍ଥା ଅପରିବର୍ତ୍ତିତ ଥାଏ। ସେହିପରି ଲୋକେ କହନ୍ତି, ପିଲାଟି ଗର୍ଭରେ ଅଛି। ପିଲା ଜନ୍ମହେଲା, ବଢ଼ିଲା, ଲୋକ କହନ୍ତି ପିଲାଟି ଛୋଟ ହୋଇଛି। ସେହିପରି ତା'ର ପୌଗଣ୍ଡ, କୈଶୋର, ଯୌବନ, ବାର୍ଦ୍ଧକ୍ୟାଦି ଅବସ୍ଥା ଅଟେ। ଶେଷରେ ସେ ମରିଯାଏ ଏବଂ ଲୋକେ ତାକୁ ଶ୍ମଶାନରେ ପୋଡ଼ିଦିଅନ୍ତି। ଏବେ ବିଚାରିବାର କଥା ସେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ପରିବର୍ତ୍ତନ ଦେହର ନା ଦେହାଶ୍ରିତ ଚୈତନ୍ୟ ବା ଆତ୍ମାର ଘଟିଲା। ଚୈତନ୍ୟର ପରିବର୍ତ୍ତନ ଘଟେ ନାହିଁ। ସବୁକିଛି ପରିବର୍ତ୍ତନ ଜଡ଼ର ହିଁ ହୁଏ। ଏଥିରୁ ସ୍ୱୀକାର କରିବାକୁ ହେବ ଯେ ଅପରିବର୍ତ୍ତନ ଆତ୍ମାର ନୁହେଁ, ଦେହର ହିଁ ଧର୍ମ। ଦେହର ହ୍ରାସବୃଦ୍ଧିରେ ଆତ୍ମାର କୌଣସି ବିକାର ସୃଷ୍ଟି ହୁଏ ନାହିଁ। ସେଥିପାଇଁ ଆତ୍ମଜ୍ଞାନୀ, ଚନ୍ଦ୍ରଙ୍କଠାରୁ ଶିକ୍ଷାଲାଭକରି, ଦେହର ପରିବର୍ତ୍ତନକୁ ନିଜର ପରିବର୍ତ୍ତନ ବୋଲି ଭାବି ସୁଖୀ ବା ଦୁଃଖୀ ହେବା ଉଚିତ ନୁହେଁ। କାଳର ପ୍ରବାହରେ ମଧ୍ୟ ପ୍ରତିମୂର୍ତ୍ତିରେ ପରିବର୍ତ୍ତନ ଘଟୁଛି, କିନ୍ତୁ ତାହା ଆମେ ଜାଣିପାରୁ ନାହୁଁ। ପରିବର୍ତ୍ତନ ହଠାତ୍ ହୁଏ ନାହିଁ। ପ୍ରତିକ୍ଷଣ ତାହା ଘଟୁଛି। ତେଣୁ ଖୁବ୍ ବଡ଼ ଧରଣର ପରିବର୍ତ୍ତନ ଘଟିଲେ ହିଁ ତାହା ଆମେ ଅନୁଭବ କରି ପାରିବା।

ରାଜା କହିଲେ, ''ବ୍ରହ୍ମନ୍! ନିତ୍ୟ ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏ ନାହିଁ। ପିଲାଟି ଛୋଟରୁ ବଡ଼ ହେଲେ, ଯୁବକରୁ ବୃଦ୍ଧ ହେଲେହିଁ ଆମେ ପରିବର୍ତ୍ତନକୁ ଲକ୍ଷ୍ୟ କରିପାରୁଛୁ।

ଅବଧୂତ କହିଲେ, ''ରାଜନ୍! ପରିବର୍ତ୍ତନ ନିରନ୍ତର ଲାଗି ରହିଛି। ଅବାରିତ ନଦୀ ପ୍ରବାହ ଭଳି ସଂସାର ପ୍ରବାହ ଅନାଦି କାଳରୁ ପ୍ରବାହିତ ହୋଇ ଆସୁଛି। ସେଥିରେ ସ୍ଥିରତା, ଗମ୍ଭୀରତା ବା ଏକରୂପତା ନାହିଁ। ଏହି ପ୍ରବାହ ବର୍ତ୍ତମାନ ପରି ଭବିଷ୍ୟତରେ ମଧ୍ୟ ଚାଲିବ। ଅଗ୍ନିଶିଖା ପ୍ରତିକ୍ଷଣ ସୃଷ୍ଟି ହୁଏ ଓ ନଷ୍ଟ ବି ହୁଏ। ସେହିପରି ବିନ୍ଦୁଏ ଜଳ ବହିଯିବା ସଂଗେ ସଂଗେ ଅନ୍ୟ ଜଳବିନ୍ଦୁଟି ତା'ର ସ୍ଥାନ ପୂରଣ କରେ। ଠିକ୍ ସେମିତି ଅସଂଖ୍ୟ ଜୀବ ଜନ୍ମ ହେଉଛନ୍ତି, ମରୁଛନ୍ତି ଓ ପୁଣି ଜନ୍ମଗ୍ରହଣ କରୁଛନ୍ତି। ନଦୀର ପ୍ରବାହ ଭଳି ଜନ୍ମମରଣର ପ୍ରବାହ ନିରବଚ୍ଛିନ୍ନ ଭାବେ ପ୍ରବାହିତ ହେଉଛି। ଅଜ୍ଞାନ ଲୋକ ଏହାର ରହସ୍ୟ ବୁଝି ନ

ପାରି ଦେହକୁ ଆତ୍ମା ବୋଲି ଭାବି ଏହି ନଶ୍ୱର ସଂସାରର ଘଟଣାବଳୀଦ୍ୱାରା ସୁଖ ବା ଦୁଃଖ ଅନୁଭବ କରୁଛି। ଦେହର ଜନ୍ମ ଓ ମୃତ୍ୟୁ ଘଟେ। ତେଣୁ କାହାରି ମୃତ୍ୟୁରେ ଶୋକ କରିବା ଉଚିତ ନୁହେଁ। ଗତକାଲି ଚାରୋଟି ସୁନାମୋହର ମୋ ପାଖରେ ଥିଲା, ଆଜି ତାହା ହସ୍ତାନ୍ତର ହୋଇ ଯାଇଛି। ସେଥିରେ ରାଗ ବା ଦ୍ୱେଷ କରିବାର କାରଣ କ'ଣ? ସେହି ମୋହରକୁ ତ ଆମେ ସାଙ୍ଗରେ ନେଇ ଯାଇପାରିବା ନାହିଁ। ସେଗୁଡ଼ିକ ଯେଉଁଠି ସେଇଠି ପଡ଼ିରହିବ। ମାଟିରୁ ତା'ର ସୃଷ୍ଟି, ଆଉ ସେହି ମାଟିରେ ସେ ମିଶିଯିବ। ଜାଣି ଶୁଣି ଅନିତ୍ୟ ଓ ନାଶବାନ୍ ପଦାର୍ଥର ମମତା ରଖି ଅଜ୍ଞାନୀଙ୍କ ଭଳି ଦୁଃଖୀ ହେବା ଉଚିତ ନୁହେଁ। ତେଣୁ **କଳାର ହ୍ରାସ ଓ ବୃଦ୍ଧିରେ ଚନ୍ଦ୍ରର ଯେପରି କୌଣସି ବିକାର ଜାତ ହୁଏ ନାହିଁ, ସେହିପରି ଜ୍ଞାନୀ ବ୍ୟକ୍ତି ଦୃଶ୍ୟମାନ ସାଂସାରିକ ବିବର୍ତ୍ତନରେ ନିର୍ବିକାର ଚିତ୍ତ ହେବା ବାଞ୍ଛନୀୟ।''**

ଏହାପରେ ଯଦୁରାଜାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ ସୂର୍ଯ୍ୟଙ୍କ ଠାରୁ ଲାଭ କରିଥିବା ଶିକ୍ଷା ପ୍ରସଙ୍ଗରେ ଯାହା କହିଥିଲେ ତାହା ମୁନିମାନଙ୍କୁ ମହର୍ଷି ସୂତ ବୁଝାଇଥିଲେ।

## ଛପ୍‌ପୟ

ଅଗ୍ନି ଶିଖା ଛିନ ମାହିଁ ପ୍ରକଟ ହ୍ୱୈକେ ଛିପ ଜାବୈ।
ଏକ ନଷ୍ଟ ହ୍ୱୈ ଜାୟ ଦୂସରୀ ଉଦ୍‌ଛିନ ଆବୈ॥
ଜଲ ଉଦ୍‌ଗମ ତୈ ନିକସି ବହୈ ଫିର ନୂତନ ପୁନିପୁନି।
ବହୈ ଗ୍ରହନ ତବ କରୈ ଥାନ ପୁନି ବୀତେ ବିନ୍ଦୁନି॥
ଜଗ ପରିବର୍ତନଶୀଲ ହୈ, ଅସତ୍ ଅଭଦ୍ର ଅନିତ୍ୟ ହୈ।
ପରିବର୍ତନ ତନମହଁ ସକଲ, ଆତ୍ମା ଚେତନ ନିତ୍ୟ ହୈ॥



# ଗୁରୁ ସୂର୍ଯ୍ୟଙ୍କଠାରୁ ଶିକ୍ଷା

ଗୁଣୈର୍ଗୁଣାନୁପାଦତ୍ତେ      ଯଥାକାଲଂ      ବିମୁଞ୍ଚତି ।
ନ ତେଷୁ ଯୁଜ୍ୟତେ ଯୋଗୀ ଗୋଭିର୍ଗା ଇବ ଗୋପତିଃ ॥ ★

[ଶ୍ରୀଭା.୧୧ସ୍କ, ୭ଅ, ୫୦ଶ୍ଳୋକ]

**ଛପ୍ପୟ**

ଅବ ତୋ ଶିକ୍ଷା ଲଇ ସୂର୍ୟ ତେ ତାହି ସୁନାଉଁ ।
ଗୁରୁ ସୂରଜ ଟ୍ୟୌ କରୟୋ ହେତୁ ତାକୌ ସମୁଝାଉଁ ॥
ନିଜ କରନନି ତୈ ଖୀଚି ସଲିଲ ଗ୍ରୀଷମ ମହଁ ଲେବୈ ।
ବରଷା ମହଁ ବରସାଇ ଫେଇ ପ୍ରାନିନି କୂଁ ଦେବୈ ॥
ଇନ୍ଦ୍ରିନିତୈ ସ୍ୱୀକାର କେ, ତ୍ୟୋ ହୀ ତ୍ରିଗୁନ ପଦାର୍ଥ ସବ ।
ସମୟ ପାଇ ତ୍ୟାଗତ ତୁରତ, ହୋହି ନ ହର୍ଷ ବିଷାଦ ତବ ॥

ଯେଉଁ ନଦୀର ଜଳଧାରା ନିରବଚ୍ଛିନ୍ନ ପ୍ରବାହିତ ହେଉଥାଏ, ତାହାର ଜଳ ସ୍ୱଚ୍ଛ ଓ ସୁସ୍ୱାଦୁ ଲାଗେ । ଆବଦ୍ଧ ଜଳ ସେପରି ହୁଏ ନାହିଁ । ତ୍ୟାଗରୁ ସେହିପରି ବୁଦ୍ଧିର ବିକାଶ ଘଟେ । ଯେ ଯେଉଁ ପରମାଣରେ ତ୍ୟାଗ କରେ, ସେ ତତୋଧିକ ବସ୍ତୁ ଲାଭ କରେ । ଯେ କେବଳ ଗ୍ରହଣ କରେ ସେ ସୁସ୍ଥ ରହିପାରେ ନାହିଁ । ଉଦାହରଣସ୍ୱରୂପ କୌଣସି ଏକ ବଡ଼ କାରଖାନାରେ ଏକ ଦିଗରୁ ନିର୍ମାଣ ଲକ୍ଷ୍ୟରେ କଞ୍ଚାମାଲ୍ ଆସେ ଏବଂ ଅନ୍ୟ ଦିଗରେ ତାହା ନିର୍ମିତ ହୋଇ ବାହାରକୁ ଚାଲିଯାଏ । ଏହିଭାବରେ କାରଖାନାର ଅଭିବୃଦ୍ଧି ଘଟେ । ଯଦି କଞ୍ଚାମାଲ୍ ସଂଗୃହୀତ ହୋଇ ଆବଶ୍ୟକୀୟ ନିର୍ମାଣ କାର୍ଯ୍ୟରେ ବ୍ୟବହୃତ ନ ହୋଇ ଖାଲି ପଡ଼ିରହନ୍ତା, ତେବେ କାରଖାନାର ଅଧୋଗତି ଯେ ଅନିବାର୍ଯ୍ୟ ଏଥିରେ ସନ୍ଦେହ ନାହିଁ । **ତେଣୁ ମୁମୁକ୍ଷୁ ନିରପେକ୍ଷ ଭାବରେ ସଂସାରର ମାୟିକ ପଦାର୍ଥକୁ ତ୍ୟାଗ ନ କରିବା ପର୍ଯ୍ୟନ୍ତ, ତା'ର ଉନ୍ନତି ହେବ ନାହିଁ । ମାୟାଗ୍ରସ୍ତ ଥିବାଯାଏ ସେ ଜନ୍ମମରଣ ଚକ୍ରରେ ହିଁ ଘୂରିବୁଲୁଥିବ ।**

ସୂତ କହୁଛନ୍ତି, ହେ ମୁନିଗଣ ! ସୂର୍ଯ୍ୟଙ୍କଠାରୁ ଲାଭ କରିଥିବା ଶିକ୍ଷା ସମ୍ବନ୍ଧରେ ରାଜା ଯଦୁଙ୍କୁ ବୁଝାଇବାକୁ ଯାଇ ଅବଧୂତ କହିଲେ, "ହେ ରାଜନ୍ ! ସୂର୍ଯ୍ୟଙ୍କଠାରୁ ମୁଁ ଅନାସକ୍ତ ଭାବନା ଓ ଆତ୍ମାର ଅପରିଚ୍ଛିନ୍ନତା ଶିକ୍ଷା ଗ୍ରହଣ କରିଛି । ସୂର୍ଯ୍ୟ ନିଜର କିରଣ ସାହାଯ୍ୟରେ

---

★ ଆତ୍ମାର ସଙ୍ଗ ନାହିଁ ତେଣେ । ଆଦିତ୍ୟ ଯେସନେ କିରଣେ ॥
ସକଳ ସ୍ଥାନୁ ରସ ହରେ । ନିର୍ଦ୍ଦୋଷ ନିର୍ଲେପ ବିଚାରେ ॥
କାଳରେ ସମସ୍ତ ତେଜଇ । ସଞ୍ଚିତ ଦାନେ କ୍ଷୋଭ ନୋହି ॥
ଏ ଜୀବ ଆତ୍ମା ସର୍ବ ଦେହେ । ଇନ୍ଦ୍ରିୟ ରସେ ବଶ ନୋହେ ॥
ଯେମନ୍ତେ ରବିବିମ୍ବ ନୀରେ । ତେମନ୍ତେ ସ୍ଥୂଳ ବୁଦ୍ଧି ନରେ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ ୮ମ.ଅ.]

ସମୁଦ୍ର, ନଦୀ, କୂପ, ବାପୀ, ପୁଷ୍କରିଣୀ ସହିତ ପ୍ରାଣୀମାନଙ୍କ ଶରୀରରୁ ଜଳ ଆହରଣ କରନ୍ତି। ପୃଥିବୀର ଜଳକୁ ସେ ସଞ୍ଚିତ ନ ରଖି ବର୍ଷାକାଳରେ ପୁଣି ପୃଥିବୀକୁ ଫେରାଇ ଦିଅନ୍ତି। ସେହି ଜଳରେ ପୃଥିବୀ ଶସ୍ୟଶ୍ୟାମଳା ହୁଏ, ସମଗ୍ର ଜୀବ-ଜଗତପାଇଁ ଖାଦ୍ୟ ଉତ୍ପନ୍ନ ହୁଏ। ସୂର୍ଯ୍ୟଙ୍କଠାରୁ ଶିକ୍ଷା କଲି ଯେ, ଯୋଗୀ କେବେହେଲେ କୌଣସି ବସ୍ତୁ ସଂଗ୍ରହ କରିବାର ଭାବନା ମନରେ ପୋଷଣ କରିବା ଉଚିତ ନୁହେଁ।''

ଶରୀର ଆମର ତ୍ରିଗୁଣାତ୍ମକ। ଯେଉଁ ଉପାଦାନରେ ତାହା ଗଢ଼ା ହୋଇଛି ସେହି ଉପାଦାନଦ୍ୱାରା ସେ ସୁରକ୍ଷିତ ରହେ। ଯେପରି ମାଟିର ଘରକୁ ମାଟିରେ, ଇଟାଚୂନରେ ତିଆରି ଘରକୁ ସେହି ଉପାଦାନରେ ସୁରକ୍ଷା କରାଯାଏ। ସେହିପରି 'ଅନ୍ନ'ର ବିକାରଦ୍ୱାରା ଶରୀର ସୃଷ୍ଟି ଏବଂ ତାହାର ସୁରକ୍ଷା ପାଇଁ ସେହି ଅନ୍ନହିଁ ଆବଶ୍ୟକ। ତ୍ରିଗୁଣାତ୍ମକ ଶରୀର ତିନିଗୁଣର ଅନୁବର୍ତ୍ତନଶୀଳ ଇନ୍ଦ୍ରିୟମାନଙ୍କଦ୍ୱାରା ପରିଚାଳିତ। ତେଣୁ ଯୋଗୀ ଇନ୍ଦ୍ରିୟଗ୍ରାହ୍ୟ ପଦାର୍ଥରେ ଆସକ୍ତ ହେବା ଉଚିତ ନୁହେଁ। ସୂର୍ଯ୍ୟଙ୍କଠାରୁ ଏହିପରି ଅନାସକ୍ତତା ଶିକ୍ଷାଲାଭ କରିଥିବାରୁ ସେ ମୋର ଗୁରୁ।''

ଅପରିଚ୍ଛନ୍ନତା ପ୍ରସଙ୍ଗରେ ରାଜାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ କହିଲେ, ''ରାଜନ୍! ଦିନେ ଦେଖିଲି ହଜାରେ ଜଳପୂର୍ଣ୍ଣ ପାତ୍ର ରଖାଯାଇଛି। ସେଥିରୁ କେତୋଟି ଛୋଟ ପାତ୍ର ଓ କେତୋଟି ବଡ଼ପାତ୍ର। ରଙ୍ଗବେରଙ୍ଗର ଜଳ ସେ ସବୁ ପାତ୍ରରେ ପୂରି ରହିଛି। ସୂର୍ଯ୍ୟଙ୍କ ପ୍ରତିବିମ୍ବ ସବୁ ପାତ୍ରରେ ପଡ଼ୁଛି। ଛୋଟ ପାତ୍ରରେ ସୂର୍ଯ୍ୟଙ୍କ ଆକାର ଛୋଟ ଏବଂ ବଡ଼ ପାତ୍ରରେ ବଡ଼ ଆକର ଦେଖାଯାଉଛି। ପାତ୍ରସ୍ଥ ଜଳର ରଙ୍ଗ ଅନୁସାରେ ସୂର୍ଯ୍ୟଙ୍କ ପ୍ରତିବିମ୍ବ ସେହି ରଙ୍ଗ ଧାରଣ କରିଛି। ସେଥିରୁ ଜାଣିଲି **ଆତ୍ମା ହେଉଛି ଏକ ଓ ଅପରିଚ୍ଛନ୍ନ। ନାମର ଭିନ୍ନତା ହେତୁ ତାହା, ସ୍ଥୂଳବୁଦ୍ଧିଶୀଳଙ୍କଠାରେ ଭିନ୍ନ ଭିନ୍ନ ବୋଲି ପ୍ରତୀତ ହେଉଛି।** ହାତୀ ଦେହରେ ଆତ୍ମାର ଆକାର ବଡ଼ ଦେଖାଗଲାଣିତ ପିମ୍ପୁଡ଼ିଠାରେ ଅତି କ୍ଷୁଦ୍ର ଓ ପୃଥକ୍‌ଭାବେ ହେଉଛି। ଏ ପ୍ରକାର ଦ୍ୱୈତ ଭାବନା ଓ ପରିଚ୍ଛନ୍ନତା ବିଚାର ଅଜ୍ଞାନ ବ୍ୟକ୍ତି ହିଁ କରିଥାଏ। ସୂର୍ଯ୍ୟ ଯେପରି ଏକରୂପରେ ଆକାଶରେ ଥାଇ ମଧ୍ୟ ପାତ୍ରସ୍ଥ ଜଳରେ ଭିନ୍ନ ଭିନ୍ନ ଭାବେ ପ୍ରତୀତ ହୁଅନ୍ତି ସେହିପରି ଆତ୍ମା ଭିନ୍ନ ଭିନ୍ନ ଜୀବରେ ପୃଥକ୍ ବୋଲି ଜଣା ପଡ଼ନ୍ତି।''

ସୂତମୁନି କହିଲେ, ''ଅବଧୂତ ରାଜାଙ୍କୁ ବୁଝାଇବାକୁ ଯାଇ କିପରି କପୋତ ପକ୍ଷୀକୁ ଗୁରୁଭାବେ ଗ୍ରହଣ କରିଥିଲେ ତାହା ମୁଁ ବର୍ଣ୍ଣନା କରୁଛି। ହେ ମୁନିଗଣ! କପୋତ ପ୍ରସଙ୍ଗ ସ୍ଥିରଚିତ୍ତରେ ଶ୍ରବଣ କରନ୍ତୁ।''

### ଛପ୍‌ପୟ

ଜଳ ପାତ୍ରନି ମହିଁ ପୃଥକ୍ ସୂର୍ଯ୍ୟ ବହୁ ରୂପ ଲଖାବୈ।
ଟେଢ଼େ ମେଢ଼େ ଗୋଲ ପାତ୍ର ଅନୁରୂପ ଦିଖାବୈ॥
ପ୍ରତିବିମ୍ବିତ ଲଖି ଅଜ୍ଞ ପାତ୍ର ମହିଁ ରବି ହିଁ ଜନାବୈ।
କହେ ଅଜ୍ଞ ପରିଚ୍ଛିନ୍ନ ବହୁତ କଲି ତାହି ବତାବୈ॥
ସୂର୍ଯ୍ୟ ବିମ୍ବ ସମ ମୁନି କହୈ, ଆତ୍ମା ଅଦ୍ୱୟ ସର୍ବଗତ।
ଅବ କପୋତ ଲୟୋ ଗୁନ, କହୁଁ ତାହି ନୃପ ଦେଉ ଚିତ॥



# କପୋତପକ୍ଷୀ ଗୁରୁ ମୋର

ନାତିସ୍ନେହଃ ପ୍ରସଙ୍ଗୋ ବା କର୍ତ୍ତବ୍ୟଃ କ୍ୱାପି କେନଚିତ୍ ।
କୁର୍ବନ୍ ବିନ୍ଦେତ ସନ୍ତାପଂ କପୋତ ଇବ ଦୀନଧୀଃ ।। ★

[ଶ୍ରୀଭା.୧୧ସ୍କ, ୭ଅ, ୫୨ଶ୍ଳୋକ]

**ଛପ୍‌ପୟ**

କାଉ ବନକେ ସଘନ ବୃକ୍ଷପୈ ରହୈ କବୂତର ।
ପତ୍ନୀ ତାକୀ ରୂପବତୀ ଗୁଣ ତାମେ ସୁନ୍ଦର ।।
କରୈ ପରସ୍ପର ପ୍ରେମ ରାଗ ନବ ନିତ୍ୟ ଦୃଢ଼ାବୈ ।
ମିଲି ଜୁଲି ସଙ୍ଗ ସଙ୍ଗ ଫିରେ ସଂଗ ମେ ସୋବୈ ଖାବୈ ।।
କଛୁକ କାଲ ମେ ଟାର ସୁତ, ଜନେ ନେହ ଦମ୍ପତି କରୈ ।
ଶିଶୁ କଲରବ କୋମଲ ପରସ, ତେ ଦୋଉନିକେ ହିୟ ଭରୈ ।।

ଜଳୁଥିବା ସଳିତାରେ ତେଲ ଅଂଶ ଯେତେ ବେଶୀ ଥିବ, ତାହା ସେତିକି ଅଧିକ କାଳପର୍ଯ୍ୟନ୍ତ ଜଳିବ । ସେହିପରି, ସଂସାରରେ ଦୁଃଖର କାରଣ ହେଉଛି ମୋହ, ଆସକ୍ତି, ଅନୁରାଗ ଓ ମମତା । ଯାହାଠାରେ ଯେତିକି ଅନୁରାଗ ଥିବ ତାହାର ବିୟୋଗରେ ସେତିକି କଷ୍ଟ ହେବ । ରାବଣ ଦ୍ୱାରା ଅପହୃତା ସୀତା ଲଙ୍କା ଅବସ୍ଥାନ କାଳରେ ଶ୍ରୀରାମଚନ୍ଦ୍ରଙ୍କ ବିରହରେ କାନ୍ଦି କାନ୍ଦି କହିଥିଲେ, 'ସେ ବନବାସୀ, ତ୍ୟାଗୀ, ତପସ୍ୱୀ, ବୀତରାଗୀ ଓ ମହାତ୍ମା । ତାଙ୍କର ପ୍ରିୟ ଅପ୍ରିୟ ଭାବ ନାହିଁ । ପ୍ରିୟ ସଂସର୍ଗରେ ହର୍ଷ ନାହିଁ କି ବିଚ୍ଛେଦରେ ବିଷାଦ ନାହିଁ । ଯେଉଁ ଶ୍ରୀରାମ ଏଭଳି ବୀତରାଗୀ ଓ ମହାତ୍ମା, ମୁଁ ତାଙ୍କୁ ପ୍ରଣାମ ଜଣାଉଛି ।' ଆମ୍ଭେମାନେ ବ୍ୟକ୍ତି ବା ବସ୍ତୁର ସଂଯୋଗ ବା ବିୟୋଗରେ ସୁଖୀ ବା ଦୁଃଖୀ ହେଉ ନାହେଁ । କିନ୍ତୁ, ସେହି ବ୍ୟକ୍ତି ବା ବସ୍ତୁଠାରେ ଯେଉଁ ଅନୁରାଗ ଥାଏ ତାହା ହିଁ ସୁଖ ବା ଦୁଃଖର ମୂଳ କାରଣ । ତେଣୁ କେବେହେଲେ କୌଣସିଠାରେ ବିଶେଷ ଅନୁରକ୍ତ ହେବା ଉଚିତ ନୁହେଁ, ତାହା ହେଲେ ହିଁ ଯେ କେହି ଏକାକୀ ସ୍ୱଚ୍ଛନ୍ଦରେ ବିଚରଣ କରିପାରିବ ।

ସୂତମୁନି କହୁଛନ୍ତି— ଅବଧୂତ କପୋତ ପକ୍ଷୀଠାରୁ ପାଇଥିବା ଶିକ୍ଷା ପ୍ରସଙ୍ଗରେ ବୁଝାଇବାକୁ ଯାଇ ରାଜାଙ୍କୁ କହିଲେ, ''ହେ ରାଜନ୍ ! କପୋତଠାରୁ ମୁଁ ଯଥାର୍ଥ ବୈରାଗ୍ୟ

---



ଅଧିକେ ସଂସାର ସଙ୍ଗତେ । ପୀରତି ନ କରିବ ଚିତ୍ତେ ।।
ଯେବେ କରିବ ସ୍ନେହ ଆଶ । କପୋତ ପ୍ରାୟ ହେବ ନାଶ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ଶ.ସ୍କନ୍ଧ ୮ମ.ଅ.]

ଶିକ୍ଷା ଗ୍ରହଣ କରିଛି। ଅସଙ୍ଗତା ଓ ବୈରାଗ୍ୟ ହେଉଛି ଯୋଗୀ-ଜୀବନରେ ପରମ ଓ ଚରମ ଲକ୍ଷ୍ୟ। ଯାହାପ୍ରତି ଆମର ଅତ୍ୟଧିକ ଅନୁରାଗ ଜାତ ହୁଏ ତା'ର କୌଣସି କଥା ଆମକୁ ଖରାପ ଲାଗେ ନାହିଁ। ଯେଉଁ ବସ୍ତୁ ବା ବ୍ୟକ୍ତିଠାରେ ଆମର ରୁଚି ଜାତ ହୁଏ ନାହିଁ, ସେହି ବସ୍ତୁ ବା ବ୍ୟକ୍ତି ଆମକୁ ଭଲ ଲାଗନ୍ତି ନାହିଁ। ପ୍ରେମ ବାହ୍ୟବସ୍ତୁ ନୁହେଁ। ଆମର ଆନ୍ତରିକ ଅନୁରାଗକୁ ପ୍ରେମ କୁହାଯାଏ, ଦର୍ପଣରେ ଯେପରି ନିଜର ପ୍ରତିବିମ୍ବ ପ୍ରତିଫଳିତ ହୁଏ। ସେ ଅସୁନ୍ଦର ହୋଇଥିଲେ ସୁନ୍ଦର ଦେଖାଯାଏ ଏବଂ କ୍ରୋଧୀ ହୋଇଥିଲେ ବି ତା'ର କ୍ରୋଧ ଅମୃତ ଭଳି ମଧୁର ଲାଗେ। **ଭଲ ଓ ମନ୍ଦ ବସ୍ତୁରେ ନ ଥାଏ। ଭଲ ଓ ମନ୍ଦ ବିଚାର ମନର ଧର୍ମ।** ଆମେ ଯାହାକୁ ମନ୍ଦ କହୁ ଅନ୍ୟମାନେ ତା'ପାଇଁ ପ୍ରାଣ ଦିଅନ୍ତି। ସେହିପରି ଆମେ ଯାହାକୁ ଭଲ ବୋଲି ଗ୍ରହଣ କରୁ ଅନ୍ୟମାନେ ତାକୁ ସବୁଠାରୁ ଘୃଣା ଦୃଷ୍ଟିରେ ଦେଖନ୍ତି। ରାଗ ଓ ଦ୍ୱେଷ ଅନ୍ତଃକରଣର ଧର୍ମ। ଏକ ପ୍ରତି ଯେ ଆସକ୍ତ ହେବ, ସେ ନିଶ୍ଚୟ ଅନ୍ୟକୁ ଘୃଣା କରିବ। ଜଣକ ପ୍ରତି ଆମର ଅନୁରାଗ ଅଛି, କିନ୍ତୁ ମଝିରେ ଯଦି ଦ୍ୱିତୀୟ କେହି ଆସିଯାଏ, ତେବେ ତା'ପ୍ରତି ଆମର ଦ୍ୱେଷଭାବ ଜାଗ୍ରତ ହୁଏ। ସେଥିପାଇଁ ନିଜର ଆଖି ଆଗରେ କପୋତର ପରିଣତି ଦେଖି ଏହି ସିଦ୍ଧାନ୍ତରେ ପହଞ୍ଚିଲି ଯେ, କାହାରି **ସହିତ ଅଧିକ ସ୍ନେହ ସମ୍ବନ୍ଧ ରଖିବା ଉଚିତ ନୁହେଁ। ସ୍ନେହ କଲେ ପରେ ଅନେକ କଷ୍ଟ ଭୋଗ କରିବାକୁ ପଡ଼େ। ସ୍ନେହ କରୁଥିବା ବ୍ୟକ୍ତିର ଯେପରି କିଛି ଅସୁବିଧା ନ ହେବ ସେଥିପାଇଁ ନିରନ୍ତର ଚିନ୍ତା ଜାଗ୍ରତ ହୁଏ। ତେଣୁ ଆସକ୍ତି ଦ୍ୱାରା ମାନବର ପ୍ରକୃତ ଦାରିଦ୍ର୍ୟ ସୃଷ୍ଟି ହୁଏ।** ଫଳରେ ସିଂହ ବି ଶୃଗାଳ ପାଲଟିଯାଏ। ଶେଷରେ ତାକୁ ଛଟପଟ ହୋଇ କପୋତ ଭଳି ମରିବାକୁ ପଡ଼େ। ଆଖି ଆଗରେ କପୋତର ମୃତ୍ୟୁ ଦେଖି ମୋ ମନରେ ବୈରାଗ୍ୟ ଉଦୟ ହୋଇଛି। ମୁଁ କପୋତକୁ ଗୁରୁଭାବେ ଗ୍ରହଣ କରିଛି।''

ରାଜା କହିଲେ, ''ବ୍ରହ୍ମନ୍! ଆପଣ କପୋତକୁ ମରିବାର କେଉଁଠି ନିଜେ ଦେଖିଲେ ? ସେ କପୋତଟି କିଏ ? କେଉଁଠି ରହୁଥିଲା ? କିଏ ତା' ପ୍ରତି ଅନୁରକ୍ତ ହେଲା, ଏବଂ ଶେଷର ସେ କାହିଁକି ମୃତ୍ୟୁ ବରଣ କଲା ? ସେ ସମସ୍ତ ଦୟାକରି ମୋତେ ବୁଝାଇ ଦିଅନ୍ତୁ।''

ଅବଧୂତ ମୁନି ଉତ୍ତର ସ୍ୱରୂପ କହିଲେ, ''ଅତ୍ୟନ୍ତ ଆସକ୍ତିର ପରିଣାମ କିପରି ଦୁଃଖଦାୟକ ତାହା ଶୁଣନ୍ତୁ। କୌଣସି ଏକ ବନରେ ଫଳପୁଷ୍ପ ସମନ୍ୱିତ ଛାୟା ଶୀତଳ ବୃକ୍ଷଟିଏ ଥିଲା। ସେହି ଗଛରେ କପୋତଟିଏ ବସା ବାନ୍ଧି ରହିଥିଲା। ସୌଭାଗ୍ୟ ହେଉ ବା ଦୁର୍ଭାଗ୍ୟ ହେଉ ସୁନ୍ଦରୀ କପୋତୀଟିଏ ସେଠାରେ ପହଞ୍ଚିଲା। ଉଭୟ ପରସ୍ପର ପ୍ରତି ଆକୃଷ୍ଟ ହୋଇ ପ୍ରେମପାଶରେ ଆବଦ୍ଧ ହୋଇପଡ଼ିଲେ। ପରସ୍ପରର ସ୍ନେହବନ୍ଧନ ଦୃଢ଼ରୁ ଦୃଢ଼ତର ହେଲା। ଉଭୟ ଅତ୍ୟଧିକ ଆନନ୍ଦମଗ୍ନ ହୋଇ ସଂସାରକୁ ଭୁଲିଗଲେ। ଅନୁରାଗ ବଶତଃ ପରସ୍ପର ଏକ ମନ ଓ ଏକ ହୃଦୟ ହୋଇଗଲା। କେହି କାହାରି କ୍ଷଣମାତ୍ର ବିରହ ସହି ପାରୁ ନ ଥିଲେ। କପୋତୀକୁ ପ୍ରସନ୍ନ ରଖିବା ହେଲା କପୋତ ଜୀବନର ଚରମ ଲକ୍ଷ୍ୟ। ଏହି ଭାବରେ ସମୟର ଚକ ଗଡ଼ି ଚାଲିଲା।

କପୋତୀଟି ଯଥାସମୟରେ ଗର୍ଭବତୀ ହେଲା। ଗର୍ଭାବସ୍ଥାରେ କପୋତୀର ସମସ୍ତପ୍ରକାର ସୁଖ ସୁବିଧାପାଇଁ କପୋତ ଅଧିକରୁ ଅଧିକ ଯତ୍ନ କଲା। ଗର୍ଭକାଳ ପୂର୍ଣ୍ଣ ହେବାପରେ କପୋତୀ ଚାରୋଟି ଅଣ୍ଡା ପ୍ରସବ କଲା। କପୋତ ସ୍ନେହରେ ସେ ଅଣ୍ଡାଗୁଡ଼ିକ ଉଷୁମେଇବାରେ ବ୍ୟସ୍ତ ରହିଲା। ଠିକ୍ ସମୟରେ ଅଣ୍ଡାଗୁଡ଼ିକ ଆପେ ଆପେ ଫୁଟିଗଲା ଏବଂ ଚାରୋଟି

କଅଁଳିଆ ଛୁଆ ବାହାରି ଆସିଲେ। କିଛି ଦିନ ପରେ ସେଗୁଡ଼ିକର ଆଖି ଫିଟିଲା, ଡେଣା ବାହାରିଲା ଏବଂ ଚେଁ ଚାଁ ଶବ୍ଦ ଶୁଣାଗଲା। କପୋତ-କପୋତୀ ସେହି କୋମଳ ସୁନ୍ଦର ଶିଶୁଗୁଡ଼ିକର ସରସ ଶବ୍ଦ ଶୁଣି ଆନନ୍ଦିତ ହେବା ସଂଗେ ସଂଗେ ନିଜ ଜୀବନକୁ ଧନ୍ୟ ମନେ କଲେ। ଧୀରେ ଧୀରେ ସେଗୁଡ଼ିକ ବଡ଼ ହେଲେ ଏବଂ ଶିଶୁ ସୁଲଭ ହାବଭାବ ଦ୍ୱାରା ପିତାମାତାଙ୍କ ହୃଦୟକୁ ଆନନ୍ଦ ରସରେ ପରିପୂର୍ଣ୍ଣ କରିଦେଲେ।

''କପୋତ ଓ କପୋତୀ ଦୁହେଁ ଭଗବାନଙ୍କ ମାୟାରେ ଅନ୍ଧ ହୋଇ ସେହି ଶିଶୁଗୁଡ଼ିକର ପାଳନ ପୋଷଣ କାର୍ଯ୍ୟରେ ହିଁ କାଳ ଅତିବାହିତ କରିବାକୁ ଲାଗିଲେ। ନିଜ ସନ୍ତାନଙ୍କର ସୁରକ୍ଷା ଚିନ୍ତାରେ ସର୍ବଦା ବ୍ୟସ୍ତ ଓ ବିବ୍ରତ ହେଲେ। ଦିନେ କପୋତୀ କହିଲା, 'ପିଲାମାନେ ବଡ଼ ହୋଇଗଲେଣି। ତୁମକୁ ବର୍ତ୍ତମାନ ବହୁ କଷ୍ଟ କରିବାକୁ ପଡୁଛି। ତେଣୁ ମୁଁ ମଧ୍ୟ ତୁମ ସହିତ ଖାଦ୍ୟ ସଂଗ୍ରହପାଇଁ ଯିବି।' କପୋତ କହିଲା, 'ବାଧ୍ୟ ହୋଇ ଅନ୍ୟର କାମ କରିବାକୁ ବସିଲେ କଷ୍ଟ ନିଶ୍ଚୟ ହେବ। କିନ୍ତୁ ନିଜ କାମରେ ତାହା ହୁଏ ନାହିଁ। କାରଣ ନିଜକାମରେ କଷ୍ଟହେଲେ ବାପା ଓ ମା' ପିଲାମାନଙ୍କର ଲାଳନ ପାଳନ କାର୍ଯ୍ୟକୁ ମଧ କଷ୍ଟକର ମନେ କରନ୍ତେ। କିନ୍ତୁ ମା' ନିଜ ଛୁଆକୁ ଖୁଆଇବା, ପିଆଇବା ଓ ଯତ୍ନନେବାରେ ଦୁଃଖ ବା କଷ୍ଟ ଅନୁଭବ କରେନାହିଁ, ବରଂ ଅଧିକ ସୁଖ ଓ ଆନନ୍ଦ ଲାଭ କରିଥାଏ। ଯେଉଁଠି ଆତ୍ମୀୟତା ରହିଛି ସେଠାରେ କଷ୍ଟ ହୁଏ ନାହିଁ। ତୁମପାଇଁ ଓ ପିଲାଙ୍କପାଇଁ ଦାନା ସଂଗ୍ରହ କରିବା ମୋର କର୍ତ୍ତବ୍ୟ।'

''ପ୍ରିୟ ପ୍ରାଣନାଥଙ୍କ କଥା ଶୁଣି କପୋତୀ କହିଲା, 'ଭାର୍ଯ୍ୟା ହେଉଛି ଅର୍ଦ୍ଧାଙ୍ଗିନୀ। ପତ୍ନୀ ନିଜର ସାମର୍ଥ୍ୟ ଥିବାଯାଏ ସ୍ୱାମୀର କଷ୍ଟକୁ ସହିପାରେ ନାହିଁ। ଏ ପର୍ଯ୍ୟନ୍ତ ମୁଁ ଅସମର୍ଥ ଥିଲି। ତୁମ କାମରେ ସାହାଯ୍ୟ କରିପାରୁ ନ ଥିଲି। ତୁମେ ଏକା ଛ'ପ୍ରାଣୀଙ୍କର ଖାଦ୍ୟ ସଂଗ୍ରହ କରୁଥିଲ। ମୁଁ ବର୍ତ୍ତମାନ ସୁସ୍ଥ ଓ ସମର୍ଥ। ତୁମ କାନ୍ଧ ସହିତ କାନ୍ଧ ମିଳାଇ ତୁମ କାମରେ ସାହାଯ୍ୟ କରି ପାରିବି।' ବହୁଭାବରେ ବୁଝାଇଲେ ମଧ୍ୟ କପୋତୀ ମାନିଲା ନାହିଁ। ଶେଷରେ ସେ କପୋତ ସହିତ ଖାଦ୍ୟସଂଗ୍ରହ ନିମିତ୍ତ ବାହାରକୁ ଗଲା। ପୁତ୍ର ପ୍ରତି ପିତାଙ୍କ ଅପେକ୍ଷା ମାଆର ଅଧିକ ସ୍ନେହ ଥାଏ। କପୋତୀ ବାହାରକୁ ଗଲେ ମଧ୍ୟ ମନ ତା'ର ପିଲାମାନଙ୍କ ପାଖରେ ଥାଏ। ସନ୍ଧ୍ୟାରେ ବସାକୁ ଫେରି ସେ ପିଲାମାନଙ୍କୁ ଖୁଆଏ, ପିଆଏ ଓ ତାଙ୍କ ସଙ୍ଗେ ଖେଳେ।

''ଦିନକର କଥା। କପୋତ କପୋତୀ ଦୁହେଁ ଆହାରପାଇଁ ବହୁଦୂରକୁ ଚାଲିଯାଇଥିଲେ। ଦୈବବଶତଃ ସେଦିନ ବିଶେଷ କିଛି ଖାଦ୍ୟ ମିଳିଲା ନାହିଁ। ବହୁବେଳ ଯାଏ ଦୁହେଁ ବନରେ ଏପାଖ ସେପାଖ ବୁଲିବାକୁ ଲାଗିଲେ। ସେହି ବଣରେ ବ୍ୟାଧଟିଏ ରହୁଥିଲା। ସେ ଏଇ ଚଢ଼େଇ ଛୁଆ ଗୁଡ଼ିକୁ ଶିକାର କରିବାପାଇଁ ସୁଯୋଗ ଉଣ୍ଡୁଥିଲା। କପୋତ କପୋତୀ ଦୂରକୁ ଚାଲିଯାଇଥିବାର ସୁଯୋଗ ନେଇ ଗଛତଳେ ଜାଲ ବିଛାଇ ଦେଲା। ସେହି ଜାଲ ତଳେ ସୁନ୍ଦର ସୁନ୍ଦର ଦାନା ବିଞ୍ଚିଦେଲା। ଛୋଟ ଛୁଆଗୁଡ଼ିକ ଅତି ସରଳ। ନିଜର କୃତିତ୍ୱଦ୍ୱାରା ବାପା ମା'ଙ୍କୁ ଆଶ୍ଚର୍ଯ୍ୟ କରିଦେବା ଏବଂ ତା' ବଦଳରେ ପ୍ରଶଂସା ଲାଭ କରିବାପାଇଁ ପ୍ରତ୍ୟେକ ଛୋଟ ପିଲା ଉତ୍ସୁକ ହୋଇଗଲେ। ଗଛ ଉପରୁ ତଳେ ଦାନା ପଡ଼ିଥିବାର ଦେଖି ପିଲାଗୁଡ଼ିକ ଉଡ଼ି ଆସିଲେ। ଶେଷରେ ସେହି ଜାଲରେ ପଡ଼ି ଛଟପଟ ହେବାକୁ ଲାଗିଲେ।

''ସନ୍ଧ୍ୟା ହେବାରୁ କପୋତ କପୋତୀ ଅତି ଆଗ୍ରହରେ ପିଲାମାନଙ୍କ କଥା ମନେ ପକାଇ ଚିନ୍ତିତ ମନରେ ବସାକୁ ଫେରିଆସିଲେ। ସେଠାରେ ପହଞ୍ଚି ସେମାନେ ଯାହା ଦେଖିଲେ, ସେଥିରେ ତାଙ୍କ ହୃଦୟ ଫାଟି ପଡ଼ିଲା। ଚାରୋଟି ପିଲା ଜାଲରେ ପଡ଼ି ଛଟପଟ ହେଉଛନ୍ତି। ଯେତେ ଚେଷ୍ଟା କଲେ ବି ପାଦ ଜାଲରୁ ବାହାର କରି ପାରୁ ନଥା'ନ୍ତି। ଅତି କରୁଣ ଭାବରେ ଶବ୍ଦ କରୁଥା'ନ୍ତି। କପୋତୀ ବିକଳ ହୋଇ ପିଲାମାନଙ୍କ ପାଖକୁ ଉଡ଼ିଗଲା ଓ ଜାଲରେ ପଡ଼ିଗଲା। ଛୁଆମାନଙ୍କ ଦୁଃଖରେ କପୋତୀ ଏଭଳି ମୁହ୍ୟମାନ ହୋଇପଡ଼ିଲା ଯେ, ସେ ନିଜେ ଜାଲରେ ପଡ଼ିଥିବା କଥା ଜାଣିପାରିଲା ନାହିଁ। ଏଣେ କପୋତ ନିଜର ପ୍ରାଣପ୍ରିୟା ଶିଶୁଗୁଡ଼ିକ ମୃତ୍ୟୁମୁଖ ଆଡ଼କୁ ଅଗ୍ରସର ହେଉଥିବାର ଦେଖି ପଛକୁ ଢଳିପଡ଼ିଲା। ଅତି ଦୁଃଖରେ କାନ୍ଦି କାନ୍ଦି କହିବାକୁ ଲାଗିଲା 'ହାୟ, ଆଜି ମୋର କପାଳ ଫାଟିଲା। ମୋର ସବୁ ପୁଣ୍ୟ ଓ ସୁକୃତ ସରିଗଲା। ମୋର ମନ ଏଯାଏ ସଂସାର ସୁଖରେ ତୃପ୍ତି ପାଇ ନ ଥିଲା। ପିଲାମାନେ ବଡ଼ ହୋଇ ନଥିଲେ। ସେମାନଙ୍କର ବିବାହ, ପୁତ୍ରବଧୂ, ନାତି ନାତୁଣୀ କିଛି ଦେଖି ପାରିଲି ନାହିଁ। ଏତେ ଶୀଘ୍ର ଦୈବ ମୋର ଏପରି ଦୁର୍ଦ୍ଦଶା ଘଟାଇଲା। ମୋ ଗ୍ରାର୍ହସ୍ଥ୍ୟ ଜୀବନ କେତେ ସୁଖରେ କଟୁଥିଲା। ଧର୍ମ, ଅର୍ଥ ଓ କାମରୂପ ତ୍ରିବର୍ଗର ମୂଳ ହେଉଛି ଗୃହସ୍ଥାଶ୍ରମ। ଆଜି ମୋର ସର୍ବସ୍ୱ ଗଲା। ଘରଗଲା, ସ୍ତ୍ରୀ ଓ ପିଲା ଗଲେ। ଗୃହସ୍ଥ ଧର୍ମର ମୂଳ ହେଉଛି ପତ୍ନୀ। ତେଣୁ ପତ୍ନୀକୁ ଗୃହଲକ୍ଷ୍ମୀ କହନ୍ତି। ସେ ଥିଲେ ଅତିଥି ଅଭ୍ୟାଗତଙ୍କ ନିମିତ୍ତ ଗୃହର ଦ୍ୱାର ମୁକ୍ତ ରହେ। ପରସ୍ପର ମଧ୍ୟରେ କଳିତକରାଳ ଯେତେ ଯାହାହେଲେ ବି ନିଜର ପତ୍ନୀ ନିଜର ହୋଇ ରହେ। ସେଥିପାଇଁ କର୍କଶଭାଷିଣୀ ସ୍ତ୍ରୀଙ୍କୁ ମଧ୍ୟ ତ୍ୟାଗ କରାଯାଏ ନାହିଁ। ପତ୍ନୀ ପତିବ୍ରତା, ସୁଶୀଳା, ସୁନ୍ଦରୀ ଓ ଅଜ୍ଞାକାରିଣୀ ହୋଇଥିବା ଲୋକ ସବୁଠୁ ଭାଗ୍ୟବାନ୍। ମୋର ପତ୍ନୀ ଥିଲା ସେହିଭଳି। ମୋତେ ଛାଡ଼ି ସେ ପିଲାମାନଙ୍କ ସହିତ ସିଧା ସ୍ୱର୍ଗକୁ ଯାଉଛି। ମୁଁ ଆଉ ଏ ଶୂନ୍ୟ ଗୃହରେ ଏକା ରହି କରିବି କ'ଣ ? ଅତୀତର ସ୍ମୃତି ମଧ୍ୟରେ ସେମାନଙ୍କଠାରୁ ପୃଥକ୍ ହୋଇ ଜୀବନ ଧାରଣ କରିବି କିପରି ? ଗୃହିଣୀ ବିନା ଗୃହ ଅରଣ୍ୟ ସହିତ ସମାନ। ସଂସାରରେ ସ୍ତ୍ରୀହୀନ ପୁରୁଷ ଓ ବିଧବା ସ୍ତ୍ରୀ ବଞ୍ଚିବା ନିରର୍ଥକ। ଏବେ ମୋର ମଧ୍ୟ ଏମାନଙ୍କ ସହିତ ଜୀବନ ତ୍ୟାଗ କରିବା ଉଚିତ୍।'

ମହାମୁନି ଅବଧୂତ ଯଦୁରାଜଙ୍କୁ କହୁଛନ୍ତି, ''ରାଜନ୍ ! ଉକ୍ତ ଘଟଣାଟି ମୂଳରୁ ଶେଷ ପର୍ଯ୍ୟନ୍ତ ମୁଁ ଦେଖିଛି। ମୁଁ ଯେତେବେଳେ ସେହି ଗଛ ତଳବାଟେ ଆସେ ସେତେବେଳେ ତାଙ୍କ ଆନନ୍ଦସୂଚକ ମଧୁର କୂଜନ ଶୁଣିଛି। ପୁଣି ଜାଲରେ ପଡ଼ି ମା' ଓ ଛୁଆଗୁଡ଼ିକ ଯେତେବେଳେ ଛଟପଟ ହେଉଥିଲେ ସେତେବେଳେ ଜାଣିଶୁଣି ଅବିଚାରିତଭାବେ କପୋତଟି ସେହି ଜାଲକୁ ଡେଇଁ ପଡ଼ିଲା। ନିକଟରେ ଲୁଚିରହିଥିବା ବ୍ୟାଧ ଏ ଦୃଶ୍ୟରେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲା। ସେ ଜାଲପାଖକୁ ଯାଇ ଗୋଟିଏ ପରେ ଗୋଟିଏ ପକ୍ଷୀର ମୁଣ୍ଡକୁ ମୋଡ଼ି ଝୁଲାରେ ରଖିଲା ଏବଂ ଜାଲ ଗୋଟାଇ ନିଜ ଘରକୁ ଫେରିଲା। ଏହିଭଳି ସ୍ୱେଚ୍ଛା ମରଣ ଦେଖି ମୋର ବୈରାଗ୍ୟ ଜାତ ହେଲା। ମୁଁ ଭାବିଲି— ପ୍ରାଣୀ ନିଜେ ନିଜେ ମୋହର ଜାଲ ବିସ୍ତାର କରୁଛି। ଅନ୍ୟକୁ ଆଦର ପ୍ରେମ କରୁଛି, ପୁଣି ଶେଷରେ ନିଜେ ଦୁଃଖ ପାଉଛି। ମୋହ ଏପରି ଏକ ସୁଦୃଢ଼ ଜାଲ ଯେ, ଥରେ ସେଥିରେ ପଡ଼ିଗଲେ ମୁକ୍ତି ପାଇବା ଆଦୌ ସମ୍ଭବ ନୁହେଁ। କୁଟୁମ୍ବ ପ୍ରତି ଅତ୍ୟନ୍ତ ଆସକ୍ତ ଲୋକର ଚିତ୍ତ ସର୍ବଦା ଅଶାନ୍ତ ରହେ। ସେ ସବୁବେଳେ ସୁଖଦୁଃଖ, ଜୀବନ ମରଣ, ହର୍ଷଶୋକାଦି ଦ୍ୱନ୍ଦ୍ୱରେ ଜଡ଼ିତ ରହେ,

**କୁଟୁମ୍ବ ପ୍ରତିପୋଷଣରେ** ତା'ର କାଳ ଅତିବାହିତ ହୁଏ, ଏବଂ ପରେ ସେ କପୋତ ଭଳି ମୃତ୍ୟୁମୁଖକୁ ନିଜେ ନିଜେ ଆଗେଇଯାଏ। ତେଣୁ କାହାକୁ ଅତି ସ୍ନେହ କରିବା ଉଚିତ୍ ନୁହେଁ, ଏହି ଶିକ୍ଷାଲାଭ କଲି।'

"ମଣିଷ ଜନ୍ମ ଚୌରାଶୀ ଲକ୍ଷ ଯୋନିରେ ଭ୍ରମଣ ପରେ ମିଳେ। ତେଣୁ ଏ ଜନ୍ମରୁ ମୁକ୍ତିର ଦ୍ୱାରଭାବେ ଗ୍ରହଣ କରାଯାଏ। ମଣିଷ ଜନ୍ମ ପାଇ ପରମାର୍ଥ ସାଧନା ଓ ମୁକ୍ତି କାମନା ଯେ ନ କରେ ସେ ଏକ ହତଭାଗ୍ୟ। ସେ ମୁକ୍ତିର ଶେଷ ସୋପାନରେ ଉପନୀତ ହୋଇ ମଧ୍ୟ ଅଧୋଗାମୀ ହୁଏ। ତେଣୁ କପୋତଠାରୁ ମୁଁ ଏହି ଶିକ୍ଷା ପାଇଲି ଯେ, ମାନବ ଶରୀର ଲାଭ କରି କେବଳ ଘର ସଂସାର ବିଷୟ ପ୍ରତି ଅତ୍ୟନ୍ତ ଆସକ୍ତ ହେବା ଉଚିତ ନୁହେଁ।"

ରାଜା ଯଦୁ କହିଲେ, "ବ୍ରହ୍ମନ୍! ଆପଣ ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ ଓ କପୋତଠାରୁ ଯେଉଁ ଶିକ୍ଷା ଲାଭ କରିଥିଲେ ତାହା ଜାଣିଲି, ବର୍ତ୍ତମାନ ଅଜଗରଠାରୁ କି ଉପାଦେୟ ଶିକ୍ଷା ଗ୍ରହଣ କଲେ ତାହା ଦୟାକରି ବୁଝାଇ ଦିଅନ୍ତୁ।"

ମହର୍ଷି ସୂତ ଶୌନକାଦି ମୁନିମାନଙ୍କୁ କହୁଛନ୍ତି, "ମୁନିଗଣ! ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତର ଦେଇ ଦତ୍ତାତ୍ରେୟ ଅବଧୂତ ଅଜଗରୀ ବୃତ୍ତି ବିଷୟରେ ଯାହା କହିଥିଲେ ତାହା ଆପଣମାନେ ଶୁଣନ୍ତୁ। ଗୃହତ୍ୟାଗୀ, ବୀତରାଗୀ ଓ ସନ୍ନ୍ୟାସୀ ପକ୍ଷରେ ସେହି ଉପଦେଶ ଅତୀବ ଉପାଦେୟ।"

### ଛପ୍‌ପୟ

ଦୋଉ ଇକ ଦିନ ଗୟେ ଚୁଗନ ଖଗଘାତୀ ଆୟୋ।
ସୁନ୍ଦର ଶାବକ ନିରଖି କଣ ଜଲ ବିଛାୟୋ॥
ବାଲକ କଣକେ ଲୋଭ ଜାଲମହଁ ଫଁସି ଘବରାୟେ।
ତବଈ ଲୈକେ ଚୁଗୋ ତୁରତ ଦୋଜ ତହଂ ଆୟେ॥
ଲଖି କବୂତରୀ ବନ୍ଧ-ଶିଶୁ, ସ୍ୱୟଂ ଫସୀ ପତି ଫଁସି ମରୟୋ।
କରୈ ମୋହ ମୁନି କବହୁଁ ନହିଁ, ଦିବ୍ୟ ଜ୍ଞାନ ହିୟମହଁ ଧରୟୋ॥



# ମୋ’ ଶିକ୍ଷାଗୁରୁ ଅଜଗର

**ଗ୍ରାସଂ ସୁମୃଷ୍ଟ ବିରସଂ ମହାନ୍ତଂ ସ୍ତୋକମେବ ବା ।**
**ଯଦୃଚ୍ଛୟୈବାପତିତଂ ଗ୍ରସେଦାଜଗରୋଽକ୍ରିୟଃ ॥** 

[ଶ୍ରୀଭା.୧୧ସ୍କ, ୮ଅ, ୨ଶ୍ଳୋକ]

### ଛପ୍‌ପୟ

ଅଜଗର ଗୁରୁ କରି ଲଇ ସୀଖ ମାଁଗନ ନହିଁ ଜାବୈ ।
ରୂଖୋ ସୁଖୋ ଅଧିକ ନ୍ୟୂନ ପାବୈ ସୋ ଖାବୈ ॥
ଯଦି ଭୋଜନ ନହିଁ ମିଲୈ ଯାଚନା କରୈ ନ କବହୁଁ ।
ହୋହି ଚାହିଁ ଉପବାସ କରୈ ଚିନ୍ତା ନହିଁ ତବହୁଁ ॥
ଚିନ୍ତା ତୈ କାରଜ ନ କରୁ, କବହୁଁ ବନୈ ଚିତମହିଁ ଧରୈ ।
ରଚ୍ୟୋ ଉଦର ସେ ଭରୈଗୋ, ମୂରଖ ଜ୍ୟୌ ଚିନ୍ତା କରୈ ॥

ଯେଉଁ ବସ୍ତୁ ପ୍ରତି ମନରେ ଆସକ୍ତି ଜାତ ହୁଏ ତାହାର ସୁରକ୍ଷାପାଇଁ ଉଚିତ ଅନୁଚିତ ସମସ୍ତ ପ୍ରକାର କାର୍ଯ୍ୟ କରିବା ନିମିତ୍ତ ଲୋକ ଉଦ୍ୟତ ହୋଇଥାଏ । କିନ୍ତୁ ଯେଉଁଥିରେ ମମତା ନ ଥାଏ ସେହି ବସ୍ତୁ ବ୍ୟବହାର କରୁଥିଲେ ମଧ ତା’ ପ୍ରତି ସେପରି ଅଧିକ ଚିନ୍ତା କରିବାକୁ ପଡ଼େ ନାହିଁ । ସେହିପରି ଯେଉଁ ଘର ପ୍ରତି ନିଜର ସ୍ନେହ ରହିଛି ଏବଂ ଯାହାକୁ ଏକାବେଳକେ ନିଜର ଲୋକ ମନେକରେ ତାକୁ ଯତ୍ନନେବାରେ ସଜାଇବାରେ ତା’ର ସମୟ ଅତିବାହିତ ହୁଏ । କିନ୍ତୁ ଧର୍ମଶାଳା ବା ଭଡ଼ାଘର ପ୍ରତି ସେପରି ଚିନ୍ତା ଜାଗ୍ରତ ହୁଏ ନାହିଁ । କାରଣ ତାହା ନିଜର ନୁହେଁ ।

ବିଚାର କରି ଦେଖନ୍ତୁ, ନିଜ ଘର ଓ ଧର୍ମଶାଳା ଘର ମଧ୍ୟରେ କିଛି ପାର୍ଥକ୍ୟ ଅଛି କି? କାରଣ ଉଭୟ ଏକ ଉପାଦାନରେ ଗଢ଼ା । ତିଆରି କରିଥିବା ଲୋକ ସେହି ଘରୁ ଯେତିକି ସୁଖ ସୁବିଧା ପାଏ ଆମେ ବି ସେତିକି ପାଉ । କିନ୍ତୁ ସବୁକିଛି ଯାଉଥିଲେ ବି ଘରଟା ଆମ ନିଜର ହୋଇ ନ ଥିବାରୁ ଆମେ ତା’ର ଯତ୍ନ ନେବାରେ ଆଦୌ ସଚେତନ

---

 ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥
ସନ୍ତୋଷେ କରଇ ଆହାର । ଏଣେ ବିଚାର ନାହିଁ ମୋର ॥
ଅଳପ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥
କର୍ମ କଷଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ଶ.ସ୍କନ୍ଧ ୯ମ.ଅ.]

ନୋହୁଁ। ଜ୍ଞାନୀ ଓ ଅଜ୍ଞାନ ମଧ୍ୟରେ ଏହି ଅବସ୍ଥା ଦେଖାଯାଏ। ଅଜ୍ଞାନରେ ଶରୀର ପ୍ରତି ମମତା ଥିବାରୁ ତାକୁ ଆତ୍ମା ବୋଲି ଭାବି ତା'ପ୍ରତି ବିଶେଷ ଆସକ୍ତ ହୋଇଥାଏ। ସେ ଶରୀରର ଦୁଃଖକୁ ନିଜର ଦୁଃଖ ବୋଲି ଭାବେ। ଶରୀରର ରକ୍ଷା ନିମିତ୍ତ ନାନା ପ୍ରକାର କପଟ ଓ ଛଳନାର ଆଶ୍ରୟ ନିଏ। କିନ୍ତୁ ଜ୍ଞାନୀଲୋକ ଶରୀର ପ୍ରତି ଏତେ ଆସକ୍ତ ହୁଏ ନାହିଁ। ସେ ନିଜକୁ ଶରୀରଠାରୁ ପୃଥକ୍ ବୋଲି ମନେକରେ। ଶରୀରପାଇଁ ସେ ଆଦୌ ଚିନ୍ତିତ ହୁଏ ନାହିଁ। ଜ୍ଞାନୀ ଭାବେ ଯେ ପର୍ଯ୍ୟନ୍ତ ପ୍ରାରବ୍ଧ ଫଳ ଭୋଗିବାର ଥିବ ସେ ପର୍ଯ୍ୟନ୍ତ ଶରୀର ରହିବ ହିଁ ରହିବ। ସେହି ଅନୁସାରେ ଆହାର ମଧ୍ୟ ମନକୁ ମନ ମିଳିବ। ଶରୀରର ପ୍ରାରବ୍ଧ ଶେଷ ହେବାମାତ୍ରେ ଯେତେ ଯତ୍ନ ନେଲେ ବି ତାହା ରହିବ ନାହିଁ। ତେବେ ବୃଥାଟାରେ ହାୟ ହାୟ କାହିଁକି କରିବେ? ଶରୀର ରକ୍ଷାପାଇଁ ଖାଇବା ଚିନ୍ତାରେ ମୂଲ୍ୟବାନ୍ ସମୟ କାହିଁକି ନଷ୍ଟ କରିବେ?

ସୂତ କହୁଛନ୍ତି, ହେ ମୁନିଗଣ! ଯଦୁ ମହାରାଜଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅବଧୂତ ବୁଝାଇଲେ, **''ଅଜଗରକୁ ଗୁରୁ କରି ମୁଁ ପ୍ରାରବ୍ଧ ଉପରେ ନିର୍ଭର କରିବା ଶିକ୍ଷା କଲି। ଯାହା ଭାଗ୍ୟରେ ଥିବ, ଇଚ୍ଛା ନ କଲେ ବି ତାହା ଆମକୁ ମିଳିବ। ଆଉ ଯେତେ ଯତ୍ନ କଲେ ବି ଯାହା ମିଳିବାର ନୁହେଁ ତାହା ମିଳିବ ନାହିଁ।** ଖାଲି ଇଚ୍ଛା ଥିଲେ ସବୁ କିଛି ମିଳିଯାଏ ନାହିଁ। କିନ୍ତୁ ଆକାଂକ୍ଷା ନ ଥାଇ ଯାହା ମିଳେ ତାହା ହିଁ ଉଲ୍ଲେଖନୀୟ। ଧନ ଠୁଳ କରି ଧନୀ ହେବାକୁ ନ ଚାହେଁ କିଏ? ଆଉ କିଏ, ଜଗତରେ ତେଜସ୍ୱୀ, ଯଶସ୍ୱୀ ଭାବେ ପ୍ରସିଦ୍ଧ ହେବାପାଇଁ ଇଚ୍ଛା ନ କରେ? ସଂସାରରେ ଥାଇ ଜାଣି ଶୁଣି କିଏ ଜ୍ୱର, ଅର୍ଶ, ଅସାର, ଯକ୍ଷ୍ମା, ଅପସ୍ମାର, କର୍କଟ ଓ ଅନ୍ୟାନ୍ୟ ଭୟଙ୍କର ରୋଗ କାମନା କରେ? କିନ୍ତୁ ଇଚ୍ଛା ନ ଥିଲେ ବି ଏବଂ ଯେତେ ପ୍ରକାର ଯତ୍ନ ନେଲେ ବି ରୋଗ ହୁଏ। ଲୋକ ଚାହୁଁ ନ ଥିଲେ ବି ଯେପରି ରୋଗଗ୍ରସ୍ତ ହୁଏ ସେହିପରି ପ୍ରାରବ୍ଧବଶତଃ ସୁଖ ଭୋଗ ବି କରିଥାଏ। ପ୍ରାରବ୍ଧ ଫଳ ଅନୁସାରେ ଲୋକ ନର୍କରେ ଥାଇ ମଧ୍ୟ ସୁଖ ପାଏ ; ଏବଂ ସ୍ୱର୍ଗରେ ଥାଇ ଦୁଃଖ ପାଏ। ତେଣୁ, ସୁଖ-ଦୁଃଖକୁ ପ୍ରାରବ୍ଧ ଉପରେ ଛାଡ଼ିଦେଇ ନିଶ୍ଚିନ୍ତଭାବେ ଅଜଗର ଭଳି ବଞ୍ଚିରହିବା ଶ୍ରେୟସ୍କର।''

କିନ୍ତୁ ଅଜଗର ଭଳି ନିଶ୍ଚେଷ୍ଟ ହୋଇ ପଡ଼ିରହିଲେ ପେଟ ପୂରିବ କିପରି? ରାଜାଙ୍କ ଏପ୍ରକାର ପ୍ରଶ୍ନର ଉତ୍ତର ଦେଇ ଅବଧୂତ କହିଲେ, ''ଯୋଗୀ ପେଟ ବିଷୟରେ ଆଦୌ ଚିନ୍ତା କରେ ନାହିଁ। ପେଟ ନ ପୂରିଲେ ଶରୀର ନଷ୍ଟ ହୋଇଯିବ। ଯଦି ନଷ୍ଟ ହେବାର ଥିବ ହେବ। ପେଟପୂରା ହେଉ ବା ଅଧା ହେଉ ଶରୀର ନଷ୍ଟ ହେବହିଁ ହେବ। ତେଣୁ, ଜ୍ଞାନୀ ଯୋଗୀର ଶରୀର ପ୍ରତି ମମତା ନ ଥାଏ। ସେ କେବଳ ପ୍ରାରବ୍ଧ ଫଳର ପରିସମାପ୍ତିକୁ ଅପେକ୍ଷା କରେ। ଯଦି ପ୍ରାରବ୍ଧ ଭୋଗ ନିମିତ୍ତ ଶରୀର ରହିବାର ଥିବ ତେବେ ପଡ଼ି ରହିଥିଲେ ବି ଆହାର କେଉଁଠୁ ନା କେଉଁଠୁ ମିଳିବ। ଅଜଗର ପେଟ ପୂରାଇବାପାଇଁ ସିଂହ ଭଳି ଦୌଡ଼ା ଦୌଡ଼ି କରେ ନାହିଁ କି ପିମ୍ପୁଡ଼ି ଭଳି ଚାରିଆଡ଼େ ବୁଲେ ନାହିଁ। ଦେଖନ୍ତୁ, ପିମ୍ପୁଡ଼ିର କେଡ଼େ ଟିକିଏ ପେଟ। କିନ୍ତୁ ସେଇ ପେଟପାଇଁ ସେ ଦିନରାତି ଆହାର ଚିନ୍ତାରେ ଘୂରିବୁଲୁଛି। ଅଜଗରର ଶରୀର କେତେ ବଡ଼, କିନ୍ତୁ ପେଟପାଇଁ ସେ ନିଜ ସ୍ଥାନ ଛାଡ଼ି କୁଆଡ଼କୁ କେବେ ଯାଏନାହିଁ। ସେ ସେହି ଏକ ସ୍ଥାନରେ ରହି ଶ୍ୱାସ ନିଏ, ଆଉ ସେହି ଶ୍ୱାସ ବଳରେ ଯାହା ମିଳିଯାଏ, ତାକୁ ଖାଇ ସନ୍ତୁଷ୍ଟ ହୁଏ। କିଛି ନ ମିଳିଲେ କେବଳ ପବନ ପିଇ ରହିଯାଏ। ସେହିପରି ମୁନି ପ୍ରାରବ୍ଧ ହାତରେ ଶରୀରକୁ ସମର୍ପଣ କରିଦିଏ, ତେଣୁ କେବେ କାହାକୁ

ଖାଦ୍ୟ ମାଗିବା ଉଚିତ ନୁହେଁ। ସ୍ୱତଃ ଯାହା ମିଳିବ ସେତିକରେ ସନ୍ତୁଷ୍ଟ ହେବା ଉଚିତ। ସ୍ୱତଃ ମିଳିବା ଖାଦ୍ୟ ସ୍ୱାଦିଷ୍ଟ ହୋଇପାରେ ବା ଶୁଷ୍କ, ନୀରସ ଓ ଅସ୍ୱାଦୁକର ହୋଇପାରେ। ସେଥିରେ ଯୋଗୀର ହେୟ ବା ଉପାଦେୟ ବୁଦ୍ଧି ଜାତ ହୁଏ ନାହିଁ। କିନ୍ତୁ, ପଡ଼ି ପଡ଼ି କରିବ କ'ଣ? ଏହାର ଉତ୍ତର ସ୍ୱରୂପ ଏତିକି କହିଲେ ଯଥେଷ୍ଟ ହେବ ଯେ, **କର୍ମତ୍ୟାଗ ହିଁ ପ୍ରକୃତ ଅଜଗର ବୃତ୍ତିର ଲକ୍ଷଣ। ମନୋବଳ, ଇନ୍ଦ୍ରିୟବଳ ଓ ଶରୀର ବଳ ଥିଲେ ବି ସେଗୁଡ଼ିକ ଦ୍ୱାରା କୌଣସି କାର୍ଯ୍ୟ କରିବା ଠିକ୍ ନୁହେଁ।** ଅଜଗରର ସବୁଥାଇ ବି ସେ ନିଶ୍ଚେଷ୍ଟ ରହେ। ଓଜ ବଳ ଦ୍ୱାରା ପୂର୍ଣ୍ଣତା ଲାଭକରି ଆଭ୍ୟନ୍ତର ଜ୍ଞାନର ବିକାଶ ଘଟାଏ। ଯୋଗୀ ମଧ୍ୟ ସେହିପରି କ୍ରିୟାହୀନ ଓ ନିଶ୍ଚେଷ୍ଟ ହେବା ବାଞ୍ଛନୀୟ। ଓଜ ସାତ୍ତ୍ୱିକଗୁଣ ଦ୍ୟୋତକ। ସାତ୍ତ୍ୱିକ ଗୁଣଶୀଳ ଯୋଗୀଙ୍କୁ ଅଜ୍ଞାନ ରୂପ ତମୋଗୁଣ ଜାତ ନିଦ୍ରା, ପ୍ରମାଦ, ଆଳସ୍ୟାଦି ଦୋଷ ସ୍ପର୍ଶ କରିପାରେ ନାହିଁ। ଯୋଗୀ, ଅଜଗର ଭଳି ବାହ୍ୟତଃ ନିଶ୍ଚେଷ୍ଟ ବା ନିଦ୍ରିତ ମନେ ହେଲେ ମଧ୍ୟ ଅନ୍ତରରେ ସଦା ଜାଗ୍ରତ ରହେ।

''ସ୍ୱାଭାବିକ କ୍ରିୟା ହେଉଛି ଇନ୍ଦ୍ରିୟର କାର୍ଯ୍ୟ। ଯାହାର ଆଖିରେ ଦେଖିବାର ଶକ୍ତି ନାହିଁ ସେ କ'ଣ ଦେଖିବ? ଯେ କାଲ, ଯେ ଜଡ଼ା, ସେ କ'ଣ ଶୁଣିବ ବା କ'ଣ କହିପାରିବ? ଯୋଗୀର ସମସ୍ତ ଇନ୍ଦ୍ରିୟ ସୁସ୍ଥ ଥିଲେ ମଧ୍ୟ ସେ ତା'ଦ୍ୱାରା କୌଣସି କାର୍ଯ୍ୟ କରିବାକୁ ଇଚ୍ଛାକରେ ନାହିଁ। କାରଣ ଇନ୍ଦ୍ରିୟର କାର୍ଯ୍ୟଦ୍ୱାରା ଭେଦଭାବନା ଜାତ ହୁଏ। ତେଣୁ, ସବୁକିଛି ପ୍ରାରବ୍ଧ ଉପରେ ସମର୍ପି ଦେଇ ନିଶ୍ଚେଷ୍ଟ ଭାବେ ରହିବାର ଶିକ୍ଷା ମୁଁ ଅଜଗରଠାରୁ ଲାଭ କରିଛି।''

ସୂତ କହୁଛନ୍ତି, ''ରାଜା ଯଦୁଙ୍କୁ ବୁଝାଇବାକୁ ଯାଇ ଅବଧୂତ ସମୁଦ୍ରଠାରୁ ଲାଭ କରିଥିବା ଶିକ୍ଷା ପ୍ରସଙ୍ଗରେ ଯାହା କହିଥିଲେ ତାହା ଆପଣମାନଙ୍କୁ କହିବି।''

### ଛପ୍ପୟ

ଭାଗ୍ୟ ମାହିଁ ଜୋ ଦୋହି ଦେହ ସୁଖ ଦୁଃଖ ପ୍ରବଲ ହୂ।
ଇନ୍ଦ୍ରିୟ, ମନ, ବଲଯୁକ୍ତ ହୋହି ଶାରୀରିକ ବଲ ହୂ॥
ତବହୂଁ ନ ଚେଷ୍ଟା କରୈ ତାନି କେ ସୋଦୈ ଚାଦର।
ଯଦ୍ଧ ଶୁଭ ଯହ ହୈ ଅଶୁଭ କର୍ମ କୋ କରୈ ନା ଆଦର॥
କାହୂ ତୈ କଡ଼ବୋ ବଚନ, ହିତ ଅନହିତ କବହୂ ନ କହୈ।
ଅଜଗର ସମ ନିଦ୍ରିତ ସତତ, ନିବ୍ୟାପାର ବନ୍ୟୋ ରହୈ॥



# ଗୁରୁ ସମୁଦ୍ରଠାରୁ ଶିକ୍ଷାଲାଭ

ମୁନିଃ ପ୍ରସନ୍ନଗମ୍ଭୀରୋ ଦୁର୍ବିଗାହ୍ୟୋ ଦୁରତ୍ୟୟଃ ।
ଅନନ୍ତପାରୋ ହକ୍ଷୋଭ୍ୟଃ ସ୍ତିମିତୋଦ ଇବାର୍ଣବଃ ।। ★

[ଶ୍ରୀଭା. ୧୧ସ୍କ. ୮ଅ. ୫ ଶ୍ଳୋକ]

### ଛପ୍‌ପୟ

ଜଳନିଧି କୀନ୍ହା କୃପା ଦୟା କରି ଦୀକ୍ଷା ଦୀନ୍ହା ।
ନିସ୍ତରଂଗ ଜଳରାଶି ନିରଖି ଶୁଭ ଶିକ୍ଷା ଲୀନ୍ହା ।।
ଶାନ୍ତ ଔର ଗମ୍ଭୀର ରହେଁ ସାଗର ସମ ଜ୍ଞାନୀ ।
ଥାହ ନ ସମୁଝୈ ମନୁଜ ପାର ନହିଁ ପାବହିଁ ପ୍ରାନୀ ।।
ଚାହେ ବହୁ ପୂଜା କରୈ, ଅଥବା ତାଡ଼ନ କରହିଁ ଜନ ।
ଘଟନା କୈସୀ ହୁ, ଘଟୈ କବହୁଁ ନ ହୋବୈ କ୍ଷୁଭିତ ମନ ।।

ଜଳଘଟଟି ଜଳପୂର୍ଣ୍ଣ ଥିଲେ ବାହାରକୁ ଉଛୁଳି ପଡ଼େ ନାହିଁ, କିନ୍ତୁ ଘଟର ମୁଖ ପର୍ଯ୍ୟନ୍ତ ଜଳ ନ ଥିଲେ ତାହା ବାରମ୍ବାର ଉଛୁଳିଥାଏ । ଜଳ ନ ଥିବା ବା କମ୍‌ଥିବା ମେଘ ବେଶୀ ଗର୍ଜନ କରେ । ସେଥିପାଇଁ କହନ୍ତି— ଗରଜିଲା ମେଘ ବରଷେ ନାହିଁ । କିନ୍ତୁ ଶାନ୍ତ, ଗମ୍ଭୀର ମେଘ ବିପୁଳ ଜଳଧାରା ଦାନ କରିଥାଏ । ବର୍ଷୁକ ମେଘ ନିଜ ଦାନର ବିଜ୍ଞାପନ ଦିଏ ନାହିଁ । ଯେଉଁ ସ୍ତ୍ରୀ ସମସ୍ତଙ୍କ ଦୃଷ୍ଟିରୁ ଅନ୍ତରାଳରେ ରହି ନିଜ ସୌନ୍ଦର୍ଯ୍ୟ ଓ ଗୁଣକୁ ଲୁଚାଇ ରଖେ, ସର୍ବସ୍ୱ ନିଜ ପତିଠାରେ ଅର୍ପଣ କରେ ସେ ହେଉଛି ସତୀ, ସ୍ୱାଧୀ ଓ ଧର୍ମପରାୟଣା ନାରୀ । କିନ୍ତୁ, ଛାତ ଉପରେ ବସି, ଷୋଳ ଶୃଙ୍ଗାରଦ୍ୱାରା ଯେ ସମସ୍ତଙ୍କ ଆଗରେ ନିଜ ସୌନ୍ଦର୍ଯ୍ୟର ପ୍ରଚାର କରେ, ନିଜର ରୂପ ସମ୍ପଦ ଦ୍ୱାରା ସମସ୍ତଙ୍କୁ ଆକର୍ଷଣ କରିବାର ପ୍ରଚେଷ୍ଟାରେ ଥାଏ, ତାକୁ ପଣ୍ୟସ୍ତ୍ରୀ, ବେଶ୍ୟା, ଅସତୀ, ପୁଂଶ୍ଚଳୀ ବୋଲି କହନ୍ତି । ବିଷୟାସକ୍ତ ପୁରୁଷ ସେଭଳି ନାରୀର ବଶ୍ୟତା ସ୍ୱୀକାର କଲେ ମଧ୍ୟ ଆଚାରବାନ୍ ସୁଶୀଳପୁରୁଷ ତା'ଆଡ଼କୁ ଆଦୌ ଦୃଷ୍ଟି ପାତ କରେ ନାହିଁ ।

---



| | | | |
|---|---|---|---|
| କେ ଜାଣି ପାରେ ମୋ ଅନ୍ତର | । | ଗଭୀର ଯେସନେ ସାଗର | ।। |
| ବରଷା ସମୟରେ ନଦୀ | । | ସମୂହେ ବହନ୍ତି ଆହ୍ଲାଦି | ।। |
| ଯେ ଯେହ୍ନେ ମିଳନ୍ତି ଜଳଧି | । | ତେଣେ ସେ ନୁହଁଇ ନା ବୃଦ୍ଧି | ।। |
| ଗ୍ରୀଷମେ ନୋହେ ହାନି ତାର | । | ସର୍ବଦା ସମ ସେହୁ ନୀର | ।। |
| ସେ ରୂପେ ଜାଣ ମୁହିଁ ମନେ | । | ହାନି ବୃଦ୍ଧି ଭାବ ନ ଘେନେ | ।। |
| ଏ ଭାବେ ଥାନ୍ତି ଯେତେ ପ୍ରାଣୀ | । | ସଂସାର ପାରନ୍ତି ସେ ଜିଣି | ।। |

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ. ୯ ଅ.]

ଛୋଟ ଛୋଟ ନଦୀଗୁଡ଼ିକ ବର୍ଷାକାଳରେ ଅତି ବେଗରେ ପ୍ରବାହିତ ହୁଅନ୍ତି । ସେତେବେଳେ ସେଗୁଡ଼ିକର ଜଳଧାରା ବହୁବିସ୍ତୃତି ଲାଭ କରେ। କିନ୍ତୁ ଗ୍ରୀଷ୍ମକାଳରେ ସେଗୁଡ଼ିକ ଏପରି ଭାବରେ ଶୁଖି ଯାଆନ୍ତି ଯେ, ଚଳୁ କରିବାପାଇଁ ମଧ୍ୟ ଜଳଟୋପାଏ ମିଳେନାହିଁ। ସେହିପରି କେତେକ ନିଜକୁ ଗୁଣୀ, ସଦାଚାରୀ, ସାଧୁଭାବେ ଦେଖାଇ ଲୋକଙ୍କୁ ବହୁଭାବରେ ଠକନ୍ତି। କିନ୍ତୁ, କିଛିକାଳ ପରେ ସେମାନଙ୍କର ଅସଲ ରୂପ ସମସ୍ତଙ୍କ ଆଗରେ ପ୍ରକଟିତ ହୁଏ । ଯାହାଠାରେ ସତ୍ୟତା, ଧୀରତା, ଗମ୍ଭୀରତା ଓ ସ୍ଥିରତା ଥାଏ ସେ ପ୍ରକୃତ ଗୁଣୀଭାବେ ପୂଜାପାଏ ।

ସୂତ ମହର୍ଷି କହୁଛନ୍ତି, ହେ ମୁନିଗଣ। ଅବଧୂତ ଦତ୍ତାତ୍ରେୟ ସମୁଦ୍ରଠାରୁ ପାଇଥିବା ଶିକ୍ଷା ବିଷୟ ରାଜା ଯଦୁଙ୍କୁ ବୁଝାଇବାକୁ ଯାଇ କହିଲେ, ''ରାଜନ୍! ଥରେ ମୁଁ ବୁଲି ବୁଲି ସମୁଦ୍ରକୂଳରେ ପହଞ୍ଚିଲି। ସେତେବେଳେ ସମୁଦ୍ର ଶାନ୍ତ ଥାଏ, ଚାରିଆଡୁ ତା'ର ଗମ୍ଭୀର ରୂପ ମୁଁ ଦେଖି ମୁଗ୍ଧ ହୋଇଗଲି। ସେତେବେଳେ ସମୁଦ୍ରରେ ଗୋଟିଏ ହେଲେ ତରଙ୍ଗ ନ ଥିଲା । ଆଖି ପାଉଥିବା ଯାଏ କେବଳ ଶାନ୍ତ ଗମ୍ଭୀର ଜଳରାଶି ଦେଖାଯାଉଥିଲା ।''

''ମୁଁ ବିଚାର କଲି, ମାନବ ହୃଦୟରେ ସର୍ବଦା ତରଙ୍ଗ ପରେ ତରଙ୍ଗ ସୃଷ୍ଟି ହେଉଛି। କୌଣସି ନା କୌଣସି ବିଷୟରେ ମଣିଷର ଚିତ୍ତ ଚଞ୍ଚଳ ହୋଇ ଉଠୁଛି। ଶାନ୍ତି ତା'ର ନଷ୍ଟ ହେଉଛି। ଭୟ ଓ ଆଶଙ୍କାରେ ହୃଦୟ ତା'ର କମ୍ପି ଉଠୁଛି। ଫଳରେ ନ କରିବା କାର୍ଯ୍ୟକୁ ସେ କରିଚାଲିଛି। ତେଣୁ, ସମୁଦ୍ରଠାରୁ ମୁଁ ଶିଖିଲି ଯେ, ଯୋଗୀ କେବେହେଲେ ଅଯଥା ବ୍ୟସ୍ତ ହେବା ଉଚିତ ନୁହେଁ। ଭାବି ଘଟଣା ଭବିଷ୍ୟତର ଗର୍ଭରେ ଲୁଚି ରହିଛି। ବର୍ତ୍ତମାନ ଯାହା ଘଟିବାର କଥା ଘଟୁଛି। ସେ ବିଷୟରେ ବ୍ୟସ୍ତ ହୋଇ କ'ଣ ହେବ? ଏହିଭଳି ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ବିଷୟରେ ଅଯଥା ଚିନ୍ତା କରିବା ଉଚିତ ନୁହେଁ। ନିଶ୍ଚିନ୍ତଭାବେ ନିସ୍ତରଙ୍ଗ ସମୁଦ୍ର ଭଳି ସ୍ଥିର ରହିବା ସର୍ବତୋଭାବେ କର୍ତ୍ତବ୍ୟ। ଦ୍ୱିତୀୟରେ, ସମୁଦ୍ରଠାରୁ ଏହି ଶିକ୍ଷା ଲାଭ କଲି ଯେ, ଯୋଗୀ ସର୍ବଦା ଶାନ୍ତ ଓ ଗମ୍ଭୀର ରହିବା ଉଚିତ। ଯୋଗୀର ଚିତ୍ତ ଚଞ୍ଚଳ ହେଲେ, ସେ କେବେ ନା କେବେ ବିଷୟ ବାସନା ପ୍ରତି ଆକୃଷ୍ଟ ହେବ ଓ ଲକ୍ଷ୍ୟ ମାର୍ଗରୁ ବିଚ୍ୟୁତ ହେବ। ମୋର ତୃତୀୟ ଶିକ୍ଷା ହେଲା, ସମୁଦ୍ର ଦୁର୍ବିଗାହ୍ୟ ଓ ଅଗମ୍ୟ। ସେହିଭଳି ଯୋଗୀ ମଧ୍ୟ ଅଗମ୍ୟ ହେବା ଉଚିତ। ଯେତେବଡ଼ ବୁଡ଼ାଳି ହେଉ ପଛକେ, ସେ ସମୁଦ୍ରରେ ବୁଡ଼ି ଜଳର ଗଭୀରତା କଳି ପାରିବ ନାହିଁ। ସେ ଅନୁମାନ କରିପାରିବ ନାହିଁ ଯେ, ସମୁଦ୍ରରେ କେତେ ଜଳ ରହିଛି। ସେହିପରି ଶାନ୍ତ, ଦାନ୍ତ ଗମ୍ଭୀର ଯୋଗୀର ଗୁଣ କେହି କଳିପାରେ ନାହିଁ।''

ସମୁଦ୍ରରେ ଅସଂଖ୍ୟ ଜଳଜୀବ ବାସ କରନ୍ତି। କେତେକ ମଧ୍ୟ ଜୀବ ସଂହାର କରି ନିଜର ଜୀବିକା ଚଳାନ୍ତି। ସମୁଦ୍ର ମଧ୍ୟରେ ଯେତେ ଅମୂଲ୍ୟ ରତ୍ନ ରହିଛି ତା'ର କଳନା ନାହିଁ। ମୁନି ସେହିପରି ନିଜର ଗୁଣକୁ ଲୁଚାଇ ରଖିବା ଉଚିତ। ସର୍ବସାଧାରଣ ସମୁଦ୍ରର ରତ୍ନ ଭଳି ଯୋଗୀର ସାଧନସମ୍ପତ୍ତିକୁ ଯେପରି ଜାଣି ନ ପାରିବେ ଯୋଗୀ ସେହିପରି ଆଚରଣ ପ୍ରଦର୍ଶନ କରିବା ବିଧେୟ। ସମୁଦ୍ରଠାରୁ ପାଇଥିବା ଏହା ହେଉଛି ମୋର ଚତୁର୍ଥ ଶିକ୍ଷା।

''ସନ୍ତରଣରେ ଯେତେବଡ଼ କୁଶଳୀ ହେଲେ ମଧ୍ୟ କୌଣସି ବ୍ୟକ୍ତି ସମୁଦ୍ରକୁ ପାର ହୋଇପାରିବ ନାହିଁ। ସେହିପରି ଯୋଗୀର ହୃଦୟକୁ ଯେତେ ବଡ଼ ବୁଦ୍ଧିମାନ୍ ଓ ଜ୍ଞାନୀ ହେଲେ ମଧ୍ୟ ଲୋକ ଜାଣିପାରେ ନାହିଁ। ସମୁଦ୍ରର ଅପାର ଅନନ୍ତ ଜଳରାଶି ଭଳି ଯୋଗୀର ଜ୍ଞାନକୁ କେହି କଳନା କରିପାରେ ନାହିଁ। ଏ ପ୍ରକାର ପଞ୍ଚମ ଗୁଣ ମୁଁ ସମୁଦ୍ରଠାରୁ ଶିକ୍ଷା କଲି।

ଛ'ରେ ମୁଁ ଶିଖିଲି, ସମୁଦ୍ର ଯେପରି ସର୍ବଦା ନିସ୍ତରଙ୍ଗ ଓ କ୍ଷୋଭରହିତ ଥାଏ, ବହିଃପ୍ରଭାବରେ ନିର୍ବିକାର ରହେ, ସେହିପରି ଯୋଗୀ, ପୁରସ୍କାର ବା ତିରସ୍କାର, ସ୍ତୁତି ବା ଗାଳି ଖାଇଲେ ମଧ୍ୟ କ୍ଷୋଭରହିତ ହେବା ଉଚିତ। କୌଣସି ଘଟଣାରେ ବିକ୍ଷୁବ୍ଧ ହେବା ଉଚିତ ନୁହେଁ। ସପ୍ତମଗୁଣ ଶିଖିଲି ଯେ, ସମୁଦ୍ର କେବେ ବଢ଼େନି କି କମେ ନାହିଁ। ବର୍ଷାକାଳରେ ଅସଂଖ୍ୟ ନଦୀ ଅସୀମ ଜଳରାଶି ସମୁଦ୍ରକୁ ବୋହି ନିଅନ୍ତି। କିନ୍ତୁ, ତଦ୍ୱାରା ସମୁଦ୍ରର ଜଳସୀମାର କୌଣସି ହ୍ରାସ ବା ବୃଦ୍ଧି ଘଟେ ନାହିଁ। ନଦୀଜଳ ଆଦୌ ନ ଗଲେ ମଧ୍ୟ ସମୁଦ୍ର ଶୁଖିଯାଏ ନାହିଁ, କି କୌଣସି ପ୍ରକାର ଦୁଃଖ ଅବସ୍ଥା ତା'ର ଘଟେ ନାହିଁ। ଅଧିକ ଜଳ ଆସୁ, କମ୍ ଆସୁ ବା ଆଦୌ ନ ଆସୁ, ସେଥିରେ ସମୁଦ୍ରର ଅବସ୍ଥା ଅପରିବର୍ତ୍ତିତ ରହେ। ଯୋଗୀ ସେହିଭଳି ସବୁପ୍ରକାର ଅବସ୍ଥାର ସର୍ବଦା ସମଚିତ୍ତରେ ରହିବା ଉଚିତ୍। ଯଥାବିଧି ଆଦର ଅଭ୍ୟର୍ଥନା, ଉପାଦେୟ ଖାଦ୍ୟ ପାଇଲେ ଯୋଗୀ ଆନନ୍ଦିତ ହେବା ଉଚିତ ନୁହେଁ, କି ହତାଦର, ତିରସ୍କାର ଅନୁପାଦେୟ ଭୋଜନଦ୍ୱାରା ବିଷାଦଗ୍ରସ୍ତ ହେବା ଠିକ୍ ନୁହେଁ। ଯୋଗୀ ସର୍ବଦା ସର୍ବତ୍ର ସମଭାବାପନ୍ନ ହେବା ବାଞ୍ଛନୀୟ। ସମୁଦ୍ରଠାରୁ ନିସ୍ତରଙ୍ଗତା, ଗମ୍ଭୀରତା, ଅଗମ୍ୟତା, ଅବେଦ୍ୟତା, ଅନନ୍ତପାରତା, ଅକ୍ଷଭୋଣ ଓ ସମତାଦି ଗୁଣ ଶିକ୍ଷା ପାଇଥିବାରୁ ମୁଁ ସମୁଦ୍ରକୁ ଗୁରୁଭାବେ ଗ୍ରହଣ କରିଛି। ହେ ରାଜନ୍! ଏହିପରି ସାତୋଟି ଶିକ୍ଷଣୀୟ କଥା ଆପଣଙ୍କୁ କହିଲି। ଏବେ ଆପଣ ଆଉ କ'ଣ ଶୁଣିବା ପାଇଁ ଇଚ୍ଛା କରୁଛନ୍ତି ?''

ରାଜା କହିଲେ, ''ବ୍ରହ୍ମନ୍! ଆପଣ ପତଙ୍ଗକୁ ଗୁରୁ କରି କ'ଣ ଶିଖିଲେ ? ଏତେ ଛୋଟ ଜୀବଟିକୁ କିଭଳି ଗୁରୁଭାବେ ନିର୍ବାଚନ କଲେ ତାହା ମୋତେ ବୁଝାଇ ଦିଅନ୍ତୁ।''

ଅବଧୂତ ହସି ହସି କହିଲେ, ''ମୋର ଯଥାର୍ଥ ଗୁରୁ ହେଉଛି ପତଙ୍ଗ। ତା'ଠାରୁ ମୁଁ ମହାନ୍ ଶିକ୍ଷା ଲାଭ କରିଛି। ପତଙ୍ଗ ଗୁରୁଙ୍କର ସେହି ଏକମାତ୍ର ଶିକ୍ଷାର ଆଶ୍ରୟରେ ପ୍ରାଣୀ ଦୁଃଖମୁକ୍ତ ହୋଇଯିବ।''

ସୂତ ମହର୍ଷି ନୈମିଷାରଣ୍ୟରେ ସମବେତ ମୁନିମାନଙ୍କୁ କଥା ଶୁଣାଇବାକୁ ଯାଇ କହିଲେ, ''ପତଙ୍ଗ ସମସ୍ତଙ୍କୁ ନିତ୍ୟଶିକ୍ଷା ଦେଉଛି ଯେ, ଏ ସଂସାରର ସବୁକିଛି ଅନିତ୍ୟ, ନଶ୍ୱର ଓ କ୍ଷଣଭଙ୍ଗୁର। ମାୟାବଶତଃ ଜୀବ ସେହି ଅନିତ୍ୟତା ପ୍ରତି ଧ୍ୟାନ ଦେଉନାହିଁ। ସମସ୍ତେ ସଂସାରର ପରିବର୍ତ୍ତନକୁ ଜାଣନ୍ତି ଓ ଦେଖନ୍ତି। କିନ୍ତୁ ବିବେକୀ ଲୋକ ସବୁକିଛି ଗଭୀର ଭାବେ ଅନୁଧ୍ୟାନ କରେ ଓ ଶିକ୍ଷାଲାଭ କରେ। ବର୍ତ୍ତମାନ ପତଙ୍ଗଠାରୁ ପାଇଥିବା ଅବଧୂତଙ୍କ ଶିକ୍ଷା ପ୍ରସଙ୍ଗ ଧ୍ୟାନପୂର୍ବକ ଶୁଣନ୍ତୁ।''

### ଛପ୍ପୟ

ଜ୍ୟୋ ଅଗନିତ ଜଲରାଶି ସହିତ ସରିତା ସାଗର ମହିଁ।
ଜାବୈ ତଊ ନ ବୃଦ୍ଧ ହୋହି ପୟନିଧି କେ ପୟ ମହିଁ॥
ଗ୍ରୀଷମ ମହିଁ ସୁଖି ଜାୟୈ ଘଟୈ ନହିଁ ତବହୁଁ ପାନୀ।
ତ୍ୟୋ ପ୍ରିୟ ପାଇ ପଦାର୍ଥ ହୋହି ହରଷିତ ନହିଁ ଜ୍ଞାନୀ॥
ସୁଖ ଦୁଖ ମହିଁ ସମ ଭବ ଜୀ, ଶିକ୍ଷା ସାଗର ତୈ ଲଈ।
ଲଖି ସମତା ଗଭୀରତା, ମମତା ମେରୀ ନସି ଗଈ॥

●

# ପତଙ୍ଗ ମୋର ଗୁରୁ

ଯୋଷିଦ୍ଧିରଣ୍ୟାଭରଣାମ୍ବରାଦି-
ଦ୍ରବ୍ୟେଷୁ ମାୟାରଚିତେଷୁ ମୂଢ଼ଃ ।
ପ୍ରଲୋଭିତାତ୍ମା ହ୍ୟୁପଭୋଗବୁଦ୍ଧ୍ୟା
ପତଙ୍ଗବନ୍ନଶ୍ୟତି ନଷ୍ଟଦୃଷ୍ଟିଃ ।। ★

[ଶ୍ରୀଭା.୧୧ସ୍କ. ୮ଅ. ୮ମ ଶ୍ଳୋକ]

**ଛପ୍ପୟ**

ଅବ ପତଙ୍ଗ ଗୁରୁ କରୌଁ କହୁଁ କାରନ ସୋ ଭୂପତି।
ଦେଖି ଦୀପ କା ଲୋଭ ଫଁସେ ତାମେ ଖଲ ଦୁରମତି।।
ତ୍ୟୌଂ ହୀ କୁଣ୍ଡଲ କନକ କାମିନୀ ପଟ ଅତି ସୁନ୍ଦର।
ଭୋଗବୁଦ୍ଧି କର ଫଁସେ ଦୈବକୀ ମାୟା ଦୁସ୍ତର।।
ରୂପ ଅଗିନିମହଁ ଭସମ ତନୁ, କରୈ ମୋହି ଆସକ୍ତ ଅତି।
ସୁନ୍ଦରତାମହଁ ସୁଖ ସମୁଝି, ଜଗମହଁ ହୋବୈ ନହିଁ ସୁଗତି।।

ରୂପ ପ୍ରତି ଆସକ୍ତି ଏପରି ଏକ ଦୁଃସାଧ୍ୟ ରୋଗ ଯେ, ତା'ର ଚିକିତ୍ସା ନାହିଁ। କେବଳ ଭଗବାନ୍‌ଙ୍କ ବ୍ୟତୀତ ଆଉ କେହି ସେଥିରୁ ରକ୍ଷା କରି ପାରିବେ ନାହିଁ। ଲୋକେ କୁହନ୍ତି ସୌନ୍ଦର୍ଯ୍ୟର ଅହେତୁକ ଆକର୍ଷଣ ହେତୁ ସମସ୍ତେ ସେଥିରେ ବଶୀଭୂତ ହୁଅନ୍ତି। କିନ୍ତୁ ସୌନ୍ଦର୍ଯ୍ୟର ପରିଭାଷା କ'ଣ? ସୁନ୍ଦର ଓ ଅସୁନ୍ଦରର ସଂଜ୍ଞା କ'ଣ? ପଞ୍ଚଭୂତରେ ନିର୍ମିତ ବସ୍ତୁ ମଧ୍ୟରୁ କିଏ ସୁନ୍ଦର, କିଏ ଅସୁନ୍ଦର, କିଏ କହିବ? ଚିନିରେ ତିଆରି ସମସ୍ତ ଖେଳନା ମିଠା ଲାଗେ, ସେଥିରେ କୌଣସି ଭେଦଭାବ ନାହିଁ। କିନ୍ତୁ, ଅଜ୍ଞାନ ବାଳକ ଚିନିନିର୍ମିତ ଖେଳନା ଦେଖି କହେ ମୁଁ ଘୋଡ଼ା ନୁହେଁ ହାତୀ ନେବି, କିଏ କହେ ଶିଙ୍ଗାହରିଣ ନେବି, ଏବଂ ସେହିପରି କିଏ ଓଟ ମାଗେ, ଆଉ କେହି ଚଢ଼େଇ, ଶଶକ ବା ଅନ୍ୟକିଛି ଇଚ୍ଛା କରେ। ଏ ସମସ୍ତ ଖେଳନାକୁ ଜଣେ ତିଆରି କରିଛି। ସବୁର ଉପାଦାନ ଏକ। କେବଳ ଭିନ୍ନତା ଆକୃତି, ରୂପ ଓ ରଙ୍ଗରେ। ତାହାହିଁ ବାଳକ ମନରେ ଭେଦଭାବନା ସୃଷ୍ଟି କରେ। ସେହିପରି ସଂସାରରେ କିଏ ସୁନ୍ଦର ବା କିଏ ଅସୁନ୍ଦର ଦେଖାଯାଇଥାଏ।

---

★ ବିଷ୍ଣୁର ମାୟା ମୋହକର । କପଟେ ହୋଇ ନାରୀରୂପ ।।
ଜଗମୋହିନୀ ବିଷ୍ଣୁମାୟା । ଘନେ ଯେସନେ ବିଦ୍ୟୁଚ୍ଛାୟା ।।
ସେ ରୂପେ ନ କରିବ ସଙ୍ଗ । ଅନଳେ ଯେସନେ ପତଙ୍ଗ ।।
ସଂଯୋଗେ କରେ ପ୍ରାଣ ନାଶ । ଏଣୁ ନୋହିବ ତା ବିଶ୍ୱାସ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ. ୯ମ. ଅଧ୍ୟାୟ]

ଗପଟିଏ ଅଛି। କୌଣସି ଏକ ରାଜକୁମାର ଜନୈକା ଯୋଗିନୀକୁ ଦେଖି ତାଙ୍କୁ ବିବାହ କରିବା ନିମିତ୍ତ ଇଚ୍ଛା ପ୍ରକାଶ କଲେ। ଯୋଗିନୀ କହିଲା, ''ରାଜକୁମାର ! ତୁମେ ବିବାହ କରିବାକୁ ଚାହୁଁଥିଲେ ସଂସାରରେ ବହୁ ସୁନ୍ଦରୀ ରାଜକନ୍ୟା ମିଳିବେ। ସେମାନଙ୍କ ମଧ୍ୟରୁ ବାଛି କାହାକୁ ବିବାହ କରିବା ଉଚିତ୍।'' ରାଜକୁମାର କହିଲେ, ''ଦେବି ! ସଂସାରରେ ଯେତେ ସୁନ୍ଦରୀ ରାଜକନ୍ୟା ଥିଲେ ବି ମୋର ମନ ତୁମରି ରୂପରେ ସନ୍ତୁଷ୍ଟ। ତୁମେ ମୋ ପ୍ରସ୍ତାବରେ ରାଜି ନ ହେଲେ ମୁଁ ପ୍ରାଣତ୍ୟାଗ କରିବି।'' ଯୋଗିନୀ କହିଲା, ''କୁମାର ! ବୁଝି ବିଚାରି କାର୍ଯ୍ୟ କର। ମୋ ଦେହରେ ସେପରି କ'ଣ ବିଶେଷତ୍ୱ ଅଛି ? ସମସ୍ତଙ୍କ ଶରୀର ରସ, ରକ୍ତ, ମାଂସ, ମଜ୍ଜା ଓ ଅସ୍ଥିଦ୍ୱାରା ଯେପରି ନିର୍ମିତ, ମୋର ଦେହ ମଧ୍ୟ ସେହିଭାବରେ ନିର୍ମିତ। ସମସ୍ତଙ୍କ ଭଳି ମୋ ଦେହ ଭିତରେ ମଧ୍ଯ ମଳ, ମୂତ୍ର ଓ ଅନ୍ୟାନ୍ୟ ନାନାବିଧ ଆବର୍ଜନା ପୂରି ରହିଛି। ଏ ଦେହ ପ୍ରତି ଏତେ ଆସକ୍ତ ହେବାର କାରଣ କ'ଣ ?''

ରାଜକୁମାର କହିଲେ, ''ରକ୍ତ, ମାଂସରେ ମୋର ଲୋଭ ନାହିଁ, ତୁମର ସୌନ୍ଦର୍ଯ୍ୟକୁ ହିଁ ମୁଁ ପ୍ରେମ କରୁଛି।'' ଯୋଗିନୀ ଉତ୍ତର ଦେଲେ, ''ସୌନ୍ଦର୍ଯ୍ୟ ଏକ ସ୍ଥାୟୀ ବସ୍ତୁ ନୁହେଁ। ଆଜି ଅଛି ତ କାଲି ରହିବ ନାହିଁ। ଏହା ରକ୍ତର ଏକପ୍ରକାର ବିକାର। ଶରୀରର ସ୍ୱାଭାବିକ ବିକାଶ ଫଳରେ ସୌନ୍ଦର୍ଯ୍ୟ ଫୁଟିଉଠେ। ଯେତେ ସୁନ୍ଦରୀ ହୋଇଥିଲେ ବି ଜଣକୁ ଦଶ କୋଡ଼ିଏ ଥର ହଳଦୀପାଣି ପିଆଇଦେଲେ ତା'ର ସମସ୍ତ ଶରୀର ହଳଦିଆ ପଡ଼ିଯିବ ଓ ଲାବଣ୍ୟର ଆଭା ନଷ୍ଟ ହୋଇଯିବ। ତେଣୁ ସୌନ୍ଦର୍ଯ୍ୟ ଦେହର ଏକପ୍ରକାର ମଳ ବ୍ୟତୀତ ଅନ୍ୟ କିଛି ନୁହେଁ। ଶରୀରରେ ପ୍ରାଣ ଥିବା ଯାଏ ସୌନ୍ଦର୍ଯ୍ୟ ରହେ। ମୃତ୍ୟୁପରେ ଯେତେ ସୁନ୍ଦର ଥିଲେ ବି ବ୍ୟକ୍ତିର ରୂପ ଭୟଙ୍କର ଲାଗେ। ଦେହର ମଳ, ରକ୍ତ ଓ ବୀର୍ଯ୍ୟରେ ପ୍ରାଣର ଅସ୍ତିତ୍ୱ ଥାଏ। ଏହି ତିନୋଟିକୁ ଶରୀରରୁ ପୃଥକ୍ କରିଦେଲେ ସେଗୁଡ଼ିକର ସମ୍ମୁଖରେ ରହିହେବ ନାହିଁ, ବାନ୍ତି ହୋଇଯିବ। ଭୁଲବଶତଃ ସେଗୁଡ଼ିକ ଛୁଇଁଦେଲେ ସ୍ନାନ କରିବାକୁ ପଡ଼େ। ଏଭଳି ଅଶୁଦ୍ଧ ବସ୍ତୁଦ୍ୱାରା ନିର୍ମିତ ସୌନ୍ଦର୍ଯ୍ୟ ପଛରେ ତୁମେ ଏତେ ଉନ୍ମତ୍ତଭାବେ ଅନୁଧାବନ କରୁଛ ଯେ, ତା'ର ଅଭାବରେ ତୁମେ ଆତ୍ମହତ୍ୟା କରିବାକୁ ବସିଛ !'' ରାଜକୁମାର କହିଲେ, ''ଯାହା ହେଉ ପଛକେ, ମୁଁ ତୁମ ବିନା ରହିପାରିବି ନାହିଁ। ତୁମେ ମୋ ପ୍ରତି ଦୟା ନ କଲେ ମୁଁ ନିଶ୍ଚୟ ଆତ୍ମହତ୍ୟା କରିବି।''

ଯୋଗିନୀ ପଚାରିଲେ, ''ରାଜକୁମାର ! ତୁମେ କ'ଣ ଚାହଁ !'' ଏହାର ଉତ୍ତର ଦେଇ ରାଜକୁମାର କହିଲେ, ''ମୁଁ ତୁମକୁ ଚାହେଁ।'' ଯୋଗିନୀ କହିଲେ, ''ଆପଣ ଯେ 'ତୁମକୁ' ବୋଲି କହୁଛନ୍ତି ତା'ର ଅଭିପ୍ରାୟ କ'ଣ ? ମୋ ଆତ୍ମାକୁ ଯଦି ଇଚ୍ଛା କରୁଛ ତେବେ ତୁମର ଓ ମୋର ଆତ୍ମା ତ ଗୋଟିଏ। ତୁମ ଶରୀରରେ ଯେଉଁ ଆତ୍ମା ଅଛି ମୋ ଦେହରେ ସେହି ଆତ୍ମା ରହିଛି। ଯଦି ଶରୀରକୁ ମୋର ଇଚ୍ଛା କରୁଛ ତେବେ ତାହା ତ ପଞ୍ଚଭୂତରେ ଗଢ଼ା। ସମସ୍ତଙ୍କ ଶରୀର ଏକ ଉପାଦାନରେ ଗଢ଼ା ଯାଇଛି।''

ରାଜକୁମାର କହିଲେ, ''ଦେବି ! ମୁଁ ତୁମ ଶରୀର ହିଁ ଚାହୁଁଛି।'' ଯୋଗିନୀ ଉତ୍ତର ଦେଲେ, ''ଠିକ୍ ଅଛି, ମୁଁ ତୁମର ରାଜମହଲରେ ରହିବି। ଆଜିଠୁଁ ସାତଦିନ ପରେ ମୋତେ ସାକ୍ଷାତ କରିବ, ଆଉ ଯଦି ଇଚ୍ଛା ଥିବ ତେବେ ମୋତେ ବିବାହ କରିବ।'' ରାଜକୁମାର ଆନନ୍ଦ ମନରେ ଯୋଗିନୀଙ୍କ ସୁଖ ସୁବିଧା ନିମିତ୍ତ ସମସ୍ତ ସାମଗ୍ରୀ ପ୍ରସ୍ତୁତ କରି ରଖିଲେ। ଯୋଗିନୀ ସାତଦିନ ଭାଇ ରାଜମହଲ ମଧ୍ୟରେ ରହିଲେ। ସାତଦିନ ସାତଟା ଯୁଗ ପରି

ବିତିଗଲା। ଅଷ୍ଟମ ଦିନ ଯୋଗିନୀ ରାଜକୁମାରଙ୍କୁ ଡକାଇ ପଠାଇଲେ। ରାଜକୁମାର ଯାଇ ଦେଖିଲେ ଯୋଗିନୀର ସମଗ୍ର ଶରୀର ଖୁବ୍ ବଡ଼ ବଡ଼ ବ୍ରଣରେ ପରିପୂର୍ଣ୍ଣ ହୋଇଛି। ସେଥିରୁ ଦୁର୍ଗନ୍ଧ ପୂଜ ବାହାରୁଛି। ଅତି କଷ୍ଟରେ ଯୋଗିନୀ କହିଲେ, ''ରାଜକୁମାର ! ତୁମେ ମୋତେ ବିବାହ କର।'' ରାଜକୁମାର କହିଲେ, ''ଦେବି ! ତୁମେ ସୁସ୍ଥ ହୋଇଯାଅ, ତା'ପରେ ବିବାହ ହେବି।'' ଯୋଗିନୀ କହିଲେ, ''ମୋର ଆଉ ଭଲ ହେବାର ଆଶାନାହିଁ। ମୋର ରୋଗ ଅତି ଭୟଙ୍କର। ଏହା ହେଉଛି ଗଳିତ କୁଷ୍ଠ। ଏଥିରୁ ବାହାରୁଥିବା ପୂଜ ଯାହା ଦେହରେ ଲାଗିବ ସେ ମଧ୍ୟ ଏହି ରୋଗରେ ଆକ୍ରାନ୍ତ ହେବ। ତେଣୁ, ଅନ୍ୟ କାହାକୁ ମୋର ଶରୀର ସ୍ପର୍ଶ କରିବାକୁ ନ ଦେଇ ତୁମେ ହିଁ ମୋତେ ବିବାହ କରି ସୁଖୀ ହୁଅ।''

ରାଜକୁମାର କହିଲେ, ''ଯଦି ତୁମର ଶରୀରକୁ ସ୍ପର୍ଶ କରି ନ ପାରିବି ତେବେ ତୁମକୁ ବିବାହ କରିବି କିପରି ?'' ଯୋଗିନୀ ଉତ୍ତର ଦେଲେ, ''ମୁଁ ତ କେବେ ତୁମକୁ ମୋ ଶରୀର ସ୍ପର୍ଶ କରିବାକୁ ବାଧା ଦେଇ ନାହିଁ।'' କୁମାର କହିଲେ, ''ତୁମେ ତ ମନା କରି ନାହିଁ, କିନ୍ତୁ ଏବେ ସ୍ପର୍ଶ କଲେ ମୋତେ ବି ଏ ରୋଗ ଆକ୍ରମଣ କରିବ। ତେବେ ବିବାହ କରି ଲାଭ କ'ଣ ?'' ଯୋଗିନୀ କହିଲେ, ''କୁମାର ! ତୁମେ ମୋର ଦେହକୁ ଭୋଗ କରିବାକୁ ଚାହିଁ ନ ଥିଲ ? ପତ୍ନୀଠାରୁ ଜନ୍ମିତ ସନ୍ତାନକୁ ପତି ନିଜର ସନ୍ତାନ ବୋଲି କହେ। ମୋ ଶରୀରରୁ ଯେଉଁ ପୂଜ ବାହାରୁଛି, ତାହା ବି ତୁମର ପୂଜ ରୂପେ ପରିଚିତ ହେବ। ଏହି ରୋଗ ଶରୀରରୁ ବାହାରିଛି, ଯାହାକୁ ତୁମେ ଚାହିଁଥିଲ। ତେଣୁ ସେହି ଶରୀରରୁ ଉତ୍ପନ୍ନ ରୋଗକୁ ମଧ୍ୟ ତୁମେ ନେବା ଆବଶ୍ୟକ। ମୋର ଯେଉଁ ରୂପ ପ୍ରତି ତୁମର ଆସକ୍ତି ଥିଲା ତାହା ଆଜି କୁଆଡ଼େ ଗଲା ? ସତ କହ କୁମାର, ପ୍ରଥମେ ମୋ ପ୍ରତି ତୁମର ଯେଉଁ ଆକର୍ଷଣ ଥିଲା ତାହା ଏବେ ସେହିଭଳି ଅଛି କି ନାହିଁ?'' ରାଜକୁମାର କହିଲେ, ''ସତ୍ୟ କହିବାକୁ ଗଲେ ଏମେ ତୁମର ଏଭଳି ଅବସ୍ଥା ଦେଖି ମୋତେ ଘୃଣା ଲାଗୁଛି। ଶିଷ୍ଟାଚାର ବଶତଃ ମୁଁ ତୁମ ସହିତ କଥାବାର୍ତ୍ତା କରୁଛି। କିନ୍ତୁ ଦୁର୍ଗନ୍ଧବଶତଃ ଏଠାରେ ଅଧିକ ସମୟ ରହିବା ମୋ ପକ୍ଷରେ କଷ୍ଟକର ହେଉଛି, ବିବାହ କରିବା ତ ଦୂରର କଥା।''

ଏହା ଶୁଣି ଯୋଗିନୀ ହସି ହସି ଗଡ଼ିଗଲେ। ନିଜର ଯୋଗଶକ୍ତି ବଳରେ ସେ ରାଜକୁମାରକୁ ଶିକ୍ଷା ଦେବା ନିମିତ୍ତ ଏପ୍ରକାର ବେଶ ରଚନା କରିଥିଲେ। ରାଜକୁମାରଙ୍କୁ ଉପଦେଶ ଦେଇ ଯୋଗିନୀ ଅନ୍ତର୍ଦ୍ଧାନ ହୋଇଗଲେ। ଏହାର ସାରକଥା ହେଉଛି, **ଯେ ସୌନ୍ଦର୍ଯ୍ୟର ଯଥାର୍ଥ ସ୍ୱରୂପ ଜାଣେ ନାହିଁ ସେ ବାହ୍ୟ ରୂପଦ୍ୱାରା ଆକୃଷ୍ଟ ହୋଇ ଆତ୍ମଘାତୀ ହୁଏ। ସୌଭାଗ୍ୟବଶତଃ ଯଦି ଉପଯୁକ୍ତ ଗୁରୁ ମିଳିବେ, ତେବେ ବ୍ୟକ୍ତିର ଏହି ପ୍ରବଳ ଆସକ୍ତିକୁ ଯୁକ୍ତିବଳରେ ପ୍ରତିହତ କରାଯାଇପାରିବ।**

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଗୁରୁ ପତଙ୍ଗଠାରୁ ଲାଭ କରିଥିବା ଶିକ୍ଷା ବିଷୟ ବୁଝାଇବାକୁ ଯାଇ ଅବଧୂତ କହିଲେ, ''ରାଜନ୍ ! ମୁଁ ଦିନେ ବୁଲୁ ବୁଲୁ ନଗର ବାହାରେ ଥିବା ଗୋଟିଏ ଘରେ ପହଞ୍ଚିଲି। ସେଠାରେ ଦୀପଟିଏ ଜଳୁଥିଲା। ବାହାରୁ ହଜାର ହଜାର ପତଙ୍ଗ ଆସି ସେହି ଦୀପଶିଖାରେ ଭସ୍ମୀଭୂତ ହେଉଥିଲେ। ଦୀପର ଜ୍ୟୋତି ଏତେ ଆକର୍ଷକ ଥିଲା ଯେ ସେହି ଆକର୍ଷଣକୁ ଏଡ଼ି ନ ପାରି ପତଙ୍ଗଟିଏ ଆସେ ଓ ସେହି ଜ୍ୱଳନ୍ତଜ୍ୟୋତି ଆଲିଙ୍ଗନ କରିବାମାତ୍ରେ ଭସ୍ମହୋଇଯାଏ। ଦ୍ୱିତୀୟ ପତଙ୍ଗ ଆଖି ଆଗରେ ଏହି ଦୁଃଖାନ୍ତ ପରିଣତି ଦେଖି ନିବୃତ୍ତ ହେବା ଦୂରେ ଥାଉ, ସେ ବି ଦୌଡ଼ି ଆସେ ଓ ଭସ୍ମ ହୁଏ।

ଏହି ଘଟଣା ଦେଖି ମୋର ଶିକ୍ଷା ହେଲା ଯେ, ପୁରୁଷ ସ୍ତ୍ରୀ ପ୍ରତି ଓ ସ୍ତ୍ରୀ ପୁରୁଷ ପ୍ରତି ଆସକ୍ତ ହୋଇ ପତଙ୍ଗଭଳି ନଷ୍ଟ ହୋଇଯାଉଛନ୍ତି।

"ସମସ୍ତେ ଜାଣନ୍ତି ଅସତୀ ହିଁ ବହୁ ପୁରୁଷଙ୍କ ସହିତ ସମ୍ପର୍କ ରଖିଥାଏ। ସେହିଭଳି ଭ୍ରଷ୍ଟ ପୁରୁଷ ମଧ୍ୟ ମିଥ୍ୟା ଚାଟୁବଚନ ଦ୍ୱାରା ବହୁ ନାରୀଙ୍କୁ ପ୍ରତାରଣା କରେ। ନିଜର ସ୍ୱାର୍ଥସିଦ୍ଧିପାଇଁ ଉଭୟ ସ୍ତ୍ରୀ ଓ ପୁରୁଷ ଆଚାର ଭ୍ରଷ୍ଟ ହୋଇ ଅଶେଷ ଦୁଃଖ ଭୋଗ କରନ୍ତି। ପଣ୍ୟ ସ୍ତ୍ରୀ କାହାରି ନୁହେଁ। ଏହାଜାଣି ମଧ ସମସ୍ତେ ତା'ରି ଜାଲରେ ପଡ଼ନ୍ତି। ତା'ର ହାବ, ଭାବ, କଟାକ୍ଷାଦିର ମିଥ୍ୟା ପ୍ରଲୋଭନକୁ ଅଜିତେନ୍ଦ୍ରିୟ ପୁରୁଷ ଏଡ଼େଇ ଯାଇ ପାରିନି। ପରିଣାମରେ ଘୋର ଦୁଃଖାନ୍ଧକାରରେ ପଥଭ୍ରଷ୍ଟ ହୁଏ।

ସୁନ୍ଦରୀ ସ୍ତ୍ରୀକୁ ଦେଖି ଲୋକେ ଆସକ୍ତ ହୁଅନ୍ତି। ସ୍ତ୍ରୀ ତ ମଳମୂତ୍ରାଦି ଆବର୍ଜନାର ଏକ ଥଳି। ସୁବର୍ଣ୍ଣ ଦେଖି ଲୋକେ ଆକୃଷ୍ଟ ହୁଅନ୍ତି। ସୁବର୍ଣ୍ଣ ଯେ ଅଗ୍ନିର ମଳମାତ୍ର, ଏହା ସମସ୍ତେ ଜାଣନ୍ତି। ସେହି ମଳରେ ହିଁ କନକ କୁଣ୍ଡଳ ତିଆରି ହୁଏ। କୁଆ ଯେପରି ମଳ ଭୋଜନ ଦ୍ୱାରା ସୁଖୀ ହୁଏ ସେହିପରି ଅଜ୍ଞାନ ଲୋକ ସୁବର୍ଣ୍ଣ ଲାଭ କରି ନିଜକୁ ସୁଖୀ ମନେ କରେ। କେବେ କେବେ ସୁଗନ୍ଧ ଚନ୍ଦନ, ମାଳା ଓ ସୁନ୍ଦର ସୁନ୍ଦର ବସ୍ତ୍ରଲାଭ କରି ଲୋକ ପ୍ରସନ୍ନ ହୁଏ। ଏ ସମସ୍ତ ହେଉଛି ପୃଥିବୀର ବିକାର ଏବଂ ମଳରୁ ହିଁ ସେଗୁଡ଼ିକ ଉତ୍ପନ୍ନ। ସେ ସବୁ ବସ୍ତୁରେ ଆସକ୍ତ ହେବା ବୁଦ୍ଧିମତ୍ତାର ପରିଚାୟକ ନୁହେଁ। କିନ୍ତୁ, ସଂସାରୀ ଲୋକ ଏସବୁ ବସ୍ତୁଠାରୁ ଦୂରରେ ରହି ପାରିବ ନାହିଁ। ସେଥିରୁ ମୁକ୍ତ ହେବ କିପରି ? ରାଜା ଯଦୁଙ୍କ ଏହି ପ୍ରଶ୍ନର ଉତ୍ତର ଦେଇ ଅବଧୂତ କହିଲେ, "ରାଜନ! ମୁକ୍ତ ରହିବାକୁ କିଏ କହୁଛି ? ପୃଥିବୀ ଉପରେ ରହିବାକୁ ହେବ, ଆକାଶ ଭିତରେ ଚାଲିବାକୁ ହେବ, ତେଜଦ୍ୱାରା ଦେଖିବାକୁ ପଡ଼ିବ ଓ ଅନ୍ନ, ଜଳ ଓ ବାୟୁର ଆହାରଦ୍ୱାରା ଶରୀର ଧାରଣ କରିବାକୁ ହେବ। ଏଗୁଡ଼ିକର ସହାୟତା ବିନା ମଣିଷ ରହିପାରିବ ନାହିଁ, କି ଏ ଗୁଡ଼ିକଠାରୁ ଦୂରରେ ରହିପାରିବ ନାହିଁ, କିନ୍ତୁ ସେ ସବୁଠାରୁ ଭୋଗ କରିବାର ମନୋବୃତ୍ତି ପରିହାର କରିବାକୁ ପଡ଼ିବ। ସବୁଠାରେ ସମାନ ଭାବ ରଖିବାକୁ ହେବ। କୌଣସି ଗୋଟିକରେ ଯଦି ନିଜର ଆତ୍ମୀୟତା ଜାତ ହେବ ତେବେ ସେଠାରେ ଭୋଗବାସନା ଜାଗ୍ରତ ହେବ। ଉଦ୍ୟାନରେ ଫୁଟିଥିବା ନାନାପ୍ରକାର ଫୁଲ ମଧ୍ୟରୁ କୌଣସି ଫୁଲକୁ ନିଜର କରିବାକୁ ଚାହିଁଲେ ଲୋକ ତାକୁ ଛିଣ୍ଡାଇଆଣେ। ଅଜସ୍ର ଅର୍ଥ ଲୋକଙ୍କ ପାଖରେ ରହିଛି। କିନ୍ତୁ ଉଦ୍ୟାନର ଫୁଲକୁ ଛିଡ଼ାଇ ଆଣିଲା ଭଳି ଆମେ ଅର୍ଥ ପ୍ରତି ଆସକ୍ତ ହେଲେ ଆମକୁ ଚୋରିକରି, ଠକେଇ, ମାଗି ବା ଅନ୍ୟ ଉପାୟରେ ସେହି ଅର୍ଥକୁ ନିଜ କାମରେ ଲଗାଇବାକୁ ପଡ଼େ। ଏହାହିଁ ବନ୍ଧନର କାରଣ। କେତେ ସ୍ତ୍ରୀ ଲୋକ ଅଛନ୍ତି, ତନ୍ମଧ୍ୟରେ କିଏ ମା', ଭଉଣୀ ବା ଝିଅଭଳି ଅଛନ୍ତି। କିନ୍ତୁ ଯାହାଠାରେ ଭୋଗ ମନୋଭାବ ଜାତ ହେବ, ତାହାରି ସ୍ମୃତି ସର୍ବଦା ଆମକୁ ବ୍ୟାକୁଳ କରିବ। ସେଥିପାଇଁ ଲୋକକୁ ବାଧ୍ୟ ହୋଇ ଧର୍ମ, କର୍ମ, ଲୋକଲଜ୍ଜା ସବୁ କିଛି ପରିତ୍ୟାଗ କରିବାକୁ ପଡ଼େ। ଏହାହିଁ ଅଧର୍ମ, ପତନ ଓ ବନ୍ଧନର କାରଣ। ସେ ଭଳି ନିଜର ସଦସଦ୍ ଭାବନା ରହିତ ହୋଇ ପତଙ୍ଗ ଭଳି ନଷ୍ଟ ପରିଣତି ଲାଭ କରେ। ତେଣୁ, ସଂସାରର ସମସ୍ତ ବସ୍ତୁ ଯେପରି ଥିଲା ସେହିପରି ଅଛି ଓ ରହିବ। ସେଥିରୁ ଭୋଗବୁଦ୍ଧି ପରିହାର କରିବା ମାନବର ଧର୍ମ। ଏହାହିଁ ପତଙ୍ଗଠାରୁ ମୁଁ ଶିକ୍ଷା କଲି।

ସୂତ କହୁଛନ୍ତି, ''ହେ ମୁନିଗଣ ! ରାଜା ଯଦୁଙ୍କୁ ଅବଧୂତ ମହୁମାଛିଠାରୁ ଶିଖିଥିବା ଉପଦେଶ ବିଷୟରେ ଯାହା କହିଥିଲେ ତାହା ଶୁଣନ୍ତୁ।''

**ଛପ୍ପୟ**

ତାତେ ସୁନ୍ଦର ନାରି ନିରଖି ନହିଁ ଚିତ୍ତ ଚଲାବୈ।
ନର ସୁବେଶ ଲଖି ନାରି କବହୁଁ ମନ ନାହିଁ ଡିଗାବୈ।।
ଜୋ ଧାରୈ ନହିଁ ସୀଖ ବ୍ୟର୍ଥ ନର ଦେହ ଗଁବାବୈ।
ହ୍ୱୈ ପତଙ୍ଗ ସମ ପତିତ ମୃତ୍ୟୁକେ ମୁଖମହିଁ ଜାବୈ।।
ୟହ ସୁନ୍ଦର ଶିକ୍ଷା ସୁଖଦ, ଲଇ ପତଂଗ ଗୁରୁ ସ୍ୱୟଂ କରି।
ମଧୁ ମକ୍ଖୀ ତ୍ୟୋ ଗୁରୁ କରୀ, ସୁନହୁ ତାହିଁ ଅବ ଧୀର ଧରି।।



# ମହୁମାଛିଠାରୁ ଶିକ୍ଷା

**ସାୟନ୍ତନଂ ଶ୍ୱସ୍ତନଂ ବା ନ ସଂଗୃହ୍ଣୀତ ଭିକ୍ଷୁକଃ।**
**ମକ୍ଷିକା ଇବ ସଂଗୃହ୍ଣନ୍ ସହ ତେନ ବିନଶ୍ୟତି।।** ★

[ଶ୍ରୀ ଭା. ୧୧ସ୍କ. ୮ଅ. ୧୨ଶ୍ଳୋକ]

**ଛପ୍ପୟ**

ପୁଷ୍ପନିତୈ ମଧୁ ଲେଇ ନ ତିନିକୋ ରୂପ ବିଗାରୈ।
ତ୍ୟୋଂ ହୀ ମୁନି ମଧୁକରୀ ବୃତ୍ତି ଭିକ୍ଷାହିତ ଧାରୈ।।
ସୁମନନି ତୈ ଗହି ସାର ସ୍ୱାର୍ଥ ନିତ ଅପନୋ ସାଧୈ।
ତ୍ୟୋଂ ଶାସ୍ତ୍ରନି କୋ ସାର ସମୁଝ ହରିକୁଁ ଆରାଧୈ।।
ଇତ ଉତତୈ ଅତି ଯତ୍ନ କରି, ପକ୍ଷୀ ମଧୁ ଛତ୍ତା ଧରୈ।
ତ୍ୟୋଂ ୟତି କବହୁଁ ଭୂଲତୈ, ସଂଚୟ ନହିଁ କବହୁଁ କରେ।।

---



| | |
|---|---|
| ଏବେ ହେ ଶୁଣ ନୃପବର । | ଗୁରୁ ମୋହର ମଧୁକର ।। |
| ଅଳପ ଅଳ୍ପ ଗ୍ରାସ କରି । | ଯାବତ ଦେହ ମାତ୍ର ଧରି ।। |
| ଆହୁରି ତାର ଉପଦେଶ । | ପାଇ ମୋ ମନ ହେଲା ତୋଷ ।। |
| ଧନ ଅର୍ଜନେ ଯାର ଆଶ । | ନିରତେ ଦୁଃଖ ଶୋକ ପ୍ରାସ ।। |
| ନ କରି ଆତ୍ମଭୋଗ ଦାନ । | ଧନ ସଞ୍ଚଇ ରାତ୍ରଦିନ ।। |
| ତାହାର ଧନ ହରେ ଆନେ । | ମଧୁ ସଂଚଇ ମାଛି ଯେହ୍ନେ ।। |

[ଭାଗବତ :ଜଗନ୍ନାଥ ଦାସ : ୧୧ଶ ସ୍କ. ୯ମ. ଅ.]

ଲୋଭ ଓ ଅବିଶ୍ୱାସର ବଶବର୍ତ୍ତୀ ହୋଇ ଆମେ ସମ୍ପତ୍ତି ଠୁଳ କରୁ। ଧନଥିଲେ କାମରେ ଆସିବ, ସମ୍ଭବତଃ ଭବିଷ୍ୟତରେ ଏହି ଧନ ଆଉ ମିଳିବ ନାହିଁ। ଅବିଶ୍ୱାସ ହେତୁ ଆମେ ଅନ୍ୟର ଭାଗକୁ ଲୁଚାଇ ରଖୁ। ସେହି ପ୍ରାପ୍ୟରୁ ଅପର ଜଣକ ବଞ୍ଚିତ ହୁଏ। ନିଜର ସୁଖ ସୁବିଧା ନିମିତ୍ତ ଅନ୍ୟର ସୁଖ ସ୍ୱାଚ୍ଛନ୍ଦ୍ୟ ଅପହରଣ କରୁ। ଏହି କାରଣରୁ ଅନ୍ୟମାନେ ସଂଗୃହୀତ ଧନ ନେଇଯିବାପାଇଁ ଉଦ୍ୟମ କରନ୍ତି। ସ୍ୱାର୍ଥପର ଓ ଧନୀ ଲୋକ ପ୍ରତି କାହାରି ଆନ୍ତରିକ ସହାନୁଭୂତି ରହେ ନାହିଁ। ଯେଉଁମାନେ ଧନୀ ପ୍ରତି ସୌହାର୍ଦ୍ଦ୍ୟ ଓ ସହାନୁଭୂତି ଦେଖାନ୍ତି, ସେମାନଙ୍କ ମନରେ ନିଜ ନିଜର ସ୍ୱାର୍ଥ ସିଦ୍ଧ କରିବା ଲକ୍ଷ୍ୟ ଥାଏ। ଯାହା ପାଖରେ ଯେତେ ଧନ ଥାଏ ସେ ସେତିକି ଅଧିକ କୃପଣ, ଅଶାନ୍ତ ଓ ଲୋକ ସହାନୁଭୂତିରୁ ବଞ୍ଚିତ ହୁଏ। କିନ୍ତୁ, ଯେ ଯେତିକି ତ୍ୟାଗ କରେ, ସେ ଅଧିକ ଲୋକଙ୍କ ହୃଦୟରେ ସମ୍ମାନଜନକ ସ୍ଥାନ ଲାଭ କରେ। ସେ ସମସ୍ତଙ୍କ ସହାନୁଭୂତି ପାଏ ଓ ସର୍ବଦା ଶାନ୍ତ ରହେ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ। ଅବଧୂତ ରାଜାଙ୍କୁ ବୁଝାଇ କହିଲେ, ''ରାଜନ୍। ମହୁମାଛିଠାରୁ ମୁଁ ବହୁଶିକ୍ଷା ଲାଭ କରିଛି। ପ୍ରଥମ ଶିକ୍ଷା ହେଲା, ମହୁମାଛି ବହୁ ପୁଷ୍ପରୁ ମଧୁ ସଂଗ୍ରହ କରେ। ତେଣୁ, ଯତି କେବେହେଲେ ଜଣକର ଅନ୍ନରେ ଜୀବନ ଧାରଣ କରିବା ଉଚିତ୍ ନୁହେଁ। ସେ ଘର ଘର ବୁଲି ମଧୁକରୀ ବୃତ୍ତିରେ ଭିକ୍ଷାନ୍ନ ଏକତ୍ର କରିବା ଉଚିତ। କେବଳ ଜୀବନ ଧାରଣପାଇଁ ଅନ୍ନ ସଂଗ୍ରହ କରଣୀୟ। ଦ୍ୱିତୀୟରେ, ମହୁମାଛି ପୁଷ୍ପରୁ ମଧୁ ଏପରି ଭାବରେ ଗ୍ରହଣ କରେ ଯେ ପୁଷ୍ପର କୌଣସି ବିକୃତି ଜାତ ହୁଏ ନାହିଁ। ସେହିପରି ତ୍ୟାଗୀ ଯତି କୌଣସି ଗୃହସ୍ଥର ବୋଝ ନ ହୋଇ ସମସ୍ତଙ୍କଠାରୁ କିଛି କିଛି ନେବା ଉଚିତ୍, ଯଦ୍ୱାରା କାହାରି ମନରେ ଯେପରି କୌଣସି କଷ୍ଟ ହେବ ନାହିଁ। ଯତି ସର୍ବଦା ଅଜଗରୀ ବୃତ୍ତି ଅବଲମ୍ବନ କରି ପ୍ରାରବ୍ଧ ଭୋଗରେ ଯାହା ମିଳିବ ସେଇଥିରେ ସନ୍ତୁଷ୍ଟ ରହିବା ବିଧେୟ। ଯତିକୁ ପେଟପାଇଁ ନିହାତି ମାଗିବାକୁ ହେବ, ତେବେ ନ୍ୟୂନତମ ଦାନ ଗ୍ରହଣ କରିବା ଉଚିତ, ଯାହାଦ୍ୱାରା ଦାତାର ମନରେ କୌଣସି ପ୍ରକାର କଷ୍ଟ ହେବ ନାହିଁ।·ତୃତୀୟରେ ମହୁମାଛି ପୁଷ୍ପର ସାର ସ୍ୱରୂପ ମଧୁ ସଂଗ୍ରହ କଲାଭଳି ସାଧୁ ଶାସ୍ତ୍ରର ସାର ସିଦ୍ଧାନ୍ତ ଜାଣିବା ଓ ତଦନୁସାରେ ଆଚରଣ କରିବା ଉଚିତ।

ଶାସ୍ତ୍ର ହେଉଛି ଅନନ୍ତ। ବ୍ରହ୍ମାଦି ଦେବଗଣ ଏକଶାସ୍ତ୍ରର ପରପାରିକୁ ଯାଇପାରି ନାହାନ୍ତି। ସେ ଅବସ୍ଥାରେ ସମସ୍ତ ଶାସ୍ତ୍ର ଅଧ୍ୟୟନ ମାନବ ପକ୍ଷରେ ଅସମ୍ଭବ। ପାପର ପ୍ରାୟଶ୍ଚିତ ସ୍ମୃତିଶାସ୍ତ୍ର ଅନୁସାରେ କରାଯାଏ। ସାରାଜୀବନ ପ୍ରାୟଶ୍ଚିତ କରୁଥିଲେ ବି ମଣିଷ ଉଦ୍ଧାର ହୋଇପାରେ ନାହିଁ। ତେଣୁ, ନିଜର ସୂକ୍ଷ୍ମବୁଦ୍ଧି ଦ୍ୱାରା, ଶାସ୍ତ୍ର ପ୍ରତିପାଦିତ ଲକ୍ଷ୍ୟକୁ ହିଁ ହୃଦୟଙ୍ଗମ କରିବାକୁ ହେବ। ଜପ, ତପ, ତୀର୍ଥ, ବ୍ରତ, ସଂଯମ, ସଦାଚାର ଓ ଶୁଭକର୍ମ ଯେତେ ଅଛି ସେ ସବୁର ପ୍ରଭୁପଦଲାଭ ହିଁ ମୁଖ୍ୟ ଲକ୍ଷ୍ୟ। ଭଗବାନଙ୍କ ଗୁଣକୀର୍ତ୍ତନରେ ମନ ଲାଗିରହୁ, ଏହାହିଁ ସମସ୍ତ ଶାସ୍ତ୍ରର ଅନ୍ତିମ ଲକ୍ଷ୍ୟ। ତେଣୁ, ଇତସ୍ତତଃ ବିକ୍ଷିପ୍ତ ଚିତ୍ତ ନ ହୋଇ, ସଗୁଣ ଭାବେ ହେଉ, ବା ନିର୍ଗୁଣ ଭାବେ ହେଉ, ଭଗବଦ୍ ଉପାସନା ଓ ଭଜନରେ ମନୋନିବେଶ କରିବାହିଁ ମାନବର ପରମ କର୍ତ୍ତବ୍ୟ।

''ଚତୁର୍ଥରେ, ମହୁମାଛିଠାରୁ ସଂଗ୍ରହର ପରିଣତି ବିଷୟରେ ଶିକ୍ଷା କଲି। କେତେ ଦୁଃଖ କଷ୍ଟ ସହି ମହୁମାଛି ମଧୁ ସଂଗ୍ରହ କରି ସାଇତି ରଖେ। ସେ ନିଜପାଇଁ ଖୁବ୍ କମ୍ ବ୍ୟୟ କରି ବେଶୀ ବେଶୀ ସଞ୍ଚୟ କରେ। କିନ୍ତୁ, ଶେଷରେ କୌଣସି ବ୍ୟକ୍ତି ସେହି କଷ୍ଟ

ସଞ୍ଚିତ ମଧୁ ଛଡ଼େଇ ନିଏ, ବହୁ ମାଛିଙ୍କୁ ହତ୍ୟା ମଧ କରେ। ସେହିପରି ଯତି ଯଦି ଭିକ୍ଷାନ୍ନ ଧନ ଠୁଳ କରି ରଖିବେ ସେହି ଧନ ତାଙ୍କ ହାତରୁ ନିଶ୍ଚୟ ଯିବ, ତା'ସହିତ ଜୀବନର ଚିନ୍ତା ମଧ ଲାଗି ରହିବ। କାରଣ ସାଧୁର ଧନ ଓ ବେଶ୍ୟାର ଯୌବନ ଉପରେ ସମସ୍ତଙ୍କର ଲୋଭ ଦୃଷ୍ଟି ଥାଏ। କାମାସକ୍ତ ପୁରୁଷ ବେଶ୍ୟାଙ୍କୁ ଦେଖିବାମାତ୍ରେ ହିଁ ଉପଭୋଗ କରିବାକୁ ଚାହେଁ। ତେଣୁ, ସାଧୁର ଧନ ସଞ୍ଚୟ କରିବା ଉଚିତ୍ ନୁହେଁ। ଯଦି ପ୍ରାରବ୍ଧ ବଶତଃ ସେପରି ଘଟେ ତେବେ ସତ୍କାର୍ଯ୍ୟରେ ସମସ୍ତ ସମ୍ପତ୍ତି ବ୍ୟୟ କରିବା ଉଚିତ୍। ଧନ ସଂଗ୍ରହର ଆସକ୍ତିରୁ ଲାଭ, ଲାଭରୁ ଲୋଭ ଏବଂ ଲୋଭରୁ ପାପ ଜାତ ହୁଏ। ଲୋଭ ହିଁ ପାପର ମୂଳ କାରଣ। ଯେଉଁ ସାଧୁ ଧନ ସଞ୍ଚୟ କରେ ସେ ଗୃହସ୍ଥଠାରୁ ଅଧିକ ପାପୀ ବୋଲି ଗୃହୀତ ହୁଏ।

''ଗୃହସ୍ଥ ସର୍ବଦା ନିଜକୁ ଛୋଟ ମନେ କରେ। ସାଧୁ, ବ୍ରାହ୍ମଣଙ୍କୁ ପୂଜା କରେ। ଯଥାଶକ୍ତି ଦାନଧର୍ମ କରେ। କିନ୍ତୁ ଧନୀ ସାଧୁ ଦାନ, ଧର୍ମ, ପୁଣ୍ୟ ବା ପରୋପକାର କାର୍ଯ୍ୟରେ ଦେବାକୁ ପଡ଼ିଲେ କହେ, ଏହା ତ ଗୃହସ୍ଥର କାର୍ଯ୍ୟ। ଏକଥା ସତ୍ୟ ଯେ ଦାନ ଧର୍ମ ଗୃହସ୍ଥର କାର୍ଯ୍ୟ, କିନ୍ତୁ ଧନ ସଞ୍ଚୟ କରି ତାକୁ ସର୍ପ ଭଳି ଛାତି ଉପରେ ଜାବୁଡ଼ି ଧରି ରଖିବା କ'ଣ ତ୍ୟାଗୀ ସାଧୁର କର୍ତ୍ତବ୍ୟ ? ତେଣୁ ଧନ ଆସିବା ମାତ୍ରେ ସାଧୁ ପରମାର୍ଥ ପଦରୁ ବିଚ୍ୟୁତ ହୁଏ। ପରୋପକାରପାଇଁ ମଧ୍ୟ ସାଧୁ ଧନ ସଂଗ୍ରହ କରିବା ଉଚିତ ନୁହେଁ। ଯେ ସର୍ବସ୍ୱ ତ୍ୟାଗ କରିଛି ତା'ଠାରେ ପରୋପକାରର କି ମୂଲ୍ୟ ଅଛି ? ସବୁଠାରୁ ନିଜର ମମତା ଓ ଆତ୍ମୀୟତା ତୁଟାଇବା ଅପେକ୍ଷା ପରୋପକାର କ'ଣ ବଡ଼ କାର୍ଯ୍ୟ ? ନିରାସକ୍ତ ଭାବନାହିଁ ପରୋପକାରଠାରୁ ବଡ଼ କାର୍ଯ୍ୟ। ଯାହାର ଦୃଷ୍ଟିରେ ସବୁକିଛି ନିଜର ବୋଲି ପ୍ରତୀତ ହୁଏ ସେ ଅଧିକ କିପ୍ରକାର ପରୋପକାର କରିପାରିବ। ସେ ଯାହା କରେ, ସବୁ ପରର କଲ୍ୟାଣପାଇଁ ଉଦ୍ଦିଷ୍ଟ। ମାଟି ଓ ସୁନା ମଧ୍ୟରେ ଭେଦଭାବନା ଯାହାର ନାହିଁ ତା'ଠାରେ ପରୋପକାରର ଅଧିକ କିଛି ମହତ୍ତ୍ୱ ନଥାଏ। କାଶୀର ମାଟିରେ କାଶୀର, ପ୍ରୟାଗର ମାଟିରେ ପ୍ରୟାଗର ଲୋକେ ଉପକୃତ ହୋଇଛନ୍ତି। ଏଥିରେ ପରୋପକାର ବୋଲି ଅଧିକ କିଛି ନାହିଁ। ଏଣୁ ତେଣୁ ଧନ ସଂଗ୍ରହ କରି ସୁଆଙ୍ଗ କରିବାର ଲାଭ କ'ଣ ? ଯାହା କିଛି ହେଉଛି ସବୁ ପରୋପକାରପାଇଁ ହେଉଛି। ପୃଥିବୀ ସମସ୍ତଙ୍କୁ ଅନ୍ନଦାନ କରୁଛି। ସେ ସଂଗ୍ରହ କରି କିଛି ରଖୁନାହିଁ। ସେହିପରି ବୃକ୍ଷ ଫଳ ଦେଉଛି, ନଦୀ ଜଳ, ସୂର୍ଯ୍ୟ ଆଲୋକ, ବାୟୁ ପବନ ଓ ଆକାଶ ଛତ୍ର ଦାନ କରୁଛି। ଏହାଠାରୁ ବଳି ଆଉ ବଡ଼ ପରୋପକାର କ'ଣ ଅଛି ? ସେହିପରି ସାଧୁର ତ୍ୟାଗ ଦ୍ୱାରା ହିଁ ମହାନ୍ ପରୋପକାର ସାଧିତ ହେଉଛି। ତେଣୁ ସାଧୁ ସର୍ବଦା ଧନସଞ୍ଚୟଠାରୁ ଦୂରରେ ରହିବା ଉଚିତ୍।''

ମହର୍ଷି ଶୌନକ କହିଲେ, ''ମହାଶୟ! ଆମେ ସମସ୍ତେ ତ ବଡ଼ ସଂଗ୍ରହୀ। କାରଣ ଆମ ପାଖରେ କେତେ ଅନ୍ନ, ଘୃତ ଏକତ୍ରୀତ ହୋଇ ରହିଛି। ଆହୁରି ଅନ୍ୟାନ୍ୟ ସାମଗ୍ରୀ ମଧ ରହିଛି। ଏହାଦ୍ୱାରା ଆମର ବି ଅଧୋଗତି ହେବ ନା କ'ଣ ?''

ମହର୍ଷି ସୂତ କହିଲେ— ''ହେ ଶୌନକ! ଆପଣଙ୍କ କଥା ଅଲଗା। ଅବଧୂତ ଯେଉଁ ଶିକ୍ଷା ଦେଉଛନ୍ତି, ତାହା ତ୍ୟାଗବୃତ୍ତିଶୀଳ ସିଦ୍ଧଙ୍କ ବିଷୟରେ ସୂଚନା ଦେଉଛି। ସେମାନେ ପ୍ରଥମେ ଗ୍ରହଣ କରନ୍ତି, ପରେ ସବୁକିଛି ତ୍ୟାଗ କରି ଭିକ୍ଷୁକ ଅବଧୂତ ହୁଅନ୍ତି। ଆପଣ ତ କାହାଠାରୁ କିଛି ଗ୍ରହଣ କରି ନାହାନ୍ତି। ତ୍ୟାଗ କରିବେ କାହାକୁ, କ'ଣ ବା ତ୍ୟାଗ

କରିବେ ? ଆପଣ ଯଥା ସମୟରେ ଫଳମୂଳ ଖାଉଛନ୍ତି, ଆଉ ଯାହା ମିଳୁଛି ତାକୁ ଯଜ୍ଞରେ ବ୍ୟୟ କରୁଛନ୍ତି। ଆପଣତ କାହାରିଠାରୁ ଭିକ୍ଷା ଗ୍ରହଣ କରୁ ନାହାନ୍ତି। ଏବଂ ଲୋକଙ୍କୁ ମିଛସତ କହି ଠକୁ ନାହାନ୍ତି। ଆପଣ ସାଧକମାନଙ୍କର ଆଦର୍ଶସ୍ଥାନୀୟ। ଆପଣଙ୍କ ସଂଗ୍ରହକୁ ସଂଗ୍ରହ କୁହାଯିବ ନାହିଁ। ତ୍ୟାଗର ଦୀକ୍ଷା ନେଇ ଯେ ସ୍ୱାର୍ଥବଶତଃ ସଞ୍ଚୟ କରିବସେ ସେ ହୁଏ ପତିତ। ଅନେକ ତ୍ୟାଗୀ ପ୍ରଥମେ ତ୍ୟାଗୀ ଥିଲେ। ପରେ ଧନ ସଞ୍ଚୟଦ୍ୱାରା ଲୋକଙ୍କର ଶତ୍ରୁତା ଅର୍ଜନ କଲେ। ପରିଶେଷରେ ସେମାନଙ୍କର ଧନ ଗଲା ଓ ପ୍ରାଣ ବି ଗଲା। ଅନେକ ସାଧୁ ଗୃହସ୍ଥ ପାଲଟିଗଲେ। ଅନେକ ସଂଯୋଗୀ, ଯୋଗୀ ଗୋସାଇଁ ରୂପେ ପରିଚିତ ହେଲେ। ତେଣୁ ହେ ମୁନିଗଣ। ସାଧନା କାଳରେ ଯଜ୍ଞ ନିମିତ୍ତ ସାମଗ୍ରୀ ଏକତ୍ରୀତ କରିବା ବା ପ୍ରଭୁଙ୍କ ଉପାସନା ନିମିତ୍ତ ପୂଜାସାମଗ୍ରୀ ସଂଗ୍ରହ କରିବା ଦୋଷାବହ ନୁହେଁ। ସିଦ୍ଧାବସ୍ଥାରେ ଶରୀର ରକ୍ଷା ନିମିତ୍ତ ଭିକ୍ଷାନ୍ନ ସଂଗ୍ରହ କରିବା ଅତୀବ ଦୋଷାବହ କାର୍ଯ୍ୟ।''

ଶୌନକ କହିଲେ, ''ମହାଶୟ। ସମସ୍ତ ଅବଗତ ହେଲୁ। ବର୍ତ୍ତମାନ ଅବଧୂତ ହାତୀକୁ ଗୁରୁଭାବେ ଗ୍ରହଣ କରି କି ଶିକ୍ଷା ଲାଭ କଲେ ତାହା ଆମ୍ଭମାନଙ୍କୁ ଦୟା କରି କହନ୍ତୁ।'' ମହର୍ଷି ସୂତ ଯଦୁଙ୍କ ପ୍ରଶ୍ନର ଉତ୍ତର ସ୍ୱରୂପ ଅବଧୂତ ଯାହା କହିଥିଲେ ତାହା ବର୍ଣ୍ଣନା କଲେ।

### ଛପ୍ପୟ

କର ପୈ ଭିକ୍ଷା ଲେଇ ଉଦର ମେ ଜିତୌ ସମାବୈ।
ଜଲ କେ ତଟ ପୈ ଜାଇ ପ୍ରେମ ତୈ ତାକୁଁ ପାବୈ॥
ବଚୈ ଅନ୍ନ କଛୁ ଶେଷ ଅନ୍ୟ ପ୍ରାନିନିକୁଁ ଦେବୈ।
କଲ ଯା ସାୟଂକାଲ ହେତୁ ନହିଁ ଯତି ଧରି ଲେବୈ॥
ତ୍ୟାଗୀ ବନି ସଂଚୟ କରୈ, ସୋ ପାଛେ ପଛତାଇଗୋ।
ମଧୁମକ୍ଷୀ ମଧୁହିତ ମରୈ, ତ୍ୟୋ ଯତି ହୂ ଗିରି ଜାଇଗୋ॥



# ହସ୍ତୀ ମୋର ଶିକ୍ଷାଗୁରୁ

ପଦାପି ଯୁବତୀଂ ଭିକ୍ଷୁର୍ନ ସ୍ପୃଶେଦ୍ ଦାରବୀମପି ।
ସ୍ପୃଶନ୍ କରୀବ ବଧ୍ୟେତ କରିଣ୍ୟା ଅଙ୍ଗସଙ୍ଗତଃ ।। 

[ଶ୍ରୀଭା.୧୧ସ୍କ, ୮ଅ, ୧୩ ଶ୍ଳୋକ]

**ଛପ୍‌ପୟ**

ଇକ ଦିନ ଘୂମତ ଫିରତ ଗୟୋ ନୃପବର ହୌ ବନ ମେ ।
ସାତ୍ୟୁଁ ଲଖିକେ ବନୀ କାଠକୀ ହଥିନୀ ମନମେ ।।
କୌନେ ଯହ ଧରି ଦଈ ଖିଲୌନା ବଡ଼ୌ ବନାୟୈ ।
ଇତନେମେ ମଦମତ୍ତ ଯୁବକ ଇକ ହାଥୀ ଆୟୈ ।।
ପ୍ରବଲ କାମ କେ ବେଗ ତେ, ଅନ୍ଧୋ ହ୍ୱୈ ଆଗେ ବଢ଼୍ୟୌ ।
ଫସ୍ୟୌ ପୈର ହଥିନୀ ସହିତ, ଅନ୍ଧେ କୂଆମେ ଗିରୟୌ ।।

ଦେଖିବା, ଶୁଣିବା, ଛୁଇଁବା ଓ ମନରେ ଭାବିବାଦ୍ୱାରା ଆସକ୍ତି ବଢ଼େ । ଦୁଇଟିର ମିଳନକୁ ସ୍ପର୍ଶ, ସ୍ପର୍ଶରୁ ଭାବ ଓ ଭାବରୁ ବିକୃତି ଜାତ ହୁଏ । ଶରୀର ସହିତ ଶରୀର ସ୍ପର୍ଶ ବା ମିଳନକୁ ସ୍ପର୍ଶ କୁହାଯାଏ ନାହିଁ । ମନଦ୍ୱାରା ହିଁ ଯଥାର୍ଥ ସ୍ପର୍ଶ ଘଟେ । ଯେ ଆମର ମନରେ ଅଛି, ସେ ସାତ ସାଗର ତେର ନଈ ଆରପାଖରେ ଥିଲେ ବି ତା' ସହିତ ମାନସିକ ସ୍ପର୍ଶ ଘଟେ । ସେହିଭଳି ହୃଦୟଦ୍ୱାରା ବ୍ରହ୍ମର ସ୍ପର୍ଶ ଲାଭ କରାଯାଏ । ଯୋଗୀ ଲୋକେ ବ୍ରହ୍ମସଂସ୍ପର୍ଶ କରନ୍ତି । ଆମେ ମଧ୍ୟ ପ୍ରିୟଜନଙ୍କୁ ସ୍ମରଣ କରି ଏକାନ୍ତରେ ଅଶ୍ରୁମୋଚନ କରୁ । ଏହାହିଁ ମାନସିକ ସ୍ପର୍ଶ, ଶବ୍ଦଦ୍ୱାରା ମଧ୍ୟ ସ୍ପର୍ଶ ବା ମିଳନ ସମ୍ଭବ ହୁଏ । ଆମେ ନିଜ ଘରେ ବସି ରହି ଅନ୍ୟ ଘରେ ଗୀତ ଗାଉଥିବା ବାଳିକାର ସୁଲଳିତ କଣ୍ଠସ୍ୱରରେ ବିମୋହିତ ହୋଇଯାଉ । କିନ୍ତୁ ଆମେ ଗୀତ ଗାଉଥିବା ବାଳିକାକୁ ଦେଖୁ ନ ଥାଉ, ଏହାଦ୍ୱାରା ଶାବ୍ଦିକ ମିଳନ ଘଟେ । ସେହିପରି ଦୃଷ୍ଟିଦ୍ୱାରା ମଧ୍ୟ ମିଳନ ସମ୍ଭବ ହୁଏ । କୌଣସି ବ୍ୟକ୍ତିର ଦୃଷ୍ଟି ଆମ ଦୃଷ୍ଟି ସହିତ ମିଳିତ ହେଲେ ଆମର ବା ଉଭୟର ମନୋଭାବ ବ୍ୟକ୍ତ ହୋଇଯାଏ । ମନର କ୍ରୋଧ, ଦୁଃଖ, ଶୋକ ବା ଆନନ୍ଦ ସେହି ଦୃଷ୍ଟି ମଧ୍ୟରେ ହିଁ ସୂକ୍ଷ୍ମଭାବେ ଫୁଟି ଉଠେ । ଏହାକୁ ଦୃଷ୍ଟିଜନିତ

---



କାଷ୍ଠ ପିତୁଳି ନାରୀ ରୂପେ । ଥୋଇବ ଯତିଙ୍କ ସମୀପେ ।।
ଯତିଏ ତାର ରୂପ ଚାହିଁ । ଚରଣ ଅଗ୍ରେ ଯେବେ ଛୁଇଁ ।।
ମନ ମଥଇ ତାହାଙ୍କର । ଯେଣୁ ମନ୍ମଥ ସୁଖଘର ।।
ଜଳେ ପାଷାଣ ପ୍ରାୟ ମଜେ । ଗଜବନ୍ଧନ ଯେହ୍ନେ ଗଜେ ।।
ଏଣୁ କୁଞ୍ଜର ଭାବ ମଣି । ଗୁରୁ ବଚନ ପରିମାଣି ।।

[ଭାଗବତ :ଜଗନ୍ନାଥ ଦାସ : ୧୧ସ୍କନ୍ଧ ୯ମ ଅ.]

ମିଳନ କହନ୍ତି । ଶରୀର ସହିତ ଶରୀରର ସ୍ପର୍ଶଦ୍ୱାରା ଶରୀରସ୍ଥ ବିଦ୍ୟୁତ ପରସ୍ପର ମଧ୍ୟରେ ସଞ୍ଚାରିତ ହୋଇଯାଏ । ତେଣୁ, ସହସା କାହାକୁ ସ୍ପର୍ଶ କରିବା ଉଚିତ ନୁହେଁ । ଲୋଭ, ମୋହ, କାମ ବା ଅନ୍ଧପରମ୍ପରାବଶତଃ ଜାଣି ଶୁଣି ଯେ ସମସ୍ତଙ୍କୁ ସ୍ପର୍ଶ କରେ, ତା'ର ଭାବସାଙ୍କର୍ଯ୍ୟ ଘଟିଥାଏ । ସେ ଶୁଦ୍ଧ ଓ ସାତ୍ତ୍ୱିକ ଭାବରେ ପରମାର୍ଥ ଚିନ୍ତା କରିପାରେ ନାହିଁ ।''

ସୂତ ଶୌନକାଦି ମୁନିଗଣଙ୍କୁ କହୁଛନ୍ତି, ହେ ତପୋଧନ ! ହାତୀଠାରୁ ଗ୍ରହଣ କରିଥିବା ଶିକ୍ଷା ପ୍ରସଙ୍ଗ ବର୍ଣ୍ଣନା କରି ଅବଧୂତ ମୁନି କହିଲେ, ''ହେ ଯଦୁରାଜ ! ମୁଁ ହାତୀଠାରୁ ଏକ ବିଶେଷ ଶିକ୍ଷା ଲାଭ କରିଛି । ମୁଁ ହାତୀର ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲି, ଏବଂ ସିଦ୍ଧାନ୍ତ ନେଲି ଯେ ସଂସାର ଦୁଃଖରୁ ପାରିହେବାକୁ ଚାହେଁ ସେ କେବେହେଲେ ସ୍ତ୍ରୀ ପ୍ରତି ଆସକ୍ତ ହେବା ଉଚିତ୍ ନୁହେଁ । ଏକଦା ବୁଲୁ ବୁଲୁ ମୁଁ ଉତ୍ତରାଖଣ୍ଡ ଆଡ଼େ ଚାଲିଗଲି । ସେଠାରେ ଥିବା ଏକ କଦଳୀ ବନ ପାଖରେ ପହଞ୍ଚି ଦେଖିଲି ଦଳେ ଲୋକ ଗଛ ଉହାଡ଼ରେ ଲୁଚି ବସିଛନ୍ତି । ମୁଁ ସେମାନଙ୍କୁ ପଚାରିଲି, 'ଭାଇ, ତୁମ୍ଭେମାନେ ଏପରି ଲୁଚି ବସିଛ କାହିଁକି ?' ଲୋକେ ଉତ୍ତର ଦେଲେ, 'ବ୍ରହ୍ମନ୍ ! ହାତୀ ଧରିବାପାଇଁ ଆମ୍ଭେମାନେ ଅପେକ୍ଷା କରି ବସିଛୁ ।' ମୁଁ କହିଲି, 'ବ୍ୟାଧମାନଙ୍କୁ ଜାଲ ବିଛାଇ ପଶୁ-ପକ୍ଷୀ ଧରିବାର ଦେଖିଛି । କିନ୍ତୁ ହାତୀ ଭଳି ଜନ୍ତୁକୁ ଧରିବାପାଇଁ ତୁମେ ତ କାହିଁ ଜାଳ ବିଛାଇ ନାହଁ ?

''ଲୋକେ ଉତ୍ତର ଦେଲେ, 'ମଦୋନ୍ମତ୍ତ ହାତୀକୁ ସାଧାରଣ ଜାଲରେ ଧରାଯାଇ ପାରିବ ନାହିଁ । ହାତୀ ମାଈ ହାତୀକୁ ଦେଖିଲେ ହାତୀ ଖେଦାରେ ପଡ଼ିଯାଏ ।' ମୁଁ ମାଈ ହାତୀଟି ଦେଖିବାକୁ ଇଚ୍ଛା କରିବାରୁ ସେମାନେ ନିକଟରେ କାଠରେ ତିଆରି ହୋଇ ରଙ୍ଗ କରାଯାଇଥିବା ଏକ ବଡ଼ ମାଈ ହାତୀକୁ ଦେଖାଇଦେଲେ । ତାହା ଦେଖି ମୋର ବିସ୍ମୟର ସୀମା ରହିଲା ନାହିଁ । ମୁଁ କହିଲି, 'ଆରେ ଭାଇ, ମୋତେ ତୁମେ ସବୁ ଥଟ୍ଟା କରୁ ନାହଁ ତ ? ଏହି କାଠ ହାତୀଟି ପିଲାଙ୍କ ଖେଳନାଭାବେ ସିନା ବ୍ୟବହୃତ ହେବ, କିନ୍ତୁ ଏହା ସାହାଯ୍ୟରେ ହାତୀ ଧରାପଡ଼ିବ କିମିତି ?'

''ଲୋକେ କହିଲେ, 'ବ୍ରହ୍ମନ୍ ! ଆମ୍ଭେମାନେ ଯୁବକ ହାତୀ ଧରିବା ଲକ୍ଷ୍ୟରେ ବସିଛୁ । ଏକ ବଡ଼ ଗାତ ଖୋଳାଯାଇଛି । ତା' ଉପରେ ଅଳ୍ପ କାଠିକୁଟା ଦେଇ ମାଟି ବିଛାଇ ଦେଇଛୁ । ତା' ତଳେ ବିରାଟ ଗର୍ତ୍ତ ରହିଛି ବୋଲି ଦେଖିବା ଲୋକ ଆଦୌ ଜାଣିପାରିବ ନାହିଁ । ତା'ଉପରେ କାଠ ତିଆରି ମାଈ ହାତୀଟି ଥୋଇ ଦେଇଛୁ । ବୁଢ଼ା ହାତୀ ଗୁଡ଼ିକ ଅନୁଭବୀ । ତାଙ୍କ ପଛରେ ଛୋଟ ହାତୀ ଚାଲିଥା'ନ୍ତି । ବୁଢ଼ା ହାତୀ ପାଦ ସମ୍ଭାଳି ଧୀରେ ଧୀରେ ଚାଲେ । ତା'ର ଯେଉଁଠି ସନ୍ଦେହ ହୁଏ, ସେଠାରୁ ପଛକୁ ଫେରିଯାଏ । କିନ୍ତୁ ଯୁବକ ହାତୀର ଅବସ୍ଥା ଅଲଗା । ଯୁବାବସ୍ଥାରେ କାହାରି ବିବେକ ବୁଦ୍ଧି ରହେ ନାହିଁ । ସାରା ଶରୀରରେ ଚଞ୍ଚଳତା ପୂରି ରହିଥାଏ । ଯୌବନର ତରଙ୍ଗ ଏପରି ଉଠେ ଯେ ସମ୍ମୁଖରେ ନିଜର ବିନାଶକୁ ଦେଖି ମଧ୍ୟ ଯୁବକ ଅନ୍ଧ ହୋଇଯାଏ । କାନ ଥାଇ ମଧ୍ୟ ଶ୍ରବଣ ଶକ୍ତି ହରାଇବସେ । ସେ କାହାରି ସଦୁପଦେଶ ଶୁଣେ ନାହିଁ । ତେଣୁ ଯୁବକ ହାତୀ ଦୌଡ଼ି ଦୌଡ଼ି ଆଗକୁ ମାଡ଼ିଚାଲେ । ଆଗରେ କାଠ ହାତୀକୁ ଦେଖି ପ୍ରକୃତ ହାତୀ ବୋଲି ଭାବି ତା' ପାଖକୁ ଦୌଡ଼ି ଆସେ । ପତଳା କାଠିକୁଟାରେ ତିଆରି କୃତ୍ରିମ ମଞ୍ଚାଟି ଭାଙ୍ଗିଯାଏ । ଫଳରେ କାଠ ହାତୀ ସହିତ ଯୁବକ ହାତୀ ହାତୀଖେଦା ଭିତରେ ଗଳିପଡ଼େ । କାଠ ହାତୀକୁ ସ୍ପର୍ଶ କରିବା

ପରେ ଯୁବକ ହାତୀର ପଶ୍ଚାତ୍ତାପ ଆରମ୍ଭ ହୋଇଯାଏ ; କିନ୍ତୁ ଅନୁତାପ କରି ଲାଭ କ'ଣ ? ସେହି ଗାତରେ ଅଭୁକ୍ତ ଅବସ୍ଥାରେ କିଛି ଦିନ ପଡ଼ିରହେ। କ୍ଷୁଧା ହେତୁ ତା'ର ଇନ୍ଦ୍ରିୟ ବଳ ଶିଥିଳ ହୋଇଗଲେ ଆମେ ତା' ପାଦରେ ଶିକୁଳି ବାନ୍ଧି ଦେବୁ। ଏହା ପରଠାରୁ ତା'ର ସ୍ୱାଧୀନତା ଅପହରଣ କରିନିଆଯାଏ। ଚିରଦିନପାଇଁ ସେ ପରାଧୀନ ହୋଇ ରହେ।'

''ଏହା ଶୁଣି ମୋର ବଡ଼ କୌତୂହଳ ହେଲା। ମୁଁ ସେଇଠି ଠିଆ ହୋଇ ଅବସ୍ଥା ଲକ୍ଷ୍ୟ କଲି। କିଛି ସମୟପରେ ଯୌବନ ମଦରେ ମତ୍ତ ହାତୀଟିଏ ସେ ଆଡ଼କୁ ଆଗେଇ ଆସିଲା। ସେ କାଠ ହାତୀଟିକୁ ଛୁଇଁବା ମାତ୍ରେ ଦୁମ୍ କରି ସେହି ଗାତରେ ଗଳି ପଡ଼ିଲା। ସେତିକିବେଳକୁ ମୁଁ ହାତୀକୁ ଗୁରୁ କରି ଏହି ଶିକ୍ଷା ଗ୍ରହଣ କଲି, **ତ୍ୟାଗୀ ଭିକ୍ଷୁ କେବେହେଲେ ପଥର, କାଠ ବା ମାଟିରେ ନିର୍ମିତ ସ୍ତ୍ରୀ ପ୍ରତିମାର ପାଦ ବି ଭୁଲ୍‌ରେ ଛୁଇଁବା ଉଚିତ ନୁହେଁ। ଯେ ପ୍ରତିମାକୁ ଛୁଇଁବ ସେ ସାକ୍ଷାତ୍ ସ୍ତ୍ରୀକୁ ଛୁଇଁବାରେ ଦ୍ୱିଧାବୋଧ କରିବ ନାହିଁ।''**

ରାଜା କହିଲେ, ''ମହାରାଜ! ଏହା ବଡ଼ ଅନ୍ୟାୟ କଥା। କାମ ଭାବନା ନେଇ ଛୁଇଁଲେ ସିନା ପାପ ହେବ ? କିନ୍ତୁ ସ୍ତ୍ରୀ ଜାତିକୁ ଅଛୁଆଁ କରିଦେବାଟା କେତେଦୂର ନ୍ୟାୟସଂଗତ ହେବ ? ଆମ୍ଭମାନେ ସେହି ସ୍ତ୍ରୀଙ୍କଠାରୁ ଜନ୍ମ ଗ୍ରହଣ କରିଛୁ। ଯେଉଁ ଉଦରରୁ ପୁରୁଷ ଜନ୍ମ ହୁଏ ସେହିଥିରୁ ସ୍ତ୍ରୀ ବି ଜନ୍ମ ହୁଏ। ଆପଣଙ୍କ କହିବା ଅନୁସାରେ ସହୋଦରା ଭଗ୍ନୀ, ଏପରିକି ନିଜର ମା'କୁ ନ ଛୁଇଁବାଟା ଠିକ୍ ହେବ କି?'' ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ଅବଧୂତ କହିଲେ, ''ନାଁ ନାଁ ରାଜନ୍! ମୋର କହିବାର ଅଭିପ୍ରାୟ ଠିକ୍ ତାହା ନୁହେଁ। ସବୁ ସ୍ତ୍ରୀ ଅସ୍ପୃଶ୍ୟା ନୁହଁନ୍ତି। ଏଠାରେ ମୋର କହିବାର ଉଦ୍ଦେଶ୍ୟ ହେଉଛି କାମବାସନାର ନିନ୍ଦା କରିବା। ପୁରୁଷ ଯେପରି ସ୍ତ୍ରୀକୁ ଛୁଇଁବା ଉଚିତ ନୁହେଁ, ସେହିପରି ସ୍ତ୍ରୀ ମଧ ପରପୁରୁଷକୁ ଛୁଇଁବା ଅନୁଚିତ। ସ୍ତ୍ରୀମାନଙ୍କ ମଧରେ ବିଶେଷତଃ ଯୁବତୀମାନଙ୍କଠାରେ ଏହି ନିଷେଧ ପ୍ରଯୁଜ୍ୟ। ନିଜର ମା'ଙ୍କ ପାଦସେବା କରଣୀୟ। ନିଜର ଛୋଟ ଭଉଣୀକୁ କୋଳକୁ ନେବାରେ ବାଧା ରହିବା ଉଚିତ ନୁହେଁ।

''ଯୁବାବସ୍ଥାରେ ଲୋକ ବଡ଼ ଅବିବେକୀ ହୁଏ। ସ୍ତ୍ରୀ ପୁରୁଷ ଉଭୟଙ୍କୁ ଯୌବନାବସ୍ଥା ବିକାରଗ୍ରସ୍ତ କରିଥାଏ। ତେଣୁ, ସେ ଅବସ୍ଥାରେ ପୁରୁଷ ପରସ୍ତ୍ରୀକୁ ଏବଂ ପରପୁରୁଷକୁ ସ୍ପର୍ଶ କରିବା ଉଚିତ ନୁହେଁ। ଯୁବତୀ, ମାତା, ଭଗ୍ନୀ, ପୁତ୍ରୀ ପ୍ରଭୃତିକୁ ଏକାନ୍ତରେ ସ୍ପର୍ଶ କରିବାକୁ ବାରଣ କରାଯାଇଛି। ମୁଁ ଏଠାରେ ଯାହା କହୁଛି, ତାହା ବିରାଗୀ, ତ୍ୟାଗୀ ଯତିମାନଙ୍କ ଧର୍ମ ପ୍ରସଙ୍ଗ ହିଁ ବର୍ଣ୍ଣନା କରୁଛି। ଯତି ସବୁକିଛି ତ୍ୟାଗକରି ଆସିଛି। ହୁଏତ ପୂର୍ବାଶ୍ରମରେ ଯୁବତୀ ସ୍ତ୍ରୀର ସଂସ୍ପର୍ଶ ଲାଭ କରିଛି, କିନ୍ତୁ, ଏବେ ସେ ଶୁଦ୍ଧ ଭାବରେ ଯୁବତୀକୁ ସ୍ପର୍ଶକଲେ ତା'ର ପୂର୍ବସ୍ମୃତି ଜାଗିଉଠେ। ଆମର ଏ ପାପୀ ମନର ଅବସ୍ଥା କିଏ ଜାଣେ, କେତେବେଳେ ନେଇ କେଉଁଠି ବୁଡ଼ାଇଦେବ। **ଯେତେବେଡ଼ ତ୍ୟାଗୀ ଜିତେନ୍ଦ୍ରିୟ ହେଲେ ମଧ କେବେହେଲେ ମନକୁ ବିଶ୍ୱାସ କରିବା ଉଚିତ ନୁହେଁ। ଯେ ପର୍ଯ୍ୟନ୍ତ ବଞ୍ଚିଥିବେ, ସେ ପର୍ଯ୍ୟନ୍ତ 'ମୁଁ ଜିତେନ୍ଦ୍ରିୟ' ବୋଲି ମନରେ କେବେହେଲେ ଅଭିମାନ କରିବେ ନାହିଁ। ସଙ୍ଗରୁ ଆସକ୍ତି ଏବଂ ଆସକ୍ତିରୁ ଯୋଗୀର ମଧ୍ୟ ଅଧୋଗତି ଓ ପତନ ଘଟେ।** ସେଥିପାଇଁ ସଂକଳ୍ପବଦ୍ଧ ହୋଇ ଆସକ୍ତ ହୃଦୟରେ ଯୁବତୀକୁ ସ୍ପର୍ଶ କରିବା ଯତି ପକ୍ଷରେ ଆଦୌ ଉଚିତ ନୁହେଁ। ଯାହା ନିଷେଧ କରାଯାଇଛି ତାହା ପ୍ରତ୍ୟେକ୍ଷରେ ହେଉ ବା ପରୋକ୍ଷରେ ହେଉ ନିଷେଧ

ରୂପେ ପାଳନୀୟ। ମେଳା ମହୋତ୍ସବରେ ନାରୀ ସ୍ପର୍ଶନ ଘଟେ। କିନ୍ତୁ ଯଦି ଅନୁରାଗ ଦୃଷ୍ଟିରେ ସେମାନଙ୍କୁ ଚାହିଁବା ବା ଛୁଇଁବା ଉଚିତ ନୁହେଁ।''

ଅବଧୂତ ପୂର୍ବକଥାର ସ୍ରୋତ ଧରି କହିଲେ, ''ସେ ହାତୀଟିକୁ ଖାତରେ ପଡ଼ିଯିବାର ଦେଖି ମୁଁ ମୋ ଗନ୍ତବ୍ୟ ପଥରେ ଆଗେଇ ଗଲି। କିଛି ଦୂରରେ ହାତୀମାନଙ୍କର ଏକ ଦଳକୁ ଦେଖିଲି। ତା' ମଧ୍ୟରେ ଗୋଟିଏ ଯୂଥପତି ଥାଏ, ଏବଂ ଅନ୍ୟଗୁଡ଼ିକ ମାଈହାତୀ। ହାତୀଟିଏ ଯୁବକ ହୋଇଗଲେ ସେ ତା'ର ଅନ୍ୟ ଦଳ ଗଠନ କରେ। ମାଈହାତୀକୁ କେନ୍ଦ୍ର କରି ବିଭିନ୍ନ ଯୂଥ ମଧ୍ୟରେ ସଂଘର୍ଷ ଉପୁଜେ। ଏ ସମସ୍ତ ଆଖି ଆଗରେ ଘଟିବାର ଦେଖି ଭାବିଲି, 'ଏଇ ହସ୍ତିନୀ ହିଁ ସେହି ଯୁବକ ହସ୍ତୀ ବନ୍ଧନ ଓ ମୃତ୍ୟୁର କାରଣ ହେଲା। ଯେଉଁ ପୁରୁଷ ଅନ୍ୟ ସ୍ତ୍ରୀ ପ୍ରତି ଆସକ୍ତ ହୁଏ ତାକୁ ସବଳ ପୁରୁଷ ମାରିପକାନ୍ତି ବା କୌଣସି ଭୟଙ୍କର ରୋଗରେ ସେହି କାମାସକ୍ତ ପୁରୁଷର ମୃତ୍ୟୁ ଘଟେ। ତେଣୁ ବୁଦ୍ଧିମାନ୍ ପୁରୁଷ ମୃତ୍ୟୁଦୂତୀ ସ୍ୱରୂପା ପରସ୍ତ୍ରୀ ପ୍ରତି ଆସକ୍ତହେବା ଅନୁଚିତ। ସେଥିପାଇଁ ଯଦି କୃତ୍ରିମ ସ୍ତ୍ରୀକୁ ମଧ୍ୟ ସ୍ପର୍ଶ କରିବା ଉଚିତ ନୁହେଁ। ଗୃହସ୍ଥ ମଧ୍ୟ ଭୁଲରେ ପରସ୍ତ୍ରୀ ପ୍ରତି ଆକୃଷ୍ଟ ହେବା ଅନୁଚିତ।''

ସୂତ କହୁଛନ୍ତି, ''ହେ ମୁନିଗଣ। ଭଗବାନ୍ ଦତ୍ତାତ୍ରେୟ ମଧୁହାରୀଠାରୁ ଯେଉଁ ଶିକ୍ଷା ଗ୍ରହଣ କରିଥିଲେ ତାହା କହୁଛି ଶୁଣ।''

## ଛପ୍ପୟ

ଛବ କଛୁ ଆଗେ ବଢ୍ୟୋ ଯୂଧ ହାଥିନିକୋ ଆୟୌ।
ପରହଥିନୀ ସଁଗ ନିରଖି ଯୁବକ ଗଜ ମାରି ଗିରାବେୟୌ॥
ଗୁରୁ ଗଜ କରିକେ ଲଈ ସଖ ଅତିଈ ଉପୟୋଗୀ।
ବନୀ କାଠକୀ ନାରି ପୈର ତେ ଛୁଏ ନ ୟୋଗୀ॥
ପରନାରୀ ହୈ ଅଗିନି ସମ, କାମ ନେହ ତୈ ନିତ ହରୈ।
ଜୋ ପକରୈ ସୋ ମୃତ୍ୟୁ କୋ, ଆଲିଙ୍ଗନ କରି-ବତ କରୈ॥



# ମଧୁହାରୀଠାରୁ ଶିକ୍ଷା ଗ୍ରହଣ

ନ ଦେୟଂ ନୋପଭୋଗ୍ୟଂ ଚ ଲୁବଧୈର୍ଯଦ୍ ଦୁଃଖସଞ୍ଚିତମ ।
ଭୁଙ୍କ୍ତେ ତଦପି ତଚ୍ଚାନ୍ୟୋ ମଧୁହେବାର୍ଥବିନ୍ମଧୁ ।। ★
[ଶ୍ରୀଭା.୧୧ସ୍କ. ୮ମ. ଅ, ୧୫ ଶ୍ଳୋକ]

**ଛପ୍‌ପୟ**

ଜୋରି ଜୋରି କେ ଧରେଁ ଲୋଭବଶ ଲୋଭୀ ଧନକୁଁ ।
ସ୍ୱୟଂ ଖାଇ ନହିଁ ଦେହି ଅତିଥି ଗୁରୁ ବନ୍ଧୁ ସ୍ୱଜନକୁଁ ।।
ଭେଦ ଭେଦିୟା ଲେଇ ଏକ ଦିନ ନୃପକେ ଆବୈ ।
ମଧୁହରୀ ସମ ଆଇ ନିକାରେଁ ମଧୁ ସବ ଖାବୈ ।।
ରଚି ପଚିକେ ସଂଗ୍ରହ କରେଁ, ତେ ଦେଖତ ରହଜାତ ହୈଁ ।
ରାମ ଭରୋସ ଜେ ରହେଁ, ମେବା ମିଶ୍ରୀ ଖାତ ହେଂ ।।

ଯାହା ପାଖରେ ନିଜର ବୋଲି କିଛି ନାହିଁ ତା'ଠାରେ ସବୁକିଛି ନିଜର ବୋଲି ମନେହୁଏ । ସୁବର୍ଣ୍ଣ ଭୂମିରୁ ଉତ୍ପାଦିତ ହୋଇଛି । ତାହା ଦେବଦତ୍ତ ହେଉ ବା ବିଷ୍ଣୁମିତ୍ର ହେଉ କାହାରି ଘରେ ରହିଛି । ଯଦି ସୁବର୍ଣ୍ଣକୁ ସାଇତି ରଖିବା ଦରକାର, ତେବେ ତାହା ଯେଉଁଠି ରହିଲେ ଆପତ୍ତି କ'ଣ ? କଥାଟିଏ ଶୁଣନ୍ତୁ । କେହି ଜଣେ ଏକାନ୍ତ ସ୍ଥାନରେ ସୁନାକୁ ପୋତିଦେଲା । କେବେ କେବେ ଆସି ତାହା ଦେଖିଯାଉଥାଏ । ଜଣେ ଚୋର ଏ ଘଟଣାକୁ ଲକ୍ଷ୍ୟ କଲା । ଯେତେବେଳେ ସେ ଲୋକଟି ସୁନା ଦେଖିଦେଇ ଚାଲିଗଲା, ଚୋର ଆସି ସୁନାତକ ନେଇ ସ୍ଥାନଟିକୁ ପୂର୍ବପରି ସଜାଇ ପଳାଇଗଲା । ପରଦିନ ସୁନାର ମାଲିକ ଆସି ସୁନା ନ ଥିବାର ଦେଖି କାନ୍ଦିବାକୁ ଲାଗିଲା । ସେହି ସମୟରେ ଜଣେ ମହାତ୍ମା ସେଇବାଟେ ଯାଉଥିଲେ । ସେ ପଚାରିଲେ, 'ଭାଇ ! ତୁମେ କାନ୍ଦୁଛ କାହିଁକି ?' ଲୋକଟିଠାରୁ ସମସ୍ତ ଘଟଣା ଶୁଣି ମହାତ୍ମା କହିଲେ, 'ସୁନାଦ୍ୱାରା ତୁମର କି କି କାର୍ଯ୍ୟ ହେଉଥିଲା ?' ମାଲିକଟି କହିଲା, 'ମୁଁ ପ୍ରତିଦିନ ଆସି ତାକୁ ଦେଖୁଥିଲି, ଏବଂ ମୋ ପାଖରେ ଏତେ ଧନ ଅଛି ବୋଲି ଖୁସି ହେଉଥିଲି ।'

---

★ ଶୁଣ ସୁଚିତ୍ତେ ନୃପବର । ମଧୁହାରୀ ଯେ ଗୁରୁମୋର ।।
ମଧୁମକ୍ଷିକା ପୁଷ୍ପସାର । ନେଇ ରଖଇ ନିଜଘର ।।
ବିନା ଉଦ୍ୟମେ ମଧୁହାରୀ । ଭୁଞ୍ଜଇ ବଳେ ତାହା କରି ।।
ଏ ରୂପେ ଗୃହୀ ଦୁଃଖ ପାଇ । ଅନ୍ନ ବ୍ୟଞ୍ଜନ ରଖେ ନେଇ ।।
ଅତିଥି ଆସି ଭୁଞ୍ଜେ ତାହା । ଏମନ୍ତେ ମୋ ଗୁରୁ ମଧୁହା ।।
[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ. ୯ଅ.]

ମହାତ୍ମା କହିଲେ, ''ଯଦି କେବଳ ଦେଖିବା କାମରେ ସୁନା ଦରକାର ପଡୁଥିଲା, ତେବେ ତୁମେ ଏତେ ବ୍ୟସ୍ତ କାହିଁକି ହେଉଛ? ସୁନାକୁ ଯେପରି ଦେଖୁଥିଲ ଆଜିଠାରୁ ପଥରକୁ ସେହିଭଳି ଦେଖ। ହେ ଭାଇ! ତୁମେ ଯେତେବେଳେ ସୁନାର ସଦ୍‌ବ୍ୟବହାର କଲ ନାହିଁ, ସେତେବେଳେ ଅନ୍ୟ କେହି ତା'ର ସଦୁପଯୋଗ କରିବ। ତୁମେ ତ କେବେ ତାକୁ ବ୍ୟୟ କରି ନ ଥାନ୍ତ। ତେଣୁ, ତୁମ ପାଖରେ ସୁନା ରହିବା ନ ରହିବା ସମାନ। ତୁମଠାରେ ରହିଲା ନାହିଁ ତ ଅନ୍ୟ କେଉଁଠି ରହିବ। ସୁନା ତ ନଷ୍ଟ ହୋଇଯିବ ନାହିଁ।'' ଏହାର ତାତ୍ପର୍ଯ୍ୟ ହେଉଛି, ଯେ ସଂଗ୍ରହ କରେ ସଂଗ୍ରହ ଯେତିକି କରିଥାଏ ସେତିକି ନିଜର ବୋଲି ଭାବେ। କିନ୍ତୁ ଯେ ଜାଣି ଶୁଣି କିଛି ସଂଗ୍ରହ କରେ ନାହିଁ ତା' ପାଇଁ ସବୁକିଛି ନିଜର ବୋଲି ମନେହୁଏ। ଜଣେ ଅନ୍ଧ-ସାଧୁଙ୍କୁ ଦେଖି କେହି ଜଣେ ପଚାରିଲେ, 'ଆପଣ ଅମୁକ ସ୍ଥାନକୁ କିପରି ଯିବେ?' ସେ ଉତ୍ତର ଦେଲେ, 'ତୁମ ପାଖରେ ସିନା ଯୋଡ଼ିଏ ଆଖି ଅଛି, ମୋ ପାଖରେ କିନ୍ତୁ ହଜାର ହଜାର ଆଖି ଅଛି। ଆଖିଥିବା ଯେଉଁ ଲୋକକୁ ମୁଁ ଇଚ୍ଛା କରିବି, ତା'ର ଉପଯୋଗ କରିପାରିବି।'

ଜଣେ ପ୍ରସିଦ୍ଧ ସାଧୁ ବିଦେଶ ଭ୍ରମଣରେ ଯାଇଥିଲେ। ପାଖରେ ଥିବା ଜଣେ ସହଯାତ୍ରୀ ପଚାରିଲେ, 'ଆଚ୍ଛା, ଆପଣଙ୍କ ପାଖରେ ତ ପଇସା ନ ଥିବ। ଆପଣ ଅପରିଚିତ ଦେଶରେ ଚଳିବେ କିପରି?'

ସାଧୁ ଉତ୍ତର ଦେଲେ, 'ତୁମ ବଟୁଆରେ ଯେତେ ପଇସା ଅଛି ସେତିକି ସିନା ତୁମର, କିନ୍ତୁ ମୋ ପକ୍ଷରେ ସମସ୍ତଙ୍କ ପାଖରେ ଯେତେ ପଇସା ଅଛି ସେ ସମସ୍ତ ମୋର। ଯୁଆଡ଼େ ଯିବି, ସେହି ସଜ୍ଜନମାନଙ୍କର ବଟୁଆରେ ଥିବା ପଇସାର ଉପଯୋଗ କରିପାରିବି।'

ଏ ସବୁକଥା ଉଦ୍ଧାର କରିବାର ଅଭିପ୍ରାୟ ହେଉଛି, କୃପଣ ଲୋକ ଅର୍ଥ ଥିଲେ ମଧ ତାହା ବ୍ୟୟ କରିପାରେ ନାହିଁ। ସର୍ବଦା ଦୁଃଖ, ଭୟ ଓ ଆଶଙ୍କା ମଧ୍ୟରେ ହିଁ ତା'ର କାଳ ଅତିବାହିତ ହୁଏ। କିନ୍ତୁ ଉଦାର ଲୋକଠାରେ ପଇସାଟିଏ ନ ଥିଲେ ବି ସେ ନିଜର ଉଦାରତା ବଳରେ ଖାଏ, ଉଡ଼ାଏ ଓ ସୁଖରେ କାଳ କଟାଏ ; ଏବଂ କେବେହେଲେ ଦୁଃଖୀ ହୁଏ ନାହିଁ।'

ସୂତ ମହାମୁନି କହୁଛନ୍ତି, ହେ ମୁନିଗଣ! ମଧୁ ସଂଗ୍ରହକାରୀ ମଧୁହାରୀଠାରୁ କି ଶିକ୍ଷା ଲାଭ କଲେ ବୋଲି ଯଦୁରାଜ ପଚାରିବାରୁ ଅବଧୂତ ତାଙ୍କୁ ବୁଝାଇଥିଲେ, ''ରାଜନ୍! ମଧୁହାରୀ ହେଉଛି ମୋର ଯଥାର୍ଥ ଗୁରୁ। ମହୁମାଛି ସାରାଦିନ ଫୁଲରୁ ଫୁଲକୁ ଯାଇ ମଧୁ ସଂଗ୍ରହରେ ଲାଗିଥାଏ। ବହୁକଷ୍ଟରେ ସେ ମଧୁ ସଂଗ୍ରହ କରେ। ମୁହଁରେ ମଧୁପୂର୍ଣ୍ଣ ହେଲେ ଉଡ଼ିଆସି ତାହାକୁ ଫେଣାରେ ଥୋଇ ପୁଣି ସଂଗ୍ରହରେ ଲାଗିଯାଏ। ଅବିଶ୍ରାନ୍ତ ଭାବେ ମହୁମାଛି ପେଟକୁ ନ ଖାଇ ମଧୁ ସଞ୍ଚୟ କରିଚାଲେ। କିନ୍ତୁ, ଦିନେ ମଧୁହାରୀ ଆସେ ମହୁମାଛିମାନଙ୍କ ଉପସ୍ଥିତିରେ ସବୁ ମହୁ ନେଇଯାଏ। ସେହିମାନଙ୍କ ଆଗରେ ସେ ପେଟପୂରାଇ ମଧୁପାନ କରେ। ମୁଁ ଏଇ ଘଟଣା ଆଖି ଆଗରେ ଦେଖି ମଧୁହାରୀକୁ ଗୁରୁଭାବେ ଗ୍ରହଣ କଲି। କୌଣସି ବସ୍ତୁ ସଂଗ୍ରହ କରିବାର ଆବଶ୍ୟକତାକୁ ମୁଁ ଗୁରୁତ୍ୱ ଦେଲିନାହିଁ। ରୁଟି ତିଆରି ହେଉଥିବା ସ୍ଥାନରେ ପହଞ୍ଚି 'ନାରାୟଣ ହରି' କହିଦେଲେ ଗୃହସ୍ଥ କେତେ ଯତ୍ନରେ ଖାଇବାକୁ ଦିଏ! ଗୃହସ୍ଥକୁ ରୁଟି ପ୍ରସ୍ତୁତ କରିବାପାଇଁ କେତେ ଯେ ପରିଶ୍ରମ କରିବାକୁ ପଡ଼େ ତା' କହିହେବ ନାହିଁ। କିନ୍ତୁ ସାଧୁ ସନ୍ନ୍ୟାସୀ ବା ବ୍ରହ୍ମଚାରୀ ଦୁଆର ଆଗରେ ଠିଆହୋଇ ମାଗିଦେଲେ, ସେ କେତେ ଆନନ୍ଦରେ ଆସି ପ୍ରଥମେ ସେମାନଙ୍କୁ ଖାଇବାକୁ ଦିଏ। ତାହାହେଲେ ସାଧୁର ସଂଗ୍ରହ କରିବାର ଆବଶ୍ୟକତା କ'ଣ? ଯେ ସଂଗ୍ରହ କରେ ସେ ବି ସବୁକିଛି ଉପଭୋଗ କରିପାରେ ନାହିଁ।

''ଲକ୍ଷ୍ମୀଙ୍କ ଉପଯୋଗ ତିନୋଟି ଉପାୟରେ କରାଯାଏ । କିଏ ଲକ୍ଷ୍ମୀଙ୍କୁ ଜନନୀ ଭାବେ, କିଏ ପତ୍ନୀ ରୂପରେ, ଏବଂ ଅନ୍ୟ କେହି କନ୍ୟା ଭାବରେ ବ୍ୟବହାର କରନ୍ତି। ଲକ୍ଷ୍ମୀଙ୍କୁ ମାତୃରୂପରେ ଉପାସନା କରିଥିବା ବ୍ୟକ୍ତି ସମସ୍ତଙ୍କୁ ଆଦର କରେ। ଘରକୁ ଯେ ଆସିଲେ ବି ସେ ତାକୁ ଭୋଜନ ଦେଇ ସନ୍ତୁଷ୍ଟ କରେ। ଉଦାର ପୁରୁଷର ଲକ୍ଷ୍ମୀ ଏହିପରି ସମସ୍ତ କାର୍ଯ୍ୟରେ ସାହାଯ୍ୟ କରନ୍ତି। ତାଙ୍କରି ଦୟାରୁ ଆଶାନୁରୂପ ଦାନଧର୍ମ ଓ ପରୋପକାର କରାଯାଇଥାଏ । ସମସ୍ତେ ଏପ୍ରକାର ଧନୀର ଆଶ୍ରୟରେ ସୁଖରେ ରହନ୍ତି।

''ଦ୍ୱିତୀୟ ପ୍ରକାର କୃପଣ ଲୋକ ଲକ୍ଷ୍ମୀଙ୍କୁ ପତ୍ନୀରୂପରେ ବ୍ୟବହାର କରନ୍ତି। ପତ୍ନୀ ଯେପରି କେବଳ ପତିର ସୁଖପ୍ରଦା ହୋଇଥାଏ ଏବଂ ପରିବାରର ଅନ୍ୟମାନଙ୍କୁ ଦେଖାଶୁଣା କରିଥାଏ, ସେହିପରି କୃପଣର ଧନ ନିଜର ଓ ନିଜ ପରିବାର ଲୋକଙ୍କ ସୁଖ ସୁବିଧା ନିମିତ୍ତ ବ୍ୟୟ କରାଯାଇଥାଏ। କୃପଣ ଦାନ, ଧର୍ମ, ପୁଣ୍ୟ କର୍ମରେ ଧନ ବ୍ୟୟ ନ କରି ନିଜେ ହିଁ ଭୋଗକରେ।

''ତୃତୀୟ ଶ୍ରେଣୀୟ କୃପଣ ଲକ୍ଷ୍ମୀଙ୍କୁ କନ୍ୟାଭାବରେ ସେବା କରନ୍ତି। ଲୋକେ ଯେପରି ଝିଅର ପାଳନ ପୋଷଣ ନିଜେ ନିଜେ କରନ୍ତି, ସେହିପରି କୃପଣ ଲକ୍ଷ୍ମୀଙ୍କୁ ନିଜେ ରକ୍ଷଣାବେକ୍ଷଣ କରିଥାଏ। ଝିଅ ଯେପରି ବଡ଼ ହୋଇ ଶାଶୁଘରକୁ ଯାଏ ଏବଂ ଶ୍ୱଶୁର ଘରର ଯଶ ମାନସମ୍ମାନ ବଢ଼ାଏ, ସେହିପରି କୃପଣର ଧନ ଦାନ ଧର୍ମରେ ବ୍ୟୟିତ ନ ହୋଇ ଅନ୍ୟର ଅଧିକାରକୁ ଚାଲିଯାଏ। ମଧୁହାରୀ ଭଳି ଅନ୍ୟ ଲୋକ ହିଁ କଷ୍ଟ ସଞ୍ଚିତ ସେହି ଧନର ଉପଯୋଗ କରନ୍ତି।

''ହେ ରାଜନ୍! ଆମଭଳି ଲୋକଙ୍କର ହାଣ୍ଡିଚୁଲିର ଚିନ୍ତା ନାହିଁ। ଡାଲି ଦର କ'ଣ, ଚାଉଳ ଦର କ'ଣ, ସେ ସବୁ ଚିନ୍ତା ଗୃହସ୍ଥର। ଆମେ ତ ପ୍ରସ୍ତୁତ ଭୋଜନର ପ୍ରଭୁ। ଲୋକ ଖାଦ୍ୟ ପ୍ରସ୍ତୁତ କରି ରଖିଛି। ଆମେ ଗଲୁ, ତାହାରି ଆଗରେ ବସି ଖାଇଲୁ, ଏବଂ ହାତ ମୁହଁ ପୋଛି ଚାଲିଆସିଲୁ। ତେଣୁ, ମଧୁହାରୀକୁ ମୁଁ ନିଜର ଗୁରୁ ବୋଲି ସ୍ୱୀକାର କରିଛି।''

ସୂତ ଶୌନକାଦି ମୁନିମାନଙ୍କୁ କହିଲେ, ''ହେ ମୁନିଗଣ! ବର୍ତ୍ତମାନ ଅବଧୂତ ଗୀତା ଅନ୍ତର୍ଗତ ହରିଣର ଶିକ୍ଷାଦାନ ପ୍ରସଙ୍ଗ ମନ ଦେଇ ଶ୍ରବଣକରନ୍ତୁ।''

### ଛପ୍‌ପୟ

ମୈ ମେରୀ କରି ପହିନ ଲେଇ ବେଢ଼ୀ ନର ପଗ ମହିଁ।
ଧନ କାହୂ କୋ ଭାୟୋ ନ ହୋଗୋ ହୈ ନହି ଜଗ ମହିଁ॥
ମଧୁମକ୍ଷୀ କରି କଷ୍ଟ ରାତି ଦିନ ଶହଦ ଜୁଟାବୈ।
ନହୀ ଭୋଗ କରି ସକୈ କାମ ଔରନି କେ ଆବୈ॥
ମଧୁହାରୀ ଗୁରୁ କରି ସଦା, ଭିକ୍ଷା ମାଁଗନ ଜାତ ହୂଁ।
ଗୃହୀ ସଂଗ୍ରହୀ ତେଁ ପ୍ରଥମ, ବାବା ବନିକେ ଖାତ ହୂଁ॥



# ଗୁରୁ ହରିଣଠାରୁ ଶିକ୍ଷାଲାଭ

ଗ୍ରାମ୍ୟଗୀତଂ ନ ଶୃଣୁୟାଦ୍ ଯତିର୍ବନଚରଃ କ୍ୱଚିତ।
ଶିକ୍ଷେତ ହରିଣାଦ୍ ବଦ୍ଧାନ୍ମୃଗୟୋର୍ଗୀତମୋହିତାଦ୍॥ ★

[ଶ୍ରୀଭା.୧୧ସ୍କ, ୮ମ.ଅ. ୧୭ଶ୍ଳୋକ]

**ଛପ୍‌ପୟ**

ବୀହଡ ବନ ମେ ବ୍ୟାଧ ବିଲୋକ୍ୟୋ ବୀନ ବଜାବତ।
ଢଁଗ ମହଁ ଜାଲ ବିଛାୟ ମଧୁର ସ୍ୱର ରାଗ ଆଲାପତ॥
ସୁନି ବୀନା କୀ ତାନ ରାଗପ୍ରିୟ ମୃଗ ମହଁ ଆୟୋ।
ଗାନ ଗୀତ ସୁନି ଫନ୍ଦ୍ୟୋ ଅଜ୍ଞ ନିଜ ପ୍ରାନ ଗଁମାୟୋ॥
ସ୍ରବନେନ୍ଦ୍ରିୟ ଅଧୀନ ହ୍ୱୈ, ବାଛି ତାବୈ ଅରୁ ସିର ଧୁନୈ।
ବନବାସୀ ଯତି ଭୂଲିକେ, ବିଷୟ-ଗୀତ କବହୂଁ ନ ସୁନୈ॥

ଚିତ୍ତ ଏକ ଶୁଭ୍ରବସ୍ତ୍ର ସଦୃଶ। ତାହାକୁ ଯେ କୌଣସି ରଙ୍ଗଦ୍ୱାରା ରଙ୍ଗିନ୍ କରାଯାଇପାରିବ। ପାଞ୍ଚ ଇନ୍ଦ୍ରିୟ ପାଞ୍ଚୋଟି ବିଷୟର ପ୍ରଖ୍ୟାପକ। ନେତ୍ରଦ୍ୱାରା ରୂପ, ଜିହ୍ୱାଦ୍ୱାରା ରସ, ନାସିକାଦ୍ୱାରା ଗନ୍ଧ, ଚର୍ମଦ୍ୱାରା ସ୍ପର୍ଶ, ଏବଂ କାନଦ୍ୱାରା ଶବ୍ଦ ବିଷୟ ପ୍ରତୀତ ହୁଏ। ଯଦି ଆଖି କୌଣସି ରୂପଠାରେ ବଶୀଭୂତ ହୁଏ, ତେବେ ମନ ସେହି ରୂପକୁ ତନ୍ମୟ ହୋଇ ଚିନ୍ତା କରେ। ସେହିପରି ଅନ୍ୟାନ୍ୟ ଇନ୍ଦ୍ରିୟଙ୍କ କ୍ଷେତ୍ରରେ ଅନୁରୂପ ଘଟଣା ଘଟେ। କିନ୍ତୁ ଶ୍ରବଣେନ୍ଦ୍ରିୟଠାରେ ବିଷୟର ପ୍ରଭାବ ଉଲ୍ଲେଖଯୋଗ୍ୟ। ଶ୍ରବଣର ବିଷୟ ଶବ୍ଦ ଅତ୍ୟନ୍ତ ଆକର୍ଷକ। ଶାସ୍ତ୍ରୀୟ ଶୈଳୀରେ ରାଗର ଆଳାପଦ୍ୱାରା ସଚରାଚର ସମସ୍ତେ ପ୍ରଭାବିତ ହୋଇଥା'ନ୍ତି। ସେହି ଶବ୍ଦର ପ୍ରଭାବରେ ଦୀପ ଜଳେ, ପର୍ବତ ଟଳିପଡ଼େ ଓ ମେଘ ବର୍ଷା କରିଥାଏ। ଶବ୍ଦର ଅନନ୍ତ ଶକ୍ତି କେବେହେଲେ କ୍ଷୟ ହୁଏନାହିଁ। ଶବ୍ଦ ଅକ୍ଷର, ନିତ୍ୟ ଓ ଚିର ପ୍ରଭାବଶାଳୀ, ଗାୟନଦ୍ୱାରା କେବଳ ମଣିଷ ନୁହେଁ ପଶୁ, ପକ୍ଷୀ, ସରୀସୃପ ସମସ୍ତେ ଆକର୍ଷିତ ହୁଅନ୍ତି। ଯଦି ରାଗ ବୈଷୟିକ ପ୍ରଭାବୋତ୍ପାଦକ ହେବ ତେବେ ଶ୍ରୋତାର ଚିତ୍ତ ମଧ୍ୟ ବିଷୟ ବାସନାରେ ପୂର୍ଣ୍ଣ ହୋଇଯିବ। ସେହିପରି ଭକ୍ତି ବିଷୟକ ହେଲେ ରାଗ ଗାୟନଦ୍ୱାରା ହୃଦୟ ଭକ୍ତିରସରେ ପ୍ଲାବିତ ହେବ। ତେଣୁ ଗୋବିନ୍ଦ ଗୁଣାନୁସମ୍ବନ୍ଧୀୟ ଗୀତ ଗାନ କରିବା ଉଚିତ।

---

★ ଯେ ଥିବ ବନଚର ମତେ । ଚିତ୍ତ ନ ଦେବ ଗ୍ରାମ୍ୟଗୀତେ ॥
ନିରତେ ଜ୍ଞାନେ ଥିବ ମନ । ଯୋଗ ସଂଯୋଗ ଅବଧାନ ॥
ଲୁବ୍ଧକ ଗୀତ ଶୁଣି କର୍ଣ୍ଣେ । ଯେସନେ ମୃଗ ମରେ ବନେ ॥
ଏଣୁ ନ ଶୁଣି ଗ୍ରାମ୍ୟ ଗୀତ । କୃଷ୍ଣଙ୍କ ଜ୍ଞାନେ ଦେଇ ଚିତ୍ତ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ଶ.ସ୍କନ୍ଧ. ୯ମ.ଅ.]

ସୂତ କହୁଛନ୍ତି, ହେ ମୁନିଗଣ ! ଅବଧୂତ ମୃଗଠାରୁ ପାଇଥିବା ଶିକ୍ଷା ସମ୍ବନ୍ଧରେ ରାଜା ଯଦୁଙ୍କୁ କହିଥିଲେ, ''ହେ ରାଜନ୍ ! ଦିନେ ମୁଁ ବୁଲୁ ବୁଲୁ ଏକ ନିବିଡ଼ ଅରଣ୍ୟରେ ପହଞ୍ଚିଲି । ଆପଣ ଜାଣନ୍ତି ଆମେ ବନାବାସୀ ବୋଲି । ବଣରେ ରହିବା, ବୁଲିବା ଆମର ପ୍ରଧାନ କର୍ତ୍ତବ୍ୟ । ବେଳେ ବେଳେ ଆହାରପାଇଁ ଆମେ ଗ୍ରାମାଞ୍ଚଳକୁ ଆସିଥାଉ । ମୁଁ ବଣରେ ବୁଲୁବୁଲୁ ହଠାତ୍ ସୁସ୍ୱର ବୀଣାଧ୍ୱନି ଶୁଣିବାକୁ ପାଇଲି । ମୁଁ ସେହି ଧ୍ୱନି ଅନୁସରଣ କରି କିଛିଦୂର ଯିବାପରେ ଦେଖିଲି, କାଳିଆ ବ୍ୟାଧ ଜଣେ ବୀଣା ବଜାଉଛି । ବ୍ୟାଧର ଦୃଷ୍ଟିରେ କ୍ରୂରତା ଫୁଟିଉଠୁଥିଲା । ତା'ର କହଁରା ବାଳ ଅତି କଠୋର ଓ ରୁକ୍ଷ ଦେଖାଯାଉଥିଲା । ଆଖି ଦୁଇଟି ଗୋଲ, ଲାଲ୍ ଓ ଛୋଟ ଆକାରର ଥିଲା । ମୁଣ୍ଡଟି ଛୋଟ, ଚେପ୍‌ଟା ନାକ, ରୁକ୍ଷ, କଠୋର, ପୁଷ୍ଟ ଦେହରେ ସେ ଦେଖିବାକୁ ଠିକ୍ ଯମପରି ମନେ ହେଉଥିଲା । ଏଭଳି ଏକ କ୍ରୁର ଆକାର ପ୍ରକାରର ପୁରୁଷ ତନ୍ମୟ ହୋଇ ବୀଣା ବଜାଉଛି କାହିଁକି ? କାହାକୁ ଆନନ୍ଦ ଦେବାପାଇଁ, ବା ନିଜର ଆତ୍ମସନ୍ତୋଷପାଇଁ ବୀଣା ବଜାଉଛି ବୋଲି ମୋର ମନେ ହେଲାନାହିଁ । ନିଶ୍ଚୟ ତା'ର କିଛି ଗୂଢ଼ ରହସ୍ୟ ଅଛି । ସେଥିପାଇଁ ଏକ ଗଛ ଉହାଡ଼ରେ ମୁଁ ଠିଆ ହୋଇ ରହିଲି । ବ୍ୟାଧ ଜଣକ ସୁସ୍ୱରରେ ବୀଣା ବଜାଉଥାଏ ।

''କିଛି ସମୟ ପରେ, ଅତ୍ୟନ୍ତ ବ୍ୟାକୁଳ ହୋଇ ହରିଣଟିଏ ସେ ଆଡ଼କୁ ଦୌଡ଼ି ଆସିଲା । ତାହାର ନିଜ ବିଷୟରେ କିଛି ଜ୍ଞାନ ନ ଥିବାର ମନେହେଲା । ହରିଣଟି ବୀଣାର ସ୍ୱରରେ ମୁଗ୍ଧ ହୋଇ ଧୀରେ ଧୀରେ ବ୍ୟାଧ ଆଗରେ ଯାଇ ଠିଆ ହେଲା । ବ୍ୟାଧ ଧୀରେ ଧୀରେ ପଛକୁ ଯାଉଥିଲା । ଆଉ ହରିଣଟି ସ୍ୱର ଲହରୀରେ ଆକୃଷ୍ଟ ହୋଇ ଆଗେଇ ଯାଉଥିଲା । ଆଗରେ ଜାଲଟିଏ ବିଛା ଯାଇଥିଲା । ମୁଗ୍ଧ ହରିଣଟି ଜାଲରେ ପଡ଼ିଗଲା । ଅଭିଳାଷ ପୂର୍ଣ୍ଣ ହେବାର ଦେଖି ବ୍ୟାଧ ବୀଣା ବଜାଇବା ବନ୍ଦ କରି ହରିଣକୁ ଧରି ପକାଇଲା ; ଏବଂ ସଙ୍ଗେ ସଙ୍ଗେ ହତ୍ୟା କଲା । ସେହି ସମୟଠାରୁ ହରିଣକୁ ମୁଁ ଗୁରୁଭାବେ ସ୍ୱୀକାର କରିଛି । ବନବାସୀ ଯତି ଗ୍ରାମ୍ୟଗୀତ ଶୁଣିବା ଅନୁଚିତ, ଏହି ଶିକ୍ଷା ହରିଣଠାରୁ ଲାଭକଲି । **ଯେଉଁ ଗୀତରେ ପ୍ରାକୃତ ପୁରୁଷର ଶୃଙ୍ଗାର ବର୍ଣ୍ଣିତ ହୋଇଛି, ତାହା ଭୁଲ୍‌ରେ ମଧ୍ୟ ଶ୍ରବଣୀୟ ନୁହେଁ । ଯଦି କେହି ସେଭଳି ଗୀତ ଶୁଣିବ ତା'ର ହରିଣ ଭଳି ଦୁର୍ଦ୍ଦଶା ଘଟିବ । ପୁରୁଷ ଅପେକ୍ଷା ନାରୀର ସୁଲଳିତ ସଙ୍ଗୀତ, ହାବ, ଭାବ, କଟାକ୍ଷଯୁକ୍ତ ନୃତ୍ୟ ଆଦି କେବେ ଶୁଣିବା, ଦେଖିବା ଉଚିତ ନୁହେଁ ।** ବନବାସୀ ଋଷି ଋଷ୍ୟଶୃଙ୍ଗ ସ୍ତ୍ରୀମାନଙ୍କ ଗୀତରେ ଆତ୍ମବିସ୍ମୃତ ହୋଇ ସେମାନଙ୍କର ବଶ୍ୟତା ସ୍ୱୀକାର କରିଥିଲେ ।''

ଋଷ୍ୟଶୃଙ୍ଗ କିପରି ସ୍ତ୍ରୀମାନଙ୍କ ସଙ୍ଗୀତଦ୍ୱାରା ବଶୀଭୂତ ହୋଇଥିଲେ ବୋଲି ଶୌନକ ପ୍ରଶ୍ନ କରିବାରୁ ସୂତ ଉତ୍ତର ଦେଲେ, ''ବିଭାଣ୍ଡକ ନାମରେ ଜଣେ ମହାନ୍ ଋଷି ଥିଲେ । ସେହି ମୁନିଙ୍କର ରେତଃ ପାନକରି ହରିଣୀଟିଏ ଯେଉଁ ପୁତ୍ର ପ୍ରସବ କରିଥିଲା ତାହାର ନାମ ଋଷ୍ୟଶୃଙ୍ଗ । ମୁନିଙ୍କ ଇଚ୍ଛା ପୁଅ ସଂସାରୀ ନ ହୋଇ ଆଜନ୍ମ ବ୍ରହ୍ମଚାରୀ ଭାବେ ରହୁ । ଏହା ଭାବି, ସେ ପୁଅ ଋଷ୍ୟଶୃଙ୍ଗଙ୍କୁ କେବେହେଲେ କୌଣସି ସ୍ତ୍ରୀ ଲୋକ ଦେଖାଇ ନ ଥିଲେ । ଘୋର ବନରେ, ଏକାନ୍ତ ସ୍ଥାନରେ ସେ ପୁଅକୁ ନେଇ ରହୁଥିଲେ । ଋଷି, ମୁନି, ତପସ୍ୱୀଙ୍କ ବ୍ୟତୀତ ବିଭାଣ୍ଡକ ଅନ୍ୟ କାହାରି ସହିତ ପୁଅକୁ ମିଳାମିଶା କରିବାର ସୁବିଧା ଦେଉ ନଥିଲେ । ଋଷ୍ୟଶୃଙ୍ଗ ମଧ୍ୟ ସଂସାରରେ ତପସ୍ୱୀମାନଙ୍କ ବ୍ୟତୀତ ଅନ୍ୟ କେହି ଅଛନ୍ତି ବୋଲି ଜାଣି ନ ଥିଲେ ।''

''ଋଷ୍ୟଶୃଙ୍ଗ ଯୌବନରେ ପଦାର୍ପଣ କରିବା ପରେ ଅଙ୍ଗ ଦେଶର ରାଜା ନିଜ କନ୍ୟାକୁ ତାଙ୍କ ସହିତ ବିବାହ କରିବାକୁ ଇଚ୍ଛା ପ୍ରକାଶ କଲେ। କିନ୍ତୁ ବିଭାଣ୍ଡକ ମୁନିଙ୍କ ଭୟରେ କେହି ସେଠାକୁ ଏ ବିବାହ ପ୍ରସ୍ତାବ ନେଇ ଯାଇପାରିଲେ ନାହିଁ। କେହି ସ୍ତ୍ରୀ ପ୍ରସଙ୍ଗ ମୁହଁରେ ଉଚ୍ଚାରଣ କରିବା ମାତ୍ରେ ବିଭାଣ୍ଡକ ତାକୁ ଅଭିଶାପ ଦେଉଥିଲେ। ତେଣୁ, ମୃଗୀ ପେଟରୁ ଜନ୍ମ ହୋଇଥିବା ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କ ସହିତ କଥାବାର୍ତ୍ତା କରିବା ଆଦୌ ସୁବିଧା ହେଲାନାହିଁ। ରାଜା ରାଜ୍ୟର ବେଶ୍ୟାମାନଙ୍କୁ ଡାକି ଏ ବିଷୟରେ କହିବାରୁ ସେମାନେ ମଧ୍ୟ ନିଜ ନିଜର ଅନିଚ୍ଛା ପ୍ରକାଶ କଲେ। ରାଜା ନିରାଶ ଓ ଦୁଃଖିତ ହେବାର ଦେଖି ବୃଦ୍ଧା ବେଶ୍ୟାଟିଏ ଋଷ୍ୟଶୃଙ୍ଗଙ୍କୁ ଧରିଆଣିବାପାଇଁ ପ୍ରତିଜ୍ଞା କଲା। ସେ କେତେକ ଯୁବତୀବେଶ୍ୟାଙ୍କୁ ସାଙ୍ଗରେ ନେଇ ବାହାରିଲା।''

''ବୃଦ୍ଧା ଚିନ୍ତା କଲା, ଋଷ୍ୟଶୃଙ୍ଗଙ୍କୁ ସ୍ତ୍ରୀମାନଙ୍କ ରୂପରେ କେବେହେଲେ ଆକୃଷ୍ଟ କରି ହେବାନାହିଁ। ସେ ମୃଗୀର ପୁତ୍ର। ମୃଗୀମାନେ ମଧୁର ସ୍ୱରରେ ବଶୀଭୂତ ହୁଅନ୍ତି। ମା'ର କିଛି ପ୍ରଭାବ ଯୁବକ ଉପରେ ନିଶ୍ଚୟ ପଡ଼ିଥିବ। ତେଣୁ କେବଳ ଗୀତଦ୍ୱାରା ଋଷ୍ୟଶୃଙ୍ଗଙ୍କୁ ବଶୀଭୂତ କରିହେବ। ଜଣେ ଗୋଟିଏ ବିଷୟର ଅଧୀନ ହେଲେ ଅନ୍ୟ ବିଷୟର ମଧ୍ୟ ଅଧୀନତା ସ୍ୱୀକାର କରିବ। ଋଷ୍ୟଶୃଙ୍ଗଙ୍କୁ ଗୀତ ଶବ୍ଦରେ ଆକର୍ଷଣ କରିପାରିଲେ ପରେ ପରେ ସୁନ୍ଦର ରୂପ, ସ୍ୱାଦିଷ୍ଟ ଭୋଜନ, ସୁଖସ୍ପର୍ଶ ଓ ମନୋହର ଗନ୍ଧଦ୍ୱାରା ବଶୀଭୂତ କରିହେବ। ଏହା ଚିନ୍ତାକରି ବୃଦ୍ଧାବେଶ୍ୟା ବିଭାଣ୍ଡକ ମୁନି କୁଡ଼ିଆରେ ନ ଥିଲାବେଳେ ସୁସ୍ୱରରେ ବୀଣା ବଜାଇଲା। ବୀଣାର ସ୍ୱର ସହିତ ତାଳଦେଇ ଅନ୍ୟମାନେ ନୃତ୍ୟ ଆରମ୍ଭ କରିଦେଲେ। ମୁନି ପୁତ୍ର ସେହି ସ୍ୱରର ଅନୁଗମନ କରି ଯେତେବେଳେ ତାଙ୍କ ପାଖରେ ପହଞ୍ଚିଲେ, ସେହି ବେଶ୍ୟାଗଣ ସ୍ୱଶରୀର ସୁଗନ୍ଧ ଅଙ୍ଗରାଗ, ଗୁପ୍ତାଙ୍ଗର ସୁଖଦ ସ୍ପର୍ଶ ଓ ସୁମିଷ୍ଟ ଉପାଦାନଦ୍ୱାରା ଋଷ୍ୟଶୃଙ୍ଗଙ୍କୁ ଭୁଲାଇ ନେଲେ।

''ପିତା ବିଭାଣ୍ଡକ ପୁତ୍ରଙ୍କୁ ରୂପ, ରସ, ଗନ୍ଧ ଓ ସ୍ପର୍ଶଠାରୁ ଦୂରେଇ ରଖିଥିଲେ। କିନ୍ତୁ ମାତୃଗୁଣବଶତଃ ଋଷ୍ୟଶୃଙ୍ଗ ଶବ୍ଦଶକ୍ତି କବଳରୁ ନିଜକୁ ରକ୍ଷା କରିପାରିଲେ ନାହିଁ। ସେହି କାରଣରୁ ଶେଷରେ ସେ ବେଶ୍ୟାମାନଙ୍କ କବଳରେ ପଡ଼ି ଗୃହସ୍ଥାଶ୍ରମ ବରଣ କରିଥିଲେ। ତେଣୁ, ଗୀତ ଶୁଣିବାର ଆକାଂକ୍ଷା ଥିଲେ ଭଗବଦ୍ ଗୁଣକୀର୍ତ୍ତନ ସମ୍ବନ୍ଧୀୟ ଗୀତ ଶୁଣିବା ଉଚିତ। ମାନବର ହୃଦୟ ଉପରେ ସଙ୍ଗୀତର ତୀକ୍ଷ୍ଣ ପ୍ରଭାବ ପଡ଼ିଥାଏ। ଏହି ଶିକ୍ଷା ମୋର ପଞ୍ଚଦଶ ଗୁରୁ ହରିଣଠାରୁ ଲାଭ କରିଛି ବୋଲି ଅବଧୂତ କହିବାରୁ ରାଜା ପଚାରିଲେ, ''ବ୍ରହ୍ମନ୍। ଆପଣଙ୍କଠାରୁ ଅନୁଭୂତିପୂର୍ଣ୍ଣ ବହୁ ଉପଦେଶ ଶିକ୍ଷା କଲି। ଆପଣ ମାଛଠାରୁ କ'ଣ ଶିଖିଲେ ତାହା ବୁଝାଇ କହନ୍ତୁ।''

ନୈମିଷ୍ୟାରଣ୍ୟରେ ସମବେତ ହୋଇଥିବା ଶୌନାକାଦି ମୁନିମାନଙ୍କୁ ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ। ଅବଧୂତ ଦତ୍ତାତ୍ରେୟ ମତ୍ସ୍ୟଗୁରୁଠାରୁ ଯେଉଁ ଶିକ୍ଷା ଲାଭ କରିଥିଲେ, ତାହା କହୁଛି, ଏକମନ ହୋଇ ସମସ୍ତେ ଶୁଣନ୍ତୁ।''

### ଛପ୍ପୟ

କୋକିଲ କଂଠୀ ନାରି ଗାଇକେ ଚିତ୍ତ ଲୁଭାବୈ।
ବିଷୟ ପ୍ରଶଂସା କରୈ ସ୍ୱାର୍ଥ ତେଁ ତୁରତ ଗିରାବୈ॥
ବ୍ୟାଧନି ଜାଲ ବିଛାୟ ମନୁଜ ମୃଗ ତୁରତ ଫସାବୈ।
ଋଷ୍ୟଶୃଙ୍ଗ ଦୃଷ୍ଟାନ୍ତ ଶାସ୍ତ୍ର ପ୍ରତ୍ୟେକ୍ଷ ବତାବୈ॥
ମୃଗ ଗୁରୁ କରି ଶିକ୍ଷା ଲାଇ, କରୈ ରାଗ ବ୍ରଜଚନ୍ଦ୍ର ମହଁ।
ବିଷୟ ରାଗ ସୁନି ମୃଗ ସରିସ, ଫସୈ ନ ଜଗ କେ ଫନ୍ଦ ମହଁ॥



# ମତ୍ସ୍ୟଠାରୁ ଶିକ୍ଷା

**ଜିହ୍ୱୟାତିପ୍ରମାଥିନ୍ୟା ଜନୋ ରସବିମୋହିତଃ।**
**ମୃତ୍ୟୁମୃଚ୍ଛତ୍ୟସଦ୍‌ବୁଦ୍ଧିର୍ମୀନସ୍ତୁ ବଡ଼ିଶୈର୍ୟଥା॥ ★**

[ଶ୍ରୀଭା.୧୧ସ୍କ, ୮ମ.ଅ. ୧୯ ଶ୍ଳୋକ]

### ଛପ୍ପୟ

ମତ୍ସ୍ୟ କରେ୍ୟା ଗୁରୁ ଲାଇ ସୀଖ ରସନା ବଶ ରାଖେ।
ଲୋଲୁପତାବଶ କବହୂଁ ନ ଅନୁଚିତ ରସ କୂଁ ଚାଖେ॥
ମାଂସ ଲୋଭ୍ ତେଁ ମତ୍ସ୍ୟ ନିଗଲି କାଁଟେ କୂଁ ଜାବୈ॥
ଫେରି ଉଗଲି ନହିଁ ସକୈ ହୋଉ ମହଁ ପ୍ରାନ ଗଁମାବୈ॥
ହୋବୈ ବିଷୟ ନିବୃତ୍ତି ଜବ, ଶିଥିଲ ହୋହିଁ ଇନ୍ଦ୍ରିୟ ସକଲ।

କେବଲ ରସନା ଛୋଡ଼ିକେ, ଯହ ଇନ୍ଦ୍ରିୟ ଅତିଶୟ ପ୍ରବଲ॥

---

★ ଜିହ୍ୱା ମଧୁର ରସ ପାଇ । ଲାଳସେ ଛାଡ଼ି ନ ପାରଇ ॥
ନିରତେ ଲୋଡ଼େ ଲୋଭ ମନେ । ମୀନ ବଡ଼ସୀ ଥୋପେ ଯେହ୍ନେ ॥
ଜିହ୍ୱାକୁ ବର୍ଜି ଇନ୍ଦ୍ରଗଣ । ହେଲେ ତ ଜିଣିପାରେ ମନ ॥

ଏ ବୋଲି ବୁଝି ଯେଉଁପ୍ରାଣୀ । ଯୋଗେ ଜିହ୍ୱାକୁ ପାରେ ଜିଣି ॥
ହେଲେ ଜିଣଇ ଇନ୍ଦ୍ରିଗଣ । ସେ ପ୍ରାଣୀ ନିନ୍ଦେ ନାରାୟଣ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କନ୍ଧ. ୯ଅ.]

ଆମର ପାଞ୍ଚଟି ଜ୍ଞାନେନ୍ଦ୍ରିୟ ଓ ପାଞ୍ଚଟି କର୍ମେନ୍ଦ୍ରିୟ ମଧ୍ୟରେ ପରସ୍ପରର ନିବିଡ଼ ସମ୍ପର୍କ ରହିଛି। ଚକ୍ଷୁ ଇନ୍ଦ୍ରିୟ ଚରଣ ସହିତ ସମ୍ବନ୍ଧିତ। ଚକ୍ଷୁ ବନ୍ଦ କରିଦେଲେ ଚାଲିବା ସମ୍ଭବ ହୁଏନାହିଁ। ପାଦତଳେ ତେଲ ବା ଘିଅ ଲଗାଇଲେ ଆଖିରେ ବେଶ୍ ଶୀତଳତା ଅନୁଭୂତ ହୁଏ। ତାତିଲା ବାଲିରେ ଚାଲିଲେ ଆଖି ଲାଲ୍ ହୋଇଯାଏ। ଯେଉଁମାନଙ୍କର ପାଦଗତି ଶିଥିଳ ହୋଇଯାଏ ସେମାନଙ୍କର ଦୃଷ୍ଟିଶକ୍ତି ମଧ୍ୟ କମିଯାଏ। ସେହିପରି ଘ୍ରାଣେନ୍ଦ୍ରିୟ ନାସିକା ସହିତ ଗୁଦେନ୍ଦ୍ରିୟର ଘନିଷ୍ଠ ସମ୍ବନ୍ଧ ରହିଛି। ସ୍ୱାଧିଷ୍ଠାନଚକ୍ର ଦୂଷିତ ହୋଇଥିବା ଲୋକର ଗନ୍ଧ ଆଘ୍ରାଣ ଜ୍ଞାନ କମିଯାଏ। ତାହା ସହିତ ସ୍ପର୍ଶେନ୍ଦ୍ରିୟର ସମ୍ପର୍କ ଅନୁଭୂତ ହୁଏ। ଦେହର ଯେ କୌଣସି ଅଂଶରେ ପିମ୍ପୁଡ଼ି ଆଦି କାମୁଡ଼ିଲେ ହାତ ଶୀଘ୍ର ସେଠାରେ ପହଞ୍ଚିଯାଏ। ଶରୀରର ଯେ କୌଣସି ସ୍ଥାନ କୁଣ୍ଡେଇ ହେଲେ ହାତଦ୍ୱାରା ହିଁ ସେହି କଣ୍ଡୁ ନିବାରିତ ହୁଏ। ପୁନଶ୍ଚ ବାଣୀ ସହିତ କର୍ଣ୍ଣେନ୍ଦ୍ରିୟର ସମ୍ପର୍କ ରହିଛି। ତେଣୁ, ଯେ ଛଡ଼ା ସେ କାଲା ମଧ ହୋଇଥାଏ। ବଧିର କଥା କହିବାମାତ୍ରେ ନିଜେ କମ୍ ଶୁଣୁଥିବା କଥା ପ୍ରମାଣିତ କରିଦିଏ। କାନର ବିନା ସାହାଯ୍ୟରେ କଥା ଶୁଣାଯାଏ ନାହିଁ। ସେହିପରି ରସନେନ୍ଦ୍ରିୟ ସହିତ ଉପସ୍ଥର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ। ଯେ ଯେତିକି ଜିହ୍ୱାଲୋଲୁପ ହେବ ସେ ସେତିକି କାମୁକ ହେବ। ଜିହ୍ୱାର ସଂଯମ ବିନା ବ୍ରହ୍ମଚର୍ଯ୍ୟ ଯଥାବିଧି ପାଳନ କରିବା ଅସମ୍ଭବ। ସଂସାରରେ ଯେଉଁ ଦୁଇଟି ଇନ୍ଦ୍ରିୟ ସବୁଠାରୁ ପ୍ରବଳ ସେ ଦୁହେଁ ହେଉଛନ୍ତି ଜିହ୍ୱା ଓ ଉପସ୍ଥ। ଏହି ଦୁଇଟିର ବଶୀଭୂତ ହୋଇଥିବା ମାନବ ଅତ୍ୟନ୍ତ ଦୁଃଖୀ। ସେ ସ୍ତ୍ରୀଲୋକମାନଙ୍କର କ୍ରୀଡ଼ା ପୁତ୍ତଳିକା ପାଲଟିଯାଏ। ପତ୍ନୀଦ୍ୱାରା ହିଁ ଏହି ଇନ୍ଦ୍ରିୟଦ୍ୱୟ ବଶୀଭୂତ ହୁଅନ୍ତି। ଗାର୍ହସ୍ଥ୍ୟ ଜୀବନରେ ଏହି ଇନ୍ଦ୍ରିୟଦ୍ୱୟଜନିତ ସୁଖକୁ ବିଶେଷ ପ୍ରାଧାନ୍ୟ ଦିଆଯାଇଛି। କହିବା ବାହୁଲ୍ୟ ହେବ ଯେ ଅଧିକାଂଶ ଲୋକ ସେହି ସୁଖଭୋଗ ଲକ୍ଷ୍ୟରେ ହିଁ ଗୃହସ୍ଥ ହେଉଛନ୍ତି।''

ଜଣେ ବୁଢ଼ା କବିରାଜ ଥାଆନ୍ତି। ବାର୍ଦ୍ଧକ୍ୟରେ ସେ ନୂଆ ବିବାହ କରିଥାନ୍ତି। କେହିଜଣେ ପଚାରିଲା, 'ବୈଦ୍ୟ ମହାଶୟ! ଏ ଅବସ୍ଥାରେ ଆପଣ ପୁଣି ବିବାହ କଲେ କାହିଁକି? ଆପଣଙ୍କ ପୁଅ ତ ବାହାହେବାକୁ ହୋଇଗଲାଣି।' କବିରାଜ କହିଲେ, 'ଭାଇ! ତୁମେ ଯାହା କହିଲ ସବୁ ସତ, ମୋର ବିବାହ କରିବାର କିଛି ଆବଶ୍ୟକତା ନ ଥିଲା। କିନ୍ତୁ ସତ କହିଲେ, ପୂଜାରୀ ହାତରନ୍ଧାରେ ମନ ମାନୁନାହିଁ, ସେ ଖାଦ୍ୟ ଭଲ ଲାଗୁନାହିଁ, କି ସେଥିରେ ପେଟ ବି ପୂରୁ ନାହିଁ। ଏହି ଉଦାହରଣରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଉକ୍ତ ଇନ୍ଦ୍ରିୟଦ୍ୱୟର ବଶୀଭୂତ ହୋଇ ମାନବ ସାରାଜୀବନ ଦୀନ ଓ ପରାଧୀନ ଭାବେ କାଳ ଅତିବାହିତ କରେ। ଔପସ୍ଥ ଜୈହ୍ୱକାର୍ପଣ୍ୟାଦ୍ ଗୃହପାଳାୟତେ ଜନାଃ— ଅର୍ଥାତ୍ ଜିହ୍ୱା ଓ ଉପସ୍ଥ କାରଣରୁ ମଣିଷ କୁକ୍କୁର ଭଳି ଜୀବନ କଟାଏ। ଏହି ଇନ୍ଦ୍ରିୟଦ୍ୱୟକୁ ଜୟ କରିଥିବା ବ୍ୟକ୍ତି ବିଶ୍ୱବିଜୟୀ ହୋଇପାରେ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ! ଦତ୍ତାତ୍ରେୟ ଅବଧୂତ ମାଛଠାରୁ ଗ୍ରହଣ କରିଥିବା ଶିକ୍ଷା ବିଷୟ ବର୍ଣ୍ଣନା କରିବାକୁ ଯାଇ ରାଜା ଯଦୁଙ୍କୁ କହିଲେ, ''ହେ ରାଜନ୍! ଦିନେ ମୁଁ ନଦୀକୂଳରେ ବୁଲୁଥିଲି। ସେଠାରେ ଦେଖିଲି, ଜଣେ ଧୀବର ବନ୍‌ଶୀ ଡୋରରେ ଲାଗିଥିବା କଣ୍ଟାରେ ଆଧାର ଗୁନ୍ଥୁଛି। ମୁଁ ପଚାରିଲି, 'ଭାଇ, ତୁମେ ଏପରି ଆଧାର ଗୁନ୍ଥୁଛ କାହିଁକି?' ସେ ଉତ୍ତର ଦେଲା, 'ମହାଶୟ! ଏହି କଣ୍ଟାରେ ଗୁନ୍ଥୁଥିବା ଆଧାରକୁ ଜଳରେ ଛାଡ଼ିଦେବି। ମାଛ ଅ'ଧାର ଲୋଭରେ ଏ କଣ୍ଟାକୁ ଗିଳିଦେବ। ସେତେବେଳେ ମୁଁ ତାକୁ ଉପରକୁ ଉଠାଇ ଆଣିବି।' ମୁଁ କହିଲି, 'ଯେ ଗିଳିପାରୁଛି ସେ ବାନ୍ତି ବି କରିଦେଇପାରେ। ଯେତେବେଳେ ମାଛ ଜାଣିବ ଏଥିରେ କଣ୍ଟା ଲାଗିଛି ସେତେବେଳେ ସେ ତାକୁ ବାନ୍ତିଦ୍ୱାରା ବାହାର କରିଦେବ।'

ଧୀବର କହିଲା, 'ବ୍ରହ୍ମନ୍! ଗିଳିଦେବାଟା ଯେତେ ସହଜ ବାହାର କରିବା ସେତିକି କଠିନ।' ବହୁଲୋକ ଅଭିମାନର ବଶବର୍ତ୍ତୀ ହୋଇ କହନ୍ତି, ଆମର ମନ କ'ଣ ସେଥିରେ ଅଛି, ଯେବେ ଇଚ୍ଛା ହେବ ସେତେବେଳେ ଛାଡ଼ିଦେବୁ। ଏହା ସେମାନଙ୍କର ମୂର୍ଖତା ବ୍ୟତୀତ ଆଉ କିଛି ନୁହେଁ। ଅନାଦିକାଳରୁ ଜୀବଠାରେ ବିଷୟ ପ୍ରବୃତ୍ତି ସହଜାତ ଭାବେ ରହିଛି। ଥରେ ସେ ଜଞ୍ଜାଳରେ ପଡ଼ିଲେ ତାକୁ ଛାଡ଼ିବା କାଠିକର ବ୍ୟାପାର। ଏହି ଆଧାର ଗୁନ୍ଥା କଣ୍ଟାର ମୁନ ବଙ୍କା ହୋଇ ରହିଛି। ଏହାକୁ ସହଜରେ ଗିଳିଦେଇ ହେବ। କିନ୍ତୁ ବାନ୍ତି କରିବା ବେଳେ ତାହା ତଣ୍ଟିରେ ଲାଖିରହିବ। ସେତେବେଳେ ମୁଁ ତାକୁ ଉପରକୁ ଟାଣି ଆଣିବି। ଯେଉଁ ମାଛ ଏହା ଗିଳିବ ନାହିଁ ସେ ଧରାପଡ଼ିବ ନାହିଁ।'

''ସେହି ଧୀବରର କଥା ଶୁଣି ମୁଁ ସେଠାରେ କିଛି ସମୟ ଠିଆହୋଇ ରହିଲି। ଆଧାର ଗୁନ୍ଥିସାରି ତାକୁ ପାଣିକି ଫିଙ୍ଗିଦେଲା। ବନ୍‌ଶୀଟି ଧରି ବସି ରହିଲା। କିଛି ସମୟ ପରେ ବଡ଼ ମାଛଟିଏ ଆସି, ଲାଳସାକୁ ଦମନ କରି ନ ପାରି, ଆଧାରକୁ ଗିଳିଦେଲା। ଧୀବର ଡୋରକୁ ଟାଣିବା ମାତ୍ରେ କଣ୍ଟାଟି ମାଛର ତଣ୍ଟିରେ ଗଳିଗଲା। ପାଣିରୁ ଉପରକୁ ଆସିବାପରେ କିଛି ସମୟ ଛଟପଟ ହୋଇ ମାଛଟି ମରିଗଲା। ମୁଁ ସେଇଠୁ ମାଛକୁ ଗୁରୁଭାବେ ସ୍ୱୀକାର କଲି। **ପୁରୁଷ କେବେହେଲେ ଜିହ୍ୱାର ବଶ୍ୟତା ସ୍ୱୀକାର କରିବା ଉଚିତ ନୁହେଁ ବୋଲି ଶିକ୍ଷା ପାଇଲି।''**

ମହାରାଜ ଯଦୁ ପଚାରିଲେ, ''ବ୍ରହ୍ମନ୍! ଜିହ୍ୱା ଯଦି ମୃତ୍ୟୁର କାରଣ ଓ ବନ୍ଧନର ମୂଳ ନିଦାନ, ତେବେ ଖିଆପିଆ ଛାଡ଼ିଦେଲେ ସବୁଦିଗରୁ ମଙ୍ଗଳ ହେବ। ଖାଇବ କାହିଁକି? ବନ୍ଧନରେ ପଡ଼ିବ କାହିଁକି?'' ଅବଧୂତ ରାଜାଙ୍କୁ ବୁଝାଇ କହିଲେ, ''ରାଜନ୍! ନ ଖାଇଲେ ଅନ୍ୟ ଇନ୍ଦ୍ରିୟଗଣ ଶିଥିଳ ହୋଇଯିବେ। ଅନଶନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରାଯାଏ, ଏହା ସତ୍ୟ। କିନ୍ତୁ ଅନେକ ଦିନ ଧରି ନ ଖାଇଲେ ଆଖିର ଦୃଷ୍ଟି ରହିବ ନାହିଁ, ହାତ ପାଦ କାମ କରିବ ନାହିଁ। କଥା କହିବାରେ-କଷ୍ଟ ହେବ। ଦେହ ଅଭ୍ୟନ୍ତରସ୍ଥ ମଳ ନିଷ୍କାସିତ ହେବନାହିଁ। ଅନ୍ୟ ସମସ୍ତ ଇନ୍ଦ୍ରିୟ ଶିଥିଳ ହୋଇଗଲେ ମଧ୍ୟ ଜିହ୍ୱା କେବେହେଲେ ଶିଥିଳ ହେବନାହିଁ। ହାତଦ୍ୱାରା କୌଣସି ଖାଦ୍ୟ ଜିହ୍ୱା ପାଖକୁ ନ ନେଲେ ମଧ୍ୟ ମନର ଖାଦ୍ୟ ଦ୍ୱାରା ହିଁ ଜିହ୍ୱାର ଲାଳସା ତୃପ୍ତି ହେଉଥିବ। ଅତୀତର ସ୍ୱାଦକୁ ସ୍ମରଣ କରିବାଦ୍ୱାରା ଜିହ୍ୱାର ଖାଦ୍ୟ ବ୍ୟବସ୍ଥା ହୋଇଯିବ ଏବଂ ଭାବି ଖାଦ୍ୟ ଆଶାରେ ଲୋଭେଇ ହୋଇ ଅପେକ୍ଷା କରିବ। ତେଣୁ, ଅନ୍ୟ ଇନ୍ଦ୍ରିୟ ଅପେକ୍ଷା ଜିହ୍ୱାକୁ ବଶୀଭୂତ କରିବା ଅତି କଷ୍ଟକର। ଅନ୍ୟାନ୍ୟ ଇନ୍ଦ୍ରିୟର ଖାଦ୍ୟ ପ୍ରତିରୋଧ ଦ୍ୱାରା ହିଁ ଜିହ୍ୱାକୁ ବଶୀଭୂତ କରିହେବ। ଜିହ୍ୱାକୁ ଜୟ କରିପାରିଲେ ସବୁ ଇନ୍ଦ୍ରିୟଙ୍କୁ ସହଜରେ ବଶୀଭୂତ କରାଯାଇପାରିବ।''

ଯଦୁ ମହାରାଜ କହିଲେ, ''ଭଗବନ୍! ଆପଣ ପୃଥିବୀଠାରୁ ମତ୍ସ୍ୟ ପର୍ଯ୍ୟନ୍ତ ଷୋଳଜଣ ଗୁରୁଙ୍କଠାରୁ ଲାଭ କରିଥିବା ମୂଲ୍ୟବାନ୍ ଜ୍ଞାନ ପ୍ରସଙ୍ଗରେ ବର୍ଣ୍ଣନା କଲେ। ବର୍ତ୍ତମାନ ସପ୍ତଦଶ ଗୁରୁଭାବେ ବେଶ୍ୟାଠାରୁ କି ଶିକ୍ଷା ଗ୍ରହଣ କଲେ ତାହା ବୁଝାଇ କୁହନ୍ତୁ। ସର୍ବସାଧାରଣରେ ନିନ୍ଦିତ ହେଉଥିବା ବେଶ୍ୟାକୁ ଆପଣ କାହିଁକି ଗୁରୁଭାବେ ସ୍ୱୀକାର କଲେ?''

ରାଜାଙ୍କ ପ୍ରଶ୍ନ ଶୁଣି ଅବଧୂତ ହସି ହସି କହିଲେ, ''ରାଜନ୍! ଏ ସଂସାରରେ **ନିଜ ବ୍ୟତୀତ ଅନ୍ୟ କିଛି ଖରାପ ଥିବାର ମନେହୁଏ ନାହିଁ। ସଂସାରରେ ସମସ୍ତେ ବାହାରକୁ ଭଲ ଦେଖାଯାଆନ୍ତି। କିନ୍ତୁ ସବୁକିଛି ମନ୍ଦ ନିଜ ଭିତରେ ଥାଏ। ଏ ସଂସାର**

ଦୋଷ ଓ ଗୁଣ ଉଭୟଦ୍ୱାରା ନିର୍ମିତ। ସମସ୍ତଙ୍କଠାରେ କିଛି ଭଲଗୁଣ ଅଛି ଆଉ କିଛି ମନ୍ଦଗୁଣ ବି ରହିଛି। ଜୀବ ମଧ୍ୟରେ ଆଶ୍ରିତ ଏକମାତ୍ର ବ୍ରହ୍ମ ହିଁ ନିର୍ଦ୍ଦୋଷ। ଯଦି ଆମେ ଅନ୍ୟଠାରେ କେବଳ ଖରାପ ଗୁଣ ବା ଦୋଷ ଦେଖିବା ତେବେ ଆମେ ସେଇ ସଂସ୍କାର ମଧ୍ୟରେ ପଡ଼ିଯିବା, ସେହିପରି ଯଦି ଭଲଗୁଣ ବା ନିର୍ଦ୍ଦୋଷଭାବ ଲକ୍ଷ୍ୟ କରିବା ତେବେ ଆମର ଉତ୍ତମ ଭାବନା ଜାଗ୍ରତ ହେବ। ଅଗ୍ନି ଯେଉଁଠି ଲାଗେ ପ୍ରଥମେ ତା'ର ଆଶ୍ରୟକୁ ଜଳାଇସାରି ଅନ୍ୟ ଆଡ଼କୁ ଆଗେଇଯାଏ। କାହାରି ଉପରେ କ୍ରୋଧ କଲେ ପ୍ରଥମେ ତାହା ନିଜ ଭିତରେ ବିସ୍ତୃତିଲାଭ କରେ। ଅନ୍ୟର ଦୋଷ ଦେଖିବାଦ୍ୱାରା ନିଜର ହିଁ ସର୍ବାଧିକ କ୍ଷତି ଘଟେ। ଯଦି କେବେ ମନ୍ଦଗୁଣ ଦେଖିବା ଆବଶ୍ୟକ ତେବେ ପ୍ରଥମେ ନିଜ ପ୍ରତି ଦୃଷ୍ଟିଦେବା ଦରକାର। ଯଦି ଭଲଗୁଣ ଦେଖିବା ଦରକାର ତେବେ ଅନ୍ୟ କାହାରିକୁ ଅନୁଗମନ କରିବା ଉଚିତ। ଏପରି କୌଣସି ଅକ୍ଷର ନାହିଁ ଯାହା ମନ୍ତ୍ର ନୁହେଁ, ଏବଂ ଏପରି କୌଣସି ବସ୍ତୁ ନାହିଁ ଯାହା ଔଷଧି ନୁହେଁ। ସେହିପରି ଏପରି କେହି ଲୋକନାହିଁ ଯାହାର କିଛି ନା କିଛି ଭଲ ଗୁଣନାହିଁ। ସାଧୁଲୋକେ ନିଜର କ୍ଷୁଦ୍ରତମ ଦୋଷକୁ ଖୁବ୍ ବଡ଼ ଆକାରରେ ଏବଂ ଅନ୍ୟର ପରମାଣୁ ସଦୃଶ ଗୁଣକୁ ପର୍ବତ ପ୍ରମାଣେ ଦେଖିଥା'ନ୍ତି। ଧନଲୋଭୀ ଯେପରି ବିଷ୍ଠାରେ ପଡ଼ିଥିବା ମୋତିକୁ ଉଠାଇ ଆଣେ ସେହିପରି ଜ୍ଞାନପିପାସୁ ସମସ୍ତଙ୍କୁ ଗୁରୁଭାବେ ଗ୍ରହଣ କରି ଶିକ୍ଷାଲାଭ କରିବା ଉଚିତ। ତେଣୁ, ଜ୍ଞାନୀଲୋକ ବେଶ୍ୟାଠାରୁ ମଧ୍ୟ ଜ୍ଞାନ ଆହରଣ କରିଥାଏ।''

ସୂତ କହୁଛନ୍ତି, ''ହେ ମୁନିଗଣ! ଅବଧୂତ ମହାମୁନି ବେଶ୍ୟାଠାରୁ ଯେଉଁ ଶିକ୍ଷା ଗ୍ରହଣ କରିଥିଲେ ସେ ବିଷୟରେ ଏକ ମର୍ମସ୍ପର୍ଶୀ କାହାଣୀ ଅଛି, ତାହା ଏକମନ ହୋଇ ଶ୍ରବଣ କରନ୍ତୁ।''

### ଛପ୍‌ପୟ

ହୈଂ ଇନ୍ଦ୍ରିୟ ଆଧୀନ ସମୟ ସବ ଯୋ ହୀ ବୀତୈ।
ଇନ୍ଦ୍ରିୟଜିତ ନହିଁ ହୋହି ନ ଜବ ତକ ରସନା ଜୀତୈ॥
ରସନା ସଂୟମ ସୀଖ ଲଈ ସଫରୀ ତୈ ରାଜନ୍।
ବୈଶ୍ୟା ଗୁରୁ ଟେଯୌ କରି କହୂଁ ତାକୋ ଅବକାରନ॥
ମିଥିଲାପୁର ମହଁ ପିଙ୍ଗଳା, ବୈଶ୍ୟା ଅତି ସୁନ୍ଦର ରହତି।
ଆବୈ କୋଇ ନର ଧନୀ, ବୈଠୀ ⁄ନିତ ଆଶା କରତି॥



# ବେଶ୍ୟାଠାରୁ ଶିକ୍ଷା

ଆଶା ହି ପରମଂ ଦୁଃଖଂ ନୈରାଶ୍ୟଂ ପରମଂ ସୁଖମ୍ ।
ଯଥା ସେଞ୍ଛିଦ୍ୟ କାନ୍ତାଶାଂ ସୁଖଂ ସୁଷ୍ୱାପ ପିଙ୍ଗଳା ।। ★
[ଶ୍ରୀଭା.୧୧ସ୍କ, ୮ମ ଅ. ୪୪ଶ୍ଳୋକ]

### ଛପ୍ପୟ

ଇକ ଦିନ ବୈଠୀ ରହୀ ନ କୋଈ କାମୀ ଆୟୋ ।
ହ୍ୱୈ ନିରାଶ ବୈରାଗ୍ୟ ଭୟୋ ମନ ଅତି ପଛତାୟୋ ।।
ସୋଚତି- ହ୍ୱୌ ଅତି ପତିତ ମନୁଜ ତନ ବ୍ୟର୍ଥ ଗଁମାୟୋ ।
ନିତ୍ୟ କମାଉଁ ପାପ ନ ହରିମହଁ ଚିତ୍ତ ଲଗାୟୋ ।।
କରୈ କାମନା ପୂର୍ଣ୍ଣ କା, ଯେ କାମୀ ଅତି କ୍ଷୁଦ୍ର ନର ।
ଭଜୌ ନ ଭକ୍ତୁଁ ପ୍ରଭୁକୁଁ ସତତ, ଦୋ ବିଶ୍ୱମ୍ଭର ଗୁଣାକର ।।

ଦୁଃଖରେ ପଡ଼ିବାପରେ ଯାହାର ବୈରାଗ୍ୟ ଜାତହୁଏ, ତାହାର ମନରେ ଭଗବାନଙ୍କ ନିତ୍ୟତା ଓ ସାଂସାରିକ ପଦାର୍ଥର ଅସତ୍ୟତା ତଥା କ୍ଷଣଭଙ୍ଗୁରତାର ଜ୍ଞାନ ଉଦୟ ହୁଏ । ଏଭଳି ଅବସ୍ଥାର ଲୋକଙ୍କୁ ଭଗବାନ ଭଲପାଆନ୍ତି ଓ କୃପା ଦୃଷ୍ଟିରେ ଦେଖନ୍ତି । ଧନର ତୃଷ୍ଣା କେବେହେଲେ ଶାନ୍ତ ହୁଏନାହିଁ । ଯାହାର ତୃଷ୍ଣା ଯେତେ ବଢ଼ିବ ସେ ସେତିକି ଦରିଦ୍ର ଓ ଅସହାୟ ହୋଇପଡ଼ିବ । ସେଥିପାଇଁ ଭଗବାନ୍ ଯାହାରକୁ ଆଦର କରିବାକୁ ଚାହାଁନ୍ତି, ତା'ର ବନ୍ଧୁ ଓ ସ୍ୱଜନ ବିଚ୍ଛେଦ ଘଟେ, ସେ ଦରିଦ୍ର ହୋଇଯାଏ । ଅବନ୍ତୀ ନଗରର ରାଜା ଭର୍ତ୍ତୃହରି ନିଜର ପତ୍ନୀଙ୍କୁ ଅତୀବ ଆଦର କରୁଥିଲେ । ସେ ଥିଲେ ସୁନ୍ଦରୀ ଓ ଗୁଣବତୀ ନାରୀ । ରାଜା ନିଜର ସମ୍ପୂର୍ଣ୍ଣ ପ୍ରେମ ଓ ଉଦାରତା ପ୍ରିୟତମା ପତ୍ନୀଙ୍କ ଉପରେ ଅଜାଡ଼ି ଦେଇଥିଲେ । ପତ୍ନୀର ସନ୍ତୋଷ ପାଇ ରାଜା ସର୍ବସ୍ୱ ତ୍ୟାଗ କରିଥିଲେ । କିନ୍ତୁ ରାଣୀ ରାଜାଙ୍କ ପ୍ରତି କପଟପ୍ରେମ ପ୍ରଦର୍ଶନ କରୁଥିଲେ, କାରଣ, ରାଜାଙ୍କ ପ୍ରତି ତାଙ୍କର ଆନ୍ତରିକ ପ୍ରେମ ନ ଥିଲା ।

କାମ ହେଉଛି ଅନ୍ଧତା । କାମାନ୍ଧ ବ୍ୟକ୍ତି ପାତ୍ରାପାତ୍ର ବିଚାର କରିପାରେ ନାହିଁ କି ଦୋଷାଦୋଷ ଦେଖିପାରେନାହିଁ । ସୁନ୍ଦର ବା ଅସୁନ୍ଦର ରୂପର ଜ୍ଞାନ ରହେ ନାହିଁ । ଅଶ୍ୱପାଳ ସହିତ ରାଣୀଙ୍କର ଗୁପ୍ତ ସଂପର୍କ ଥିଲା । ସେ ରାଜାଙ୍କ ଘୋଡ଼ାମାନଙ୍କୁ ଦେଖାଶୁଣା

---



| | | | |
|---|---|---|---|
| ପରମ ସୁଖ ବଇରାଗ୍ୟ | । | ଆଶା ପରମଦୁଃଖ ଯୋଗ | ।। |
| ଏଣୁ ସକଳ ଆଶା ତେଜି | । | କୃଷ୍ଣଚରଣ ଦୃଢ଼େ ଭଜି | ।। |
| ପିଙ୍ଗଳା ଭ୍ରମି ଘୋରବନେ | । | ପଶିଲା ଶ୍ରୀହରି ଚରଣେ | ।। |

[ଭାଗବତ : ଜଗନ୍ନାଥ ଦାସ :୧୧ମ ସ୍କନ୍ଧ, ୯ମ.ଅ.]

କରୁଥିବା ଏକ ସାଧାରଣ ଚାକର। କିନ୍ତୁ ରାଣୀ ତାକୁ ହୃଦୟ ଦେଇ ଆଦର ସୋହାଗ କରୁଥିଲେ। ରାଜା ଆହୋରାତ୍ର ରାଣୀଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ବ୍ୟସ୍ତ ରହୁଥିଲେ ଏବଂ ରାଣୀ ମଧ୍ୟ ରାଜାଙ୍କ ପ୍ରତି ଅତିଶୟ କୃତ୍ରିମ ପ୍ରେମ ପ୍ରଦର୍ଶନ କରୁଥିଲେ। ରାଣୀଙ୍କ ହୃଦୟକୁ ନଗରର ଜଣୈକା ବୈଶ୍ୟା ଆୟତ୍ତ କରିଥିଲା। ଏହା ଫଳରେ ସେ ବେଶ୍ୟା ଯାହା ନିର୍ଦ୍ଦେଶ ଦେଉଥିଲା ରାଣୀ ତାହା ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ। ବୈଶ୍ୟାଟି ମଧ୍ୟ ପ୍ରଚୁର ଧନ ରାଣୀଙ୍କଠାରୁ ଆଦାୟ କରୁଥିଲା। ଅନ୍ୟପକ୍ଷରେ ରାଣୀ ଅଶ୍ୱପାଳକୁ ଯେତିକି ଆଦର କରୁଥିଲେ ସେ ରାଣୀଙ୍କ ପ୍ରତି ସେତିକି କୃତ୍ରିମ ଅନୁରକ୍ତି ପ୍ରକାଶ କରୁଥିଲା। କିନ୍ତୁ ଅଶ୍ୱପାଳର ହାର୍ଦ୍ଦିକ ପ୍ରେମ ଥିଲା ବେଶ୍ୟା ସହିତ। ତେଣୁ ରାଣୀ ଅଶ୍ୱପାଳକୁ ଯେଉଁ ଧନରତ୍ନ ଦାନ ଦେଉଥିଲେ, ସେ ତାକୁ ନେଇ ସେହି ବେଶ୍ୟାକୁ ଦେଇ ଆସୁଥିଲା। ସେଥିପାଇଁ ବେଶ୍ୟାଟି ଅଶ୍ୱପାଳକୁ ଆଦର ସତ୍କାର କରୁଥିଲା। କିନ୍ତୁ ବେଶ୍ୟାଟି ଖୁବ୍ ବୁଦ୍ଧିମତୀ ଥିଲା। କୃତ୍ରିମ ଆଦର ପ୍ରଦର୍ଶନ ଦ୍ୱାରା ଅଶ୍ୱପାଳକୁ ସନ୍ତୁଷ୍ଟ କରୁଥିଲେ ମଧ୍ୟ ତାକୁ ହୃଦୟ ଦେଇ ବେଶ୍ୟା ଭଲପାଇ ନ ଥିଲା। ରାଜା ଥିଲେ ଧର୍ମାତ୍ମା, ଏକପତ୍ନୀବ୍ରତଧାରୀ ସଦାଚାରୀ। ତଥାପି ବେଶ୍ୟା ହୃଦୟର ସହିତ ରାଜାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲା। ପ୍ରତିଦିନ ରାଜାଙ୍କ ଦରବାରକୁ ଯାଇ ନିଜର ନୃତ୍ୟକଳା ଦ୍ୱାରା ସେ ରାଜାଙ୍କୁ ସନ୍ତୁଷ୍ଟ କରୁଥିଲା। ରାଜାଙ୍କ ମନରେ ରାଣୀଙ୍କର ମୋହିନୀ ମୂର୍ତ୍ତି ପ୍ରତିଷ୍ଠିତ ଥିବାରୁ ସେ ବେଶ୍ୟା ଆଡ଼କୁ ଆକୃଷ୍ଟ ହେଉ ନଥିଲେ। ବେଶ୍ୟା ଯେଉଁ ପୁରସ୍କାର ପାଏ ତାହା ଶ୍ରଦ୍ଧାର ସହିତ ଗ୍ରହଣ କରି ଚାଲିଯାଏ। ହେଲେ ସେ ରାଜାଙ୍କୁ ନିଜ ହୃଦୟରେ ଦେବତାଭାବେ ଆରାଧନା କରୁଥାଏ।

''ସେହି ସମୟରେ ଜଣେ ଦରିଦ୍ର ଲୋକ ଶିବଙ୍କୁ ଆରାଧନା ଦ୍ୱାରା ସନ୍ତୁଷ୍ଟ କରି ବରଟିଏ ଲାଭ କଲା। ଶିବ ପ୍ରସନ୍ନ ହୋଇ ସେହି ଦରିଦ୍ରକୁ ଫଳଟିଏ ଦେଇ କହିଲେ, 'ଯେ ଏ ଫଳକୁ ଖାଇବ ସେ ଅମର ହୋଇ ରହିବ।' ଦରିଦ୍ର ଲୋକଟି ଭାବିଲା, 'ଏ ଫଳଟି ଖାଇ ମୋର ଲାଭ କ'ଣ ହେବ? ମହାରାଜ ଭର୍ତ୍ତୃହରିଙ୍କ ରାଜତ୍ୱରେ ସମସ୍ତ ପ୍ରଜା ସୁଖରେ ଅଛନ୍ତି। କାଲି ତାଙ୍କ ସ୍ଥାନରେ କେହି ଜଣେ କ୍ରୂରକର୍ମା, ଅର୍ଥଲୋଭୀ, ଦୁରାଚାରୀ ଯଦି ରାଜା ହେବ ତେବେ ସମଗ୍ର ରାଷ୍ଟ୍ର ଦୁଃଖୀ ହେବ। ସେତେବେଳେ ଅମରତ୍ୱ ଲାଭ କରିଥିବା ହେତୁ ମୋର ଜୀବନ ଅତ୍ୟନ୍ତ ଦୁର୍ବିସହ ହୋଇ ଉଠିବ। ତେଣୁ ଏ ଫଳଟି ମହାରାଜା ଭର୍ତ୍ତୃହରିଙ୍କୁ ଦେବା ବାଞ୍ଛନୀୟ। ସେ ଅମର ହେଲେ ପ୍ରଜାବର୍ଗଙ୍କ ସହିତ ମୁଁ ବି ସୁଖୀ ହେବି।' ଏହା ବିଚାରି ଦରିଦ୍ର ଲୋକଟି ରାଜାଙ୍କୁ ଏକାନ୍ତରେ ସାକ୍ଷାତ କଲା। ଫଳଟିର ମାହାତ୍ମ୍ୟ ବର୍ଣ୍ଣନା କରି ରାଜାଙ୍କୁ ତାହା ସମର୍ପଣ କଲା। ରାଜା ଫଳଟି ପାଇ ଚିନ୍ତାକଲେ, 'ମୁଁ ଏ ଫଳଟି ଖାଇ ଅମର ହେବି, ଏବଂ ମୋ ଆଖି ଆଗରେ ମୋର ପ୍ରାଣପ୍ରିୟା ମୃତ୍ୟୁବରଣ କରିବ? ଏହାଫଳରେ ଅମରତା ମୋ ପାଇଁ ଅଭିଶାପ ହୋଇଯିବ। ମୁଁ ମୋର ପ୍ରିୟତମା ପତ୍ନୀ ବିନା କ୍ଷଣେ ମାତ୍ର ବଞ୍ଚି ରହିପାରିବି ନାହିଁ। ଯଦି ଏ ଫଳଟି ପତ୍ନୀକୁ ଦେବି ତେବେ ମୁଁ ବଞ୍ଚିଥିବାଯାଏ ତା'ର ବିୟୋଗ ଦୁଃଖ ବିଷୟରେ ଚିନ୍ତା କରିବାକୁ ପଡ଼ିବ ନାହିଁ। ଏହା ଭାବି ରାଜା ରାଣୀଙ୍କୁ ସେ ଫଳଟି ଦାନକଲେ।'

''ରାଣୀ ଭାବିଲେ, ମୋହରି ଆଗରେ ମୋ ଉପପତି ଅଶ୍ୱପାଳ ଯଦି ମରିଯିବ ତେବେ ଏ ରାଜକୀୟ ସୁଖ ସମ୍ପଦ ବ୍ୟର୍ଥ ହୋଇଯିବ। ମୁଁ ଅମର ହୋଇ କରିବି କ'ଣ? ଯଦି ମୋ ଉପପତି ଅମର ହୋଇପାରିବ ତେବେ ସାରାଜୀବନ ସେ ମୋ ସାଙ୍ଗରେ ରହିପାରିବ, ଏବଂ ମୋର ଆଉ କୌଣସି ବିଷୟରେ ଚିନ୍ତା ଜାଗ୍ରତ ହେବନାହିଁ।' ଏହା ସିଦ୍ଧାନ୍ତ କରି

ରାଣୀ ଫଳଟି ନେଇ ଅଶ୍ୱପାଳକୁ ଦେଇଦେଲେ। ଅଶ୍ୱପାଳ ବେଶ୍ୟାପ୍ରତି ଅତ୍ୟନ୍ତ ଆସକ୍ତ ଥିଲା। ସେ ଫଳଟି ନେଇ ବେଶ୍ୟାକୁ ଦେଲା। ବେଶ୍ୟା ଭାବିଲା, ଆଜି ରାଜା ଭର୍ତ୍ତୃହରି ଥିବାରୁ ମୋତେ ପର୍ଯ୍ୟାପ୍ତ ଧନ ମିଳୁଛି। କାଲି କେହି ଜଣେ ଦୁଷ୍ଟ ବ୍ୟକ୍ତି ଯଦି ରାଜା ହେବ ତେବେ ସେ ମୋତେ ଏ ରାଜ୍ୟରୁ ବାହାର କରିଦେଇପାରେ। 'ଯଦି ଧର୍ମାତ୍ମା ଭର୍ତ୍ତୃହରି ଅମର ହୋଇ ରହିବେ ତେବେ ରାଜ୍ୟର ସମସ୍ତ ପ୍ରଜା ସୁଖରେ ରହିବେ।' ଏହା ଭାବି ସେ ରାଜସଭାକୁ ପ୍ରତିଦିନ ପରି ନାଚିବାକୁ ଗଲା। ଶେଷରେ ସେ ରାଜାଙ୍କୁ ଫଳଟି ଉପହାର ଦେଇ ଫେରି ଆସୁଥିଲା। ରାଜା ହଠାତ୍ ଫଳଟିକୁ ଦେଖି ଚମକି ପଡ଼ିଲେ। ସେ ଭାବିଲେ, 'ଏ ଅମୂଲ୍ୟ ଅମର ଫଳଟି ମୁଁ ତ ରାଣୀଙ୍କୁ ଦେଇଥିଲି। ଏହା ବେଶ୍ୟା ପାଖକୁ ଗଲା କିପରି ?' ଏହି କଥା ଚିନ୍ତା କରି ରାଜା ଫେରିଯାଉଥିବା ବେଶ୍ୟାକୁ ଡାକି ଏକାନ୍ତ ସ୍ଥାନକୁ ନେଇଗଲେ। ରାଜା ବେଶ୍ୟାକୁ ପଚାରିଲେ, 'ତୁ ଏ ଫଳଟି କେଉଁଠୁ ପାଇଲୁ ?' 'ପ୍ରଭୋ ! ଜଣେ ମୁନି ଏ ଫଳଟି ମୋତେ ଦେଇଛନ୍ତି।' ରାଜା କ୍ରୋଧପ୍ରକାଶ କରି ପଚାରିଲେ, 'ତୁ ମିଛ କହିଲେ ମୁଁ ସଙ୍ଗେ ସଙ୍ଗେ ତୋ ଛାଲ ଉତାରି ଦେବି। ସତ କଥା କ'ଣ, ନିର୍ଭୟରେ କହ।'

''ରାଜାଙ୍କ କୋପମୂର୍ତ୍ତି ଦେଖି ବେଶ୍ୟା ଡରିଗଲା। ସେ ହାତଯୋଡ଼ି କହିଲା, 'ପ୍ରଭୋ ! ଆପଣ ମୋର ଜୀବନ ରଖନ୍ତୁ ବା ନ ରଖନ୍ତୁ, ସତ କହୁଛି, ମୋତେ ଏ ଫଳଟି ଆପଣଙ୍କ ଅଶ୍ୱପାଳ ଦେଇଛି।' ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ, 'ତୁ ରାଜବେଶ୍ୟା ହୋଇ ସାଧାରଣ ଅଶ୍ୱପାଳ ସହିତ କାହିଁକି ସମ୍ପର୍କ ରଖିଛୁ ?' ବେଶ୍ୟା ବିନୀତ ଭାବେ କହିଲା, 'ମୁଁ ତ ବେଶ୍ୟା। ଆପଣ ମୋତେ ବହୁ ଧନ ଦାନ କରୁଛନ୍ତି। ମୋର କୌଣସି ଅଭାବ ନାହିଁ। ତଥାପି ଧନତୃଷ୍ଣା ମୋର ଶାନ୍ତ ହେଉନାହିଁ। ଯେତେ ଲାଭ ହେଉଛି ତତୋଧିକ ଲୋଭ ବଢୁଛି। ଧନଲୋଭରେ ମୁଁ ତା'ସହିତ ସମ୍ପର୍କ ରଖିଛି। ଆପଣଙ୍କ ଗୁଣାବଳୀକୁ ମୁଁ ହୃଦୟର ସହିତ ଅତୀବ ଆଦର କରେ। ସେହି ଶ୍ରଦ୍ଧା ହେତୁ ଏହ ଅମର ଫଳଟି ଆପଣଙ୍କ ଚରଣ କମଳ ତଳେ ଭେଟି ଦେଇଥିଲି। ଆପଣ ଅମର ହୁଅନ୍ତୁ ଏବଂ ସର୍ବଦା ସମସ୍ତଙ୍କର ମଙ୍ଗଳ କରନ୍ତୁ, ଏହା ହିଁ ମୋର କାମନା।'

'ରାଜା ପଚାରିଲେ 'ଅଶ୍ୱପାଳ ଏ ଫଳଟି କେଉଁଠୁ ପାଇଲା ?' ବେଶ୍ୟାଟି ଉତ୍ତର ଦେଇ ନ ପାରିବାରୁ ରାଜା ଅଶ୍ୱପାଳକୁ ଡକାଇ ସେହି ଫଳଟି ବିଷୟରେ ପ୍ରଶ୍ନକଲେ। ଅଶ୍ୱପାଳ ଫଳଟି ଦେଖି ଭୟରେ ଥରି ଥରି କହିଲା, 'ପ୍ରଭୋ ! ମୁଁ କିଛି ଜାଣେନାହିଁ।' ରାଜା ବୁଝାଇ କହିଲେ, 'ଦେଖ ! ତୁମେ ସତ କହିଲେ ହିଁ ଛାଡ଼ ପାଇବ। ନୋହିଲେ ତୁମରି ଶସ୍ତ୍ରରେ ତୁମକୁ ଟିକି ଟିକି କରି କାଟି ଦିଆଯିବ। ତୁମେ ଏ ଫଳଟି ବେଶ୍ୟାକୁ ଦେଇ ନଥିଲ ? ସତ କୁହ।' ଅଶ୍ୱପାଳ କହିଲା, 'ହଁ ପ୍ରଭୋ !' ରାଜା ପଚାରିଲେ, 'ତୁମେ ଏ ଫଳଟି କେଉଁଠୁ ପାଇଲ ?' ଅଶ୍ୱପାଳ ଉତ୍ତର ଦେଲା, 'ପ୍ରଭୋ ! ଏ ଫଳଟି ମୋତେ ରାଣୀଙ୍କଠାରୁ ମିଳିଥିଲା।' ରାଜା ପଚାରିଲେ, 'ରାଣୀ କାହିଁକି ଏହା ତୁମକୁ ଦେଇଥିଲେ ?' ଅଶ୍ୱପାଳ କହିଲା, 'ପ୍ରଭୋ ! ରାଣୀଙ୍କ ସହିତ ମୋର ଅବୈଧ ସମ୍ପର୍କ ରହିଛି।'

ରାଜାଙ୍କ ମୁଣ୍ଡରେ ସୁମେରୁ ପର୍ବତ ଅଜାଡ଼ି ପଡ଼ିଲା ଭଳି ଲାଗିଲା। ରାଜା ସ୍ତମ୍ଭୀଭୂତ ହୋଇଗଲେ। ଯେ ସମଗ୍ର ଦେଶର ସମ୍ରାଟଙ୍କ ଅର୍ଦ୍ଧାଙ୍ଗିନୀ, ଯାହାକୁ ମୁଁ ଦେବୀରୂପେ ପୂଜା କରୁଥିଲି, ପ୍ରାଣଠାରୁ ବଳି ଆଦର କରୁଥିଲି, ଯାହାର ଚିନ୍ତାରେ ଅହୋରାତ୍ର ମୋର ହୃଦୟ

ପୂର୍ଣ୍ଣ ରହୁଥିଲା, ସେ ମୋତେ ପ୍ରେମ ନ କରି ଏକ ନଗଣ୍ୟ ଅଶ୍ୱପାଳ ପ୍ରତି ଆସକ୍ତ ରହିଛି। ପୁଣି ଏ ମୂର୍ଖ ଅଶ୍ୱପାଳକୁ ମଧ ଦେଖନ୍ତୁ, ଦେଶର ସାମ୍ରାଜ୍ଞୀ ତାକୁ ପ୍ରାଣ ଦେଇ ଭଲ ପାଉଥିଲେ ମଧ ସେ ରାଣୀଙ୍କୁ ଛାଡ଼ି ଏକ ବେଶ୍ୟାକୁ ପ୍ରେମ କରୁଛି। ହାୟ, କାମର ଏ କି ବୀଭତ୍ସ ଲୀଳା ? ମୋ ଭଳି ଧାର୍ମିକ, ଗୁଣୀ, ପ୍ରଭାବଶାଳୀ, ଧନୀ ସମ୍ରାଟକୁ ଛାଡ଼ି, ମୋର ରାଣୀ ଅଶ୍ୱପାଳଠାରେ ଆସକ୍ତ, ଧିକ୍ ସେ ରାଣୀକୁ। ସେ ଅଶ୍ୱାପଳକୁ ମଧ ଧିକ୍, ରାଜକୁଳୋତ୍ପନ୍ନା ରାଜରାଣୀଙ୍କ ସହିତ ସମ୍ପର୍କ ରଖି ମଧ କାମ ବାସନା ପରିତୃପ୍ତି ନିମିତ୍ତ ସେ ପଣ୍ୟ ସ୍ତ୍ରୀ ବେଶ୍ୟାର ଆଶ୍ରୟ ନେଇଛି। କାମଦେବଙ୍କୁ ଧିକ୍, ଯେ ସ୍ତ୍ରୀ-ପୁରୁଷଙ୍କର ମନକୁ ଏପରି ବିଚଳିତ କରୁଛି। ପରିଶେଷରେ ମୋତେ ମଧ ଧିକ୍, କାରଣ, ହାଡ଼ ଚମଦ୍ୱାରା ନିର୍ମିତ, ମଳମୂତ୍ରାଦି ଆବର୍ଜନା ପରିପୂର୍ଣ୍ଣ ଏହି ସ୍ତ୍ରୀ ପ୍ରତି କାମପ୍ରବଣ ହୋଇ ନିଜର କର୍ତ୍ତବ୍ୟାକର୍ତ୍ତବ୍ୟ ଭୁଲି, ଅତ୍ୟଧିକ ଆସକ୍ତ ହୋଇଛି। ଏହି ଘଟଣାରୁ ରାଜା ଭର୍ତ୍ତୃହରିଙ୍କ ମନରେ ବିଶେଷ ବୈରାଗ୍ୟ ଜାତ ହେଲା। ସେ ସର୍ବସ୍ୱ ତ୍ୟାଗ କରି ସାଧୁ ହୋଇ ଯାଇଥିଲେ।

**''ଏହି ଉଦାହରଣରୁ ଶିଖିବା କଥା ହେଉଛି, ଯାହାକୁ ଆମେ ପ୍ରାଣଦେଇ ଭଲ ପାଉ ଓ ନିଜର ଅତ୍ୟନ୍ତ ପ୍ରିୟ ବୋଲି ଭାବୁ ସେ ଆମର ବିରୁଦ୍ଧାଚରଣ କରିଥାଏ। ଯେଉଁଠାରୁ ଆମେ ବିପୁଳ ଧନର ଆଶା କରୁଛୁ, ସେଠାରେ ହୁଏତ କିଛି ବି ନ ମିଳିବାର ସମ୍ଭାବନା ରହିଛି। ଏଭଳି ଘଟଣା ଘଟିଲେ ଆମର ବୈରାଗ୍ୟ ଜାତ ହୁଏ, ଏବଂ ସଂସାରର ଅସାରତା ଅନୁଭୂତ ହୁଏ। ଏହାକୁ ଦୁର୍ଭାଗ୍ୟ ବୋଲି ନ ଭାବି ଭଗବାନଙ୍କ ଅସୀମ କରୁଣାର ସଙ୍କେତ ବୋଲି ବୁଝିବା ଉଚିତ୍।''**

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ! ବେଶ୍ୟାଠାରୁ ଅବଧୂତ ଯେଉଁ ଶିକ୍ଷାଲାଭ କରିଥିଲେ ତାହା କହୁଛି ଶୁଣ। ରାଜା ଯଦୁଙ୍କୁ ବୁଝାଇବାକୁ ଯାଇ ଅବଧୂତ କହିଲେ, ''ରାଜନ୍! ବେଶ୍ୟାକୁ ଗୁରୁଭାବେ ଗ୍ରହଣ କରିବାର ଏକ ବିରାଟ ଇତିହାସ ଅଛି। ମହାରାଜ ବିଦେହଙ୍କ ବଂଶରେ ଯେତେ ରାଜା ରାଜତ୍ୱ କରିଥିଲେ ସମସ୍ତେ ଥିଲେ ପରମଜ୍ଞାନୀ ଓ ଧାର୍ମିକ। ତାଙ୍କ ରାଜଧାନୀ ମିଥିଳାରେ ସର୍ବଦା ବ୍ରହ୍ମଜ୍ଞାନୀ ଋଷିଗଣ ସମବେତ ହେଉଥିଲେ। ମୁଁ ବୁଲି ବୁଲି ଦିନେ ସେଠାରେ ଯାଇ ପହଞ୍ଚିଲି। ବିଦେହ ମହାରାଜ ମୋତେ ଖୁବ୍ ଆଦର ସତ୍କାର କଲେ। ସେହି ନଗରୀରେ ପିଙ୍ଗଳା ନାମରେ ବେଶ୍ୟାଟିଏ ରହୁଥାଏ। ସାରା ରାଜଧାନୀରେ ସେ ହିଁ ଏକମାତ୍ର ବେଶ୍ୟା। ମହାରାଜ ବିଦେହ ନୃତ୍ୟପ୍ରିୟ ନ ଥିଲେ। ସେଥିପାଇଁ ପିଙ୍ଗଳା କେବେହେଲେ ରାଜଭବନକୁ ଆସୁ ନ ଥିଲା। ସେ ତା'ର ବେଶ୍ୟାବୃତ୍ତି ଦ୍ୱାରା ହିଁ ନିଜର ଜୀବିକା ଚଳାଉଥିଲା। ମୁଁ ଯେତେବେଳେ ଦେଖିଲି ସେତେବେଳେ ସେ ସଜବାଜ ହୋଇ ଛାତ ଉପରେ ବସିଥିଲା। ଯଦି କେହି ଧନୀ କାମୁକ ଯୁବକ ତା' ଆଡ଼କୁ ଚାହୁଁଥିଲା, ତାକୁ ଦେଖିବା ମାତ୍ରେ ମୁହଁରେ ତା'ର ଆନନ୍ଦର ଢେଉ ଖେଳିଯାଉଥିଲା। ପିଙ୍ଗଳା ଶୀଘ୍ର ଉଠି ଯାଇ ସେ ଆଗନ୍ତୁକ ଅତିଥିକୁ ସ୍ୱାଗତ କରୁଥିଲା। କେବେ କେବେ ସେ ଚିନ୍ତିତ ଥିବାର ମଧ ମୁଁ ଦେଖିଛି।

''ଦିନେ ଦେଖିଲି, ପିଙ୍ଗଳା ଅତି ଉତ୍ସୁକଭାବେ ଏପାଖ ସେପାଖ ହେଉଛି। ମୁଁ ବୁଝିଗଲି ଯେ, ଗତକାଲି କେହି ହୁଏତ ଯଥେଷ୍ଟ ଧନ ଦେଇ ଆଜି ଆସିବ ବୋଲି ପ୍ରତିଶ୍ରୁତି ଦେଇଯାଇଛି। ସେଥିପାଇଁ ସେ ତାହାରି ଅପେକ୍ଷାରେ ବ୍ୟସ୍ତ ହୋଇ ବାଟକୁ ଚାହିଁ ବସିଛି। ରାତି ହୋଇଯାଇଥିଲା। ମେଘମେଦୁର ଆକାଶରୁ ବିନ୍ଦୁ ବିନ୍ଦୁ ହୋଇ ଜଳ ପଡୁଥିଲା। ମୁଁ ଦିଗମ୍ବର ଭାବେ ଥାଏ। ମୁଁ ଭାବିଲି, 'ହେଉ, ଏହାଠାରୁ ମଧ୍ୟ କିଛି ଶିକ୍ଷା ଗ୍ରହଣ କରାଯାଇପାରେ।' ଏହାଭାବି,

ତା'ର ଘର ଆଗରେ ବନ୍ଦଥିବା ଏକ ଦୋକାନର ବାରଣ୍ଡାରେ ଯାଇ ଶୋଇରହିଲି ; ଆଉ ଗଭୀରଭାବେ ସେହି ବେଶ୍ୟାର ହାବଭାବକୁ ଖୁବ୍ ମନଯୋଗ ସହକାରେ ଅଧ୍ୟୟନ କରିବାକୁ ଲାଗିଲି।

"ମୁଁ ଦେଖିଲି, ସେହି ବେଶ୍ୟାଟି ଖୁବ୍ ସୁନ୍ଦରଭାବେ ସଜବାଜ ହେଉଥାଏ। କୃତ୍ରିମ ସୌନ୍ଦର୍ଯ୍ୟ ସମ୍ପାଦନ ନିମିତ୍ତ ସେ ସମସ୍ତ ଚେଷ୍ଟା କରିଥାଏ। ତା' ଦେହରେ ବୋଳା ଯାଇଥିବା ଅତରର ଗନ୍ଧ ଖୁବ୍ ଦୂରକୁ ଭାସି ଆସୁଥାଏ। ସଦ୍ୟ ପୁଷ୍ପମାଳା, ମୂଲ୍ୟବାନ୍ ଅଳଙ୍କାର ଓ ବସ୍ତ୍ରଦ୍ୱାରା ସେ ସୁସଜ୍ଜିତ ହୋଇଥାଏ, ସେ ଗୃହଦ୍ୱାରରେ ଠିଆ ହୋଇ ସ୍ୱଚ୍ଛବସ୍ତ୍ର ପରିହିତ କୌଣସି ପୁରୁଷ ସେଇବାଟେ ଯିବାବେଳେ, ତାକୁ ଧ୍ୟାନପୂର୍ବକ ଦେଖେ। କିନ୍ତୁ ପଥଚାରୀ ତା ଆଡ଼କୁ ନ ଚାହିଁ ଆଗକୁ ଚାଲିଗଲେ ସେ ନିରାଶ ହୋଇ ପୁଣି ଅନ୍ୟ ଆଗନ୍ତୁକକୁ ଅପେକ୍ଷା କରେ। ପୁଣି କେହି ଜଣେ ଆସିଗଲେ ସେ ଭାବେ, 'ଅବଶ୍ୟ ଏ ବାବୁ ବହୁତ ଧନ ଦେଇ ମୋତେ ଉପଭୋଗ କରିବାକୁ ଆସୁଛନ୍ତି।' କିନ୍ତୁ ସେ ଯେତେବେଳେ ଦୂରେଇଯାଏ, ପିଙ୍ଗଳା ଅନ୍ୟ ନାଗରିକ ଆଶାରେ ଆଶାୟୀ ହୋଇଉଠେ। ବହୁ ସମୟ ଧରି ଚାହିଁ ଚାହିଁ ଆଖି ତା'ର କ୍ଳାନ୍ତ। ଠିଆ ହୋଇ ସେ କ୍ଳାନ୍ତିରେ ବସିପଡ଼େ। ମନ ମାନେନି, ପୁଣି ଉଠି ଠିଆହୁଏ। କେତେବେଳେ ଘର ଭିତରେ ପଡ଼ିଥିବା ପଲଙ୍କ ଉପରେ ଗଡ଼ିଯାଏ। ସେଠାରେ ସେ ଚିନ୍ତିତ ରହେ। କାନ ତା'ର ଆଗନ୍ତୁକର ପାଦ ଶବ୍ଦକୁ ଲକ୍ଷ୍ୟ ରଖିଥାଏ। ପୁଣି ଉଠିପଡ଼ି ଦୁଆର ପାଖକୁ ଯାଏ ଏବଂ ଫେରିଆସି ପଲଙ୍କରେ ପଡ଼ିଯାଏ।

ରାତି ଧୀରେ ଧୀରେ ଗଭୀରତର ହେଲା। ଲୋକଙ୍କ ଯିବା ଆସିବା ମଧ୍ୟ କମିଗଲା। ସେଦିନ ସେ ବହୁଧନ ଆଶା କରିଥିଲା। ତା'ର ଆଶା ନିରାଶାରେ ପରିଣତ ହେଲା। ତା' ମୁହଁ ହଳଦିଆ ପଡ଼ିଗଲା, ଓଠ ଶୁଖିଗଲା, ଆଖିରେ ନିରାଶା ଛାଇଗଲା, ହାତ ପାଦ ଶିଥିଳ ହୋଇ ପଡ଼ିଲା। ଚିତ୍ତ ତା'ର ଅତ୍ୟନ୍ତ ବ୍ୟାକୁଳ ହେଉଥିଲା। ଭଗବାନ୍‌ଙ୍କର ତା' ଉପରେ ଦୟା ହେଲା। ପିଙ୍ଗଳାର ଉତ୍ସୁକତା ପୂର୍ଣ୍ଣ ଚିନ୍ତା ହିଁ ତା'ର କଲ୍ୟାଣର କାରଣ ହେଲା।ଏହି ଘଟଣାରେ ପିଙ୍ଗଳାର ବୈରାଗ୍ୟ ଜାତ ହେଲା। ସେହିଦିନଠାରୁ ସେ ଭଗବଦ୍‌ଗୁଣ କୀର୍ତ୍ତନ, ଭଜନ ଓ ପୂଜନରେ ମନୋନିବେଶ କଲା।"

ରାଜା ପଚାରିଲେ, "ବ୍ରହ୍ମନ୍! ବୈରାଗ୍ୟ ଜାତ ହେଲାପରେ କ'ଣ ହୁଏ ?" ଅବଧୂତ ମୁନି ଉତ୍ତର ଦେଲେ, **"ଆଶା ଏକ ବନ୍ଧନ। ମାନବ ଆଶା ବନ୍ଧନରେ ବାନ୍ଧିହୋଇଯାଏ। ସଂସାରରେ ଆଶା ବୋଲି କିଛି ନ ଥିଲେ ସମସ୍ତେ ମୁକ୍ତ ହୋଇଥାନ୍ତେ। ଆଶାରୂପ ପାଶକୁ କେବଳ ବୈରାଗ୍ୟ ରୂପକ ଅସ୍ତ୍ରଦ୍ୱାରା ଛେଦନ କରାଯାଇପାରେ।** ଯାହାର କେବେହେଲେ ବିଷୟ ପ୍ରତି ବୈରାଗ୍ୟ ଜାତ ହୁଏ ନାହିଁ ; ପାନ, ଭୋଜନ, ଶୟନ, ସନ୍ତାନୋତ୍ପାଦନାଦି ସୁଖକର ବୋଧହୁଏ ; ଏବଂ କାମଜନିତ ସୁଖକୁ ହିଁ ଶ୍ରେଷ୍ଠ ସୁଖ ବୋଲି ବୁଝେ ସେହିପରି ଦେହବନ୍ଧନକୁ କେବେହେଲେ ଛାଡ଼ିପାରେ ନାହିଁ। ସେହି ବେଶ୍ୟାର ସମସ୍ତ ଆଶା ଯେତେବେଳେ ଧୂଳିସାତ୍ ହୋଇଗଲା ସେତେବେଳେ ହିଁ ତା' ମନରେ ବୈରାଗ୍ୟ ଜାତ ହେଲା। ସେହି ବୈରାଗ୍ୟରେ ତନ୍ମୟ ହୋଇ ସେ ନାଚିଲା ଓ ଗାଇଲା। ମୁଁ ତା'ର ଭାବକୁ ଲକ୍ଷ୍ୟକରି ଜାଣିପାରିଲି ଯେ ତା'ର ବୈରାଗ୍ୟ ଜାତ ହୋଇଛି। ମୁଁ ସେଇଠି ବସି ବସି ଏସବୁ ଦୃଶ୍ୟ ଦେଖୁଥାଏ। ସେ କିନ୍ତୁ ମୋ ଆଡ଼କୁ ଆଦୌ ଚାହୁଁ ନ ଥିଲା। ହୁଏତ ସେ ଭାବୁଥିଲା,

ଏ ଲଙ୍ଗଳା ସାଧୁଟା ମୋର କି ଉପକାର କରିବ। ତା'ର ବୈରାଗ୍ୟ ଉଦୟ ହେବାପରେ ମୁଁ ତା' ଘରକୁ ଗଲି, ଏବଂ ତା' ସହିତ ଅନେକ ପ୍ରକାର ଆଳାପ ଆଲୋଚନା କଲି।

''ନିଜେ ନିଜେ ମୁଁ ସେଠାକୁ ଯାଇ ତାକୁ କହିଲି, 'ସୁନ୍ଦରୀ ଶିରୋମଣି! ନାରାୟଣ, ନାରାୟଣ, କୁହ। ତୁମେ ଏତେ ପ୍ରସନ୍ନ କିପରି ହେଲ? ମୁଁ ବହୁସମୟ ଧରି ତୁମକୁ ହିଁ ଲକ୍ଷ୍ୟ କରୁଛି। ଅଳ୍ପକାଳ ପୂର୍ବରୁ ତୁମେ ଖୁବ୍ ଚିନ୍ତିତ ଥିଲ, କିନ୍ତୁ ଏବେ ଗୁପ୍ତଧନ ପାଇଥିବା ଲୋକ ପରି ଏତେ ଆନନ୍ଦିତ ହେଲା କିପରି? ମୋତେ ତୁମ ଆନନ୍ଦର କାରଣ ବୁଝାଇଦିଅ।' ମୋ କଥା ଶୁଣି ଭକ୍ତି ସହକାରେ ସେ ମୋର ଚରଣତଳେ ପ୍ରଣାମ କଲା। ତା'ପରେ କହିଲା, 'ବ୍ରହ୍ମନ୍! ମୁଁ ମଧ ଆପଣଙ୍କୁ ବହୁ ସମୟ ହେଲା ଦେଖୁଛି। କିନ୍ତୁ ଆପଣଙ୍କଠାରେ ମୋର କୌଣସି ଆଗ୍ରହ ନ ଥିଲା। ଆପଣ କରୁଣାପରାୟଣ, ଆପଣଙ୍କ କୃପାପୂର୍ଣ୍ଣ ଦୃଷ୍ଟି ଫଳରେ ମୁଁ ବୈରାଗ୍ୟ ରୂପକ ଗୁପ୍ତଧନ ଲାଭ କଲି। ମୁଁ ଯେଉଁଧନ ପାଇଛି, ତା' ଆଗରେ ଏ ପାର୍ଥିବ ସଂସାରର ସମସ୍ତ ସମ୍ପତ୍ତି ଅତି ହେୟ ଓ ତୁଚ୍ଛାତିତୁଚ୍ଛ। ହାୟ! ପ୍ରଭୋ! ମୁଁ ସାରାଜୀବନ କାହିଁକି ଅଯଥା କାମନାରେ ବ୍ୟର୍ଥ କଲି? ଇନ୍ଦ୍ରିୟଜନିତ ମୋହରେ ମୋର ବିଚାର ବୁଦ୍ଧି ନଷ୍ଟ ଭ୍ରଷ୍ଟ ହୋଇଯାଇଥିଲା। ମୁଁ ଏହି ତୁଚ୍ଛ ଓ ଅସଦ୍‌ବୁଦ୍ଧିଶୀଳ ପ୍ରେମିକମାନଙ୍କର ସୁଖ କାମନା କରୁଥିଲି। ମୁଁ ଘରର କଳ୍ପବୃକ୍ଷକୁ ଛାଡ଼ି କଲରାରେ ସୁଖକାମନା କରିଆସିଛି।' ମୁଁ କହିଲି, 'ମାନବର ଯେବେ ଖୁବ୍ ବଡ଼ ବଡ଼ ଧରଣର ଲାଭ ହେବାର ସମ୍ଭାବନା ଥାଏ ସେତେବେଳେ ଛୋଟ ଛୋଟ ଲାଭକୁ ପରିତ୍ୟାଗ କରିଥାଏ। ତୁମକୁ ଯଦି କେହି ଧନୀଲୋକ ନିଜର କରି ନେଇଥାନ୍ତା, ତେବେ ତୁମେ ବେଶ୍ୟାବୃତ୍ତି ମଧ ଛାଡ଼ି ଦେଇଥା'ନ୍ତ। ତୁମକୁ ସେପରି କେହି ବଡ଼ ସଜ୍ଜନ ମିଳିଛନ୍ତି କି?'

ପିଙ୍ଗଳାବେଶ୍ୟା କହିଲା, ''ବ୍ରହ୍ମନ୍! ବାହାରେ ହେଉ ବା ଦୂରରେ ହେଉ ଅଥବା ମୋ'ଠାରୁ ପୃଥକ୍ ହେଉ, ଯଦି କେହି ମିଳିଥାନ୍ତା, ତେବେ କହିଥାନ୍ତି ଯେ ମୋତେ ମିଳିଲା। ଜୀବଜଗତର ପରମ ପ୍ରେମାସ୍ପଦ, ସର୍ବଶ୍ରେଷ୍ଠ ପୁରୁଷ, ଧନିକଶ୍ରେଷ୍ଠ ଓ ସର୍ବାଧିକ ରତିସୁଖ ଦାୟକ ପ୍ରିୟତମ ମୋହରି ହୃଦୟରେ ହିଁ ବାସ କରିଛନ୍ତି। ତାଙ୍କୁ ମୁଁ ପାଇନାହିଁ, କିନ୍ତୁ ଚିହ୍ନିପାରିଛି। ଏହି ଚରମ ନିରାଶା ମଧରେ ସେ ମୋର ଦୃଷ୍ଟିଗୋଚର ହୋଇଛନ୍ତି। ମୋର ଅନ୍ତରର ସାକ୍ଷୀଭୂତ ଶ୍ରେଷ୍ଠତମ ପରମେଶ୍ୱରଙ୍କୁ ଭୁଲି ମୁଁ ମୋ କାମନାର ପରିତୃପ୍ତି ପାଇଁ ଆଉ କେବେହେଲେ ଦୁଃଖ, ରାଗ, ଭୟ, ଶୋକ, ମୋହାଦିଦାୟକ କାମୁକ ପୁରୁଷମାନଙ୍କ ଜାଲରେ ପଡ଼ିବି ନାହିଁ। ଏବେ ଧନ ବା ରତି ସୁଖ ପାଇଁ ମୁଁ ତାଙ୍କୁ ଡାକିବି ନାହିଁ। ମୋର ଅଜ୍ଞାନ ଦୂର ହୋଇଛି। ହାୟ! ମୋ ଜୀବନରେ କେତେ ପାପ କରିଛି ଏବଂ ବୁଦ୍ଧି ବିବେକଭ୍ରଷ୍ଟା ହୋଇ ନିନ୍ଦିତ ଓ ଲୋକଗର୍ହିତ ଜୀବିକା ଗ୍ରହଣ କରିଛି। ଏହି ପେଟ ଚାଖଣ୍ଡକ ପୂରାଇବା ପାଇଁ ମୁଁ ବେଶ୍ୟାବୃତ୍ତିକୁ ସ୍ୱୀକାର କରିଛି। ସଂସାରରେ କେବେହେଲେ କାମନାବାସନାର ତୃପ୍ତି ଘଟେନାହିଁ। ପ୍ରଜ୍ୱଳିତ ଅଗ୍ନିରେ ଘୃତ ଢାଳିଲେ ଅଗ୍ନି ଯେପରି ଅଧିକ ବଢ଼ିଚାଲେ, ସଂଯମ ବିନା ମାନବର ପତନ ଅନିବାର୍ଯ୍ୟ। ମୁଁ ବିଷକୁ ଅମୃତ ଭାବି ପାନ କରିଛି। ଅଗ୍ନିକୁ ସୁଖସ୍ପର୍ଶ ମନେକରି ହୃଦୟରେ ଲଗାଇଛି, ଏବଂ ଏହି କାମୁକମାନଙ୍କ ସଂସର୍ଗ ଦ୍ୱାରା ଅନ୍ତରାତ୍ମାକୁ ସନ୍ତପ୍ତ କରିଛି। ଯେ କାମର ଅଧୀନ ସେ ମୋତେ ତୃପ୍ତି ଦେବ କିପରି? ଯେ ନିଜ କୃପଣ ସେ ମୋତେ କେତେ ଧନ ଦେଇପାରିବ? ଯେ ସ୍ୱୟଂ ଅଶାନ୍ତ ସେ ମୋତେ କେଉଁଠୁ ଶାନ୍ତି ଦେଇପାରିବ? ପ୍ରାରବ୍ଧଦ୍ୱାରା ମୁଁ ବଞ୍ଚିତା ହୋଇଛି। ସାମାନ୍ୟ ଧନ କାମନାରେ ମୁଁ ମୋର ଶରୀରକୁ ବିକି ଦେଇଥିଲି।

"ମୁଁ ହସି ହସି କହିଲି, 'ଦେବି! ତୁମେ ଯାହା କହୁଛ ସେ ସମସ୍ତ ସତ୍ୟ, 'କିନ୍ତୁ ତୁମେ ତୁମର ଜୀବିକା ଛାଡ଼ିଦେଲେ ବଞ୍ଚିବ କିପରି?' ପିଙ୍ଗଳା ହସି ହସି କହିଲା, 'ବ୍ରହ୍ମନ୍! ଆପଣ ସବୁକିଛି ଜାଣି ମଧ୍ୟ ମୋତେ ଏପରି ପ୍ରଶ୍ନ ପଚାରୁଛନ୍ତି କାହିଁକି? ମୁଁ ବୁଝୁଛି, ଆପଣ ମୋ ବୈରାଗ୍ୟର ପରୀକ୍ଷା ନେବାକୁ ଇଚ୍ଛା କରୁଛନ୍ତି। ଆପଣ ଭାବୁଥିବେ ମୋ'ର ଏହା କ୍ଷଣିକ ବୈରାଗ୍ୟ ଉଦୟ ହୋଇଛି। ଯେତେବେଳେ ବଞ୍ଚିବାର ପ୍ରଶ୍ନ ଉଠିବ ସେତେବେଳେ ଏ ବୈରାଗ୍ୟର ବନ୍ଧ ଭୁସୁଡ଼ି ପଡ଼ିବ। ପ୍ରଭୋ! ଆପଣଙ୍କର ଅନୁଗ୍ରହ ଥିଲେ ଏହି ପଥରୁ କେବେହେଁ ମୁଁ ବିଚ୍ୟୁତ ହେବିନାହିଁ। ଏବେ ମୋ ମନରେ ଶରୀରର ଚିନ୍ତା ନାହିଁ। ଶରୀର ପ୍ରାରବ୍ଧର ଅଧୀନ। ଏବେ ଏ ଶରୀର ନଷ୍ଟ ହୋଇଯାଉ। ମୁଁ ଏଇ ଶରୀରକୁ କାମୁକର କାମଶାନ୍ତି ପାଇଁ, ଧନ ଓ ରତିସୁଖ ନିମିତ୍ତ ଉତ୍ସର୍ଗ କରୁଥିଲି। ତାଙ୍କଠାରୁ ଧନ ଓ ରତି ସୁଖ ଆଶା କରୁଥିଲି। ବର୍ତ୍ତମାନ ସବୁଠାରୁ ଧନୀ, ଆତ୍ମପୁରୁଷ, ମୋ ହୃଦୟରେ ବସିଛନ୍ତି। ମୁଁ ସନ୍ତୋଷ ରୂପକ ଧନ ତାଙ୍କଠାରୁ ପାଇବି। ଯେ ସନ୍ତୋଷରୂପକ ଧନ ଲାଭ କରେ ତା'ର ଅନ୍ୟ କୌଣସି ଧନରେ ପ୍ରୟୋଜନ ନାହିଁ। ମୋର ପ୍ରଭୁ ହେଉଛନ୍ତି ସୁଖର ସାଗର ସ୍ୱରୂପ, ଯଥାର୍ଥ ସୁଖ ମୁଁ ତାଙ୍କରିଠାରୁ ଲାଭ କରିପାରିବି। ଶରୀର ହେଉଛି କାଠ, ବାଉଁଶ, ନଡ଼ାଛପର ଓ ମାଟିକାଦୁଅରେ ତିଆରି ଘର ସଦୃଶ। ଏହି ଶରୀରରେ କାଠ ବାଉଁଶ ଭଳି ହାଡ଼, ମାଟିର ଲେପ ସଦୃଶ ଚମ, ମାଟି କାଦୁଅ ଭଳି ମାଂସ, ମେଦ; ନଡ଼ା ଓ ଘାସ ପରି ରୋମ ଓ କେଶ ରହିଛି। ବର୍ଷାରେ ଏହି ଘର ଯେପରି ସହଜରେ ଭାଙ୍ଗିତୁଟି ଯାଏ ସେହିପରି ରୋଗବ୍ୟାଧି ଦ୍ୱାରା ଶରୀର ନଷ୍ଟ ହୋଇଯାଏ। ଘର ଯେପରି ସାମାନ୍ୟ ଅଯତ୍ନରେ ନାନପ୍ରକାର କୀଟପତଙ୍ଗ ଦ୍ୱାରା ପରିପୂର୍ଣ୍ଣ ହୋଇଯାଏ, ସେହିପରି ଏ ଶରୀର ମଧ୍ୟରେ ନାନାପ୍ରକାର ଜୀବାଣୁ ପୂରି ରହିଛନ୍ତି। ଘରକୁ ଚେଷ୍ଟାକଲେ ପରିଷ୍କାର କରାଯାଇପାରେ, କିନ୍ତୁ ଶରୀରକୁ ଯେତେ ଯତ୍ନ କଲେ ବି ମଳମୂତ୍ରାଦି ଆବର୍ଜନାରୁ ମୁକ୍ତ ରଖି ହେବନାହିଁ। ଶରୀରର ନବଦ୍ୱାରରୁ ଅହରହ ମଳଧାରା ପ୍ରବାହିତ ହେଉଥାଏ। ମୋର ଏହିଭଳି ଘୃଣ୍ୟ ଶରୀରକୁ ମୋ ବ୍ୟତୀତ କିଏ ଆଦର ଓ ଆଲିଙ୍ଗନ କରିବ? ଏହି ବିଦେହ ନଗରୀର ରାଜା କେତେ ଜ୍ଞାନୀ, ସାଧୁ, ମହାତ୍ମାଙ୍କ ଆଦର କରୁଛନ୍ତି। ଏହି ନଗରର ପିଲାଟିଏ ବି ଜାଣେ ଯେ **ଶରୀର ନଶ୍ୱର, ଆତ୍ମାର ପ୍ରେମ ଅବିନାଶୀ, ଦେହ କ୍ଷୁଦ୍ର ଓ ଆତ୍ମା ମହାନ୍। ଆତ୍ମା ସତ୍ୟ, ଚୈତନ୍ୟ ଓ ଆନନ୍ଦସ୍ୱରୂପ, ଆତ୍ମାର ପ୍ରେମ ଦ୍ୱାରା ହିଁ ଜଗତରେ ପ୍ରେମ ପ୍ରକାଶିତ ହୁଏ।** ଏହି ବିଦେହ ନଗରବାସୀ ସମସ୍ତେ, କେବଳ ମୋ ବ୍ୟତୀତ, ବିଷୟର ଅନିତ୍ୟତା ବିଷୟରେ ଅବିହିତ। ମୁଁ ହିଁ ଏକମାତ୍ର କୁଳଟା, ନିର୍ବୋଧା, ଦୁଷ୍ଟା ଓ ପଥଭ୍ରଷ୍ଟା। ସେହି ଅଜ, ଅଚ୍ୟୁତ, ଅଖିଳେଶ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କୁ ଛାଡ଼ି ମୁଁ ଅନ୍ୟଠାରେ ମୋର କାମନାକୁ ପୂର୍ଣ୍ଣ କରିବାରେ ଅଭିଳାଷ ପୋଷଣ କରିଆସିଛି।'

ମୁଁ ପଚାରିଲି, 'ତୁମେ ଏବେ କି ସିଦ୍ଧାନ୍ତ ନେଉଛ?' ପିଙ୍ଗଳା କହିଲା, 'ମହାରାଜ! ଆପଣଙ୍କ ଆଶୀର୍ବାଦ ମିଳିଲେ ମୁଁ ଏଇ ମୁହୂର୍ତ୍ତରୁ ଆଉ କେବେ କୌଣସି କାମୁକ ପୁରୁଷକୁ ସ୍ପର୍ଶ କରିବି ନାହିଁ। ଅର୍ଥ ପାଇଁ କାହାରିଠାରେ ଏ ଶରୀରକୁ ବିକ୍ରୀ କରିବି ନାହିଁ। ବର୍ତ୍ତମାନଠାରୁ ପ୍ରକୃତ ବନ୍ଧୁ, ସ୍ୱାମୀ, ସର୍ବସ୍ୱ, ସୁଖମୟ ସଚ୍ଚିଦାନନ୍ଦ ସର୍ବେଶ୍ୱରଙ୍କ ସେବାରେ ହିଁ ଅତ୍ମୋତ୍ସର୍ଗ କରୁଛି। ମୁଁ ତାଙ୍କରି ପାଦ ମଣ୍ଡାଳିବି। ହେ ବ୍ରହ୍ମନ୍! ଆପଣ ହିଁ କୁହନ୍ତୁ, ଏ କ୍ଷୁଦ୍ରାତିକ୍ଷୁଦ୍ର ମାନବ, ସର୍ବଶ୍ରେଷ୍ଠ ସମ୍ରାଟ୍, ଯୁବ ରତିପ୍ରିୟଙ୍କୁ କ'ଣ ଦେଇ ସନ୍ତୁଷ୍ଟ କରିପାରିବି? ସଂସାରବାଦୀଙ୍କ କଥା ଛାଡ଼ନ୍ତୁ, ଇନ୍ଦ୍ର ବରୁଣ, କୁବେର, ଯମ ଓ ଅନ୍ୟାନ୍ୟ ଲୋକପାଳ ପ୍ରଭୃତି କେହି ତାଙ୍କୁ

ସନ୍ତୁଷ୍ଟ କରିପାରି ନାହାନ୍ତି। ସେହି ରତିପ୍ରିୟ କ'ଣ ତାଙ୍କ ପତ୍ନୀମାନଙ୍କୁ ସୁଖୀ ରଖିଛନ୍ତି ନା ତାଙ୍କର ପତ୍ନୀମାନେ ପୂର୍ଣ୍ଣ ତୃପ୍ତିଲାଭ କରିଛନ୍ତି। ସଂସାରର ଭୋଗୀପୁରୁଷଙ୍କ କଥା ଛାଡ଼ନ୍ତୁ, ଦେବଗଣ ପତ୍ନୀମାନେ କ'ଣ ସନ୍ତୁଷ୍ଟ ହୋଇପାରିଛନ୍ତି। ସମସ୍ତେ ସନ୍ତୁଷ୍ଟ ହୋଇ ପାରୁଥିଲେ ଅନ୍ୟ ପୁରୁଷ ଇଚ୍ଛା କରନ୍ତେ କାହିଁକି? ବହୁ ଦେବତାଙ୍କ ପତ୍ନୀ ପତିଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ସୁଖ କାମନାରେ ଚନ୍ଦ୍ରଙ୍କ ପାଖକୁ ଚାଲି ଯାଇଛନ୍ତି। ଚନ୍ଦ୍ରଙ୍କୁ କ୍ଷୟରୋଗ ହେଉ ବୋଲି ଅଭିଶାପ ଦେଇଛନ୍ତି। ଏତେ ବଡ଼ ବଡ଼ ଲୋକପାଳ ଯେତେବେଳେ ନିଜ ନିଜ ପତ୍ନୀମାନଙ୍କୁ ସନ୍ତୋଷ ଦେବାରେ ସମର୍ଥ ହୋଇଛନ୍ତି, ସେତେବେଳେ ଏହି କାମୁକ ପୁରୁଷଗଣ ମୋତେ କିଭଳି ସୁଖୀ କରାଇପାରିବେ। କ୍ଷଣିକ ବିଷୟ ସୁଖର ତୃଷ୍ଣା ଅଧିକରୁ ଅଧିକ ବଢ଼ିଥାଏ।'

ଅବଧୂତ କହୁଚନ୍ତି, ପିଙ୍ଗଳାର ଆତ୍ମନିବେଦନ ଶୁଣି ମୁଁ କହିଲି, 'ଦେବି! ତୁମ କଥା ସତ୍ୟ। ତୁମର ନିଶ୍ଚୟ ଅନେକ ଚିନ୍ତା ଥିବ। ମୁଁ ବହୁସମୟ ଧରି ଦେଖୁଛି ଯେ, ତୁମେ ନିରାଶ ହୋଇ ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଛି। ତୁମର ମୁଖ ମ୍ଳାନ ହୋଇଆସୁଛି। ତୁମେ ବାରମ୍ବାର ଘରୁ ବାହାରକୁ ଏବଂ ବାହାରୁ ଘରଭିତରକୁ ଯିବା ଆସିବା କରିବାରେ ଲାଗିଛି।'

ପିଙ୍ଗଳା କହିଲା, 'ବ୍ରହ୍ମନ୍! ଠିକ୍ ତାହା ନୁହେଁ। ଏହି ଦୁଃଖକୁ ମୁଁ ପରମ ସୁଖର କାରଣ ରୂପେ ଗ୍ରହଣ କରିଛି। ଏହି ନିରାଶା ହିଁ ମୋତେ ପ୍ରକୃତ ଅଶାର ଆଲୋକ ଦେଖାଇଛି। ମୁଁ ଆଜି ନିରାଶ ହୋଇ ନଥିଲେ ସୁଖର ନିଦାନ ସ୍ୱରୂପ ବୈରାଗ୍ୟ ମୋର ଜାତ ହୋଇ ନଥାନ୍ତା। ଏଜନ୍ମ ତ ମୁଁ କେବଳ ପାପରେ ହିଁ କଟାଇଲି। ଯୁବକମାନଙ୍କୁ ତାଙ୍କ ପତ୍ନୀଙ୍କ ପ୍ରତି ବିମୁଖ କଲି। ହସି ହସି ଧନୀର ମନ ଅପହରଣ କଲି। ଶାନ୍ତ ଶିଷ୍ଟ ମଧୁପାୟୀକୁ ସୁରାପାୟୀ କଲି। ମିଥ୍ୟା ପ୍ରେମ ଦ୍ୱାରା ସରଳ ଯୁବକର ହୃଦୟକୁ ବାନ୍ଧି ପକାଇଲି। ତେଣୁ, ଏ ଜନ୍ମରେ ଯେ ମୁଁ କିଛି ସୁକୃତ କରିଛି, ତାହା ମୋର ସ୍ମରଣ ହେଉନାହିଁ। ସମ୍ଭବତଃ ପୂର୍ବଜନ୍ମର ସୁକୃତ ଫଳରୁ ଏ ଜନ୍ମରେ ଭଗବାନ୍ ବିଷ୍ଣୁ ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ସେହିକାରଣରୁ ମୋ ଭଳି ପତିତା ପକ୍ଷରେ ଏକାନ୍ତ ଅସମ୍ଭବ ଆନନ୍ଦପ୍ରଦ ବୈରାଗ୍ୟ ଜାତ ହୋଇଛି। ଯଦି କପାଳରେ ମୋର ଦୁର୍ଭାଗ୍ୟ ଲେଖା ଥାଆନ୍ତା ତେବେ କୌଣସି ଧନୀଲୋକ ଆସି ଲକ୍ଷେ ଦୁଇ ଲକ୍ଷଟଙ୍କା ଦେଇ ମୋତେ ବିଷୟ ଜଞ୍ଜାଳରେ ପକାଇଥାନ୍ତା। ମୁଁ ଏହି ଇନ୍ଦ୍ରିୟଲୋଲୁପ ନୀଚ କାମୁକମାନଙ୍କର ବାସନା ପୂର୍ଣ୍ଣ କରିବାରେ ହିଁ ମୋର କାଳ ବିତାଇ ଦେଉଥିଲି। ସେହି କାମୁକମାନେ ନ ଆସିବାରୁ ମୋତେ ବୈରାଗ୍ୟ ରୂପକ ଅମୂଲ୍ୟ ଧନ ପ୍ରାପ୍ତ ହେଲା। ଏହି ବୈରାଗ୍ୟର ମୂଳ କାରଣ ହେଉଛି ମୋର ନିରାଶା। **ଯାହାର ମନରେ ପ୍ରକୃତ ବୈରାଗ୍ୟ ଜାତ ହୁଏ ତାହାକୁ ସଂସାରର କୌଣସି ବନ୍ଧନରେ ବାନ୍ଧି ରଖା ଯାଇପାରିବ ନାହିଁ।** ବୈରାଗୀ ଘରଦ୍ୱାର, କୁଟୁମ୍ବ ପରିବାର, ଧନ ବୈଭବ, ସ୍ତ୍ରୀ ପିଲା ଓ ପଦପଦବୀ ତଥା ପ୍ରତିଷ୍ଠାକୁ ଗୋଇଠା ମାରି ଚାଲିଯାଏ। ଏହି ସଂସାରର ସମସ୍ତ ପ୍ରକାର ସ୍ନେହ ବନ୍ଧୁତାକୁ ତ୍ୟାଗ କରି ସେ ପ୍ରକୃତ ଶାନ୍ତି ଅର୍ଜନ କରିଥାଏ। ତେଣୁ, ମୋର ନିରାଶା ଜନ୍ମାଇ ଭଗବାନ୍ ମହତ୍ ଉପକାର କରିଛନ୍ତି। ମୁଁ ତାଙ୍କ କରୁଣାକୁ ଶିରୋଧାର୍ଯ୍ୟ କରି ବିଷୟଜନିତ ଦୁରାଶା ପୂର୍ବକ ଅଶରଣଶରଣ, ରମାରମଣ, ଶ୍ରୀଜଗଦୀଶ୍ୱରଙ୍କ ଶରଣାପନ୍ନ ହେଲି। ବର୍ତ୍ତମାନ ଆଉ ଏ ଶରୀରର ନିର୍ବାହ ବିଷୟରେ ମୋର ଆଦୌ ଚିନ୍ତା ନାହିଁ। ମୋର ଜୀବିକା କିପରି ଚଳିବ ତାହା ଭଗବାନ୍ ଜାଣନ୍ତି। କାମୁକ ପୁରୁଷର ରତିସୁଖ ସାଧନ ପାଇଁ ମୁଁ ଏ ଶରୀରର ଯତ୍ନ ନେଉଥିଲି। ଆଜି ଆଉ ତା'ର ଆବଶ୍ୟକ ନାହିଁ। ପ୍ରାରବ୍ଧ କର୍ମବଶତଃ ବର୍ତ୍ତମାନ ଯାହା ମିଳିବ ତାହାକୁ ଶ୍ରଦ୍ଧା ଓ ସନ୍ତୋଷର ସହିତ ଭୋଜନ କରି ମୋର ପ୍ରାଣନାଥ ପ୍ରଭୁଙ୍କ ସହିତ

ଆନନ୍ଦରେ ବିହାର କରିବି। ମୁଁ ତାଙ୍କୁ ଖୁଆଇବି, ତାଙ୍କରି ପ୍ରସାଦ ଖାଇବି ଓ ତାଙ୍କରି ଗୁଣ ଗାଇବି। ଆଉ ମୋର ଚିନ୍ତା କ'ଣ ପାଇଁ? ମୋର ସମସ୍ତ ଚିନ୍ତା ତାଙ୍କରି ପାଦତଳେ ଅର୍ପଣ କରିଦେବି।'

ମୁଁ ପଚାରିଲି, 'ଦେବି! ତୁମେ ଜଣେ ସ୍ତ୍ରୀଲୋକ ଓ ଏକୁଟିଆ, ତୁମକୁ ସୁବିଧା ଅସୁବିଧାରେ ସୁରକ୍ଷା କିଏ କରିବ? ଜଣେ ଏକାକିନୀ ସ୍ତ୍ରୀ ପାଇଁ ସର୍ବତ୍ର ଭୟ ହିଁ ଭୟ ରହିଛି। ବିଶେଷ କରି ତୁମେ ନିନ୍ଦିତ ବେଶ୍ୟାବୃତ୍ତି କରିଛ। ଲୋକେ ତୁମକୁ ଦେଖି ହସିବେ ଆଉ ଯେଉଁଠି ବସି ପଡ଼ିବ ସେଠାକାର ମାଟି ମଧ୍ୟ ତୁମକୁ ନାକ ଟେକିବ।'

ପିଙ୍ଗଳା କାନ୍ଦି କାନ୍ଦି ଉତ୍ତର ଦେଲା, "ବ୍ରହ୍ମନ୍! ଏ ସଂସାରରେ କିଏ କାହାକୁ ରକ୍ଷା କରିବାକୁ ସମର୍ଥ! ଯେ କହେ, 'ମୁଁ ତୁମକୁ ରକ୍ଷା କରିବି, ସେ ମିଥ୍ୟାବାଦୀ; କପଟୀ ଓ ସ୍ୱାର୍ଥପର। ବିଷୟ ବାସନାରେ ଯାହାର ବିବେକବୁଦ୍ଧି ନଷ୍ଟ ହୋଇସାରିଛି, ଯାହାକୁ କାଳସର୍ପ ଦଂଶନ କରିସାରିଛି ସେଭଳି ଲୋକଙ୍କୁ ଏହି ଅଗାଧ ସଂସାର ସାଗରରୁ କେବଳ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କେହି ପ୍ରାଣୀ ରକ୍ଷା କରିପାରିବ ନାହିଁ। ହରି ହିଁ ସମସ୍ତଙ୍କର ରକ୍ଷକ। ସେ କେବଳ, ସମସ୍ତଙ୍କୁ ରକ୍ଷା କରିପାରିବେ। ମିଥ୍ୟା ଅଭିମାନର ବଶବର୍ତ୍ତୀ ହୋଇ ଲୋକେ ବୃଥା ଆସ୍ଫାଳନ କରିଥାନ୍ତି। ଇନ୍ଦ୍ରିୟ ଓ ବିଷୟ ବାସନାରେ ଆସକ୍ତ ଥିବାଯାଏ ଜୀବ ପରାଧୀନ ହୋଇ ରହେ। ଧନ ଲୋଭରେ ସେ ଧନିକର ତୋଷାମଦ ଗାନ କରେ। ସୁନ୍ଦରୀ ସ୍ତ୍ରୀ ପଛରେ କୁକୁର ଭଳି ବୁଲୁଥାଏ ଓ ପ୍ରତିଷ୍ଠିତ ବ୍ୟକ୍ତିର ପଦଲେହନ କରେ। ସାରକଥା ହେଉଛି, **ଯେ ପର୍ଯ୍ୟନ୍ତ ମନରେ ବିଷୟ ଭୋଗ ଇଚ୍ଛା ରହିଛି ସେ ପର୍ଯ୍ୟନ୍ତ ପରାଧୀନତା ରହିବ। ଜୀବ ବିଷୟବନ୍ଧନରୁ ମୁକ୍ତ ହେବାପରେ ସ୍ୱାଧୀନ ହୋଇପାରିବ, ଏବଂ ନିଜେ ନିଜକୁ ରକ୍ଷା କରିପାରିବ।** ଯେ ନିଜେ ସୁରକ୍ଷିତ, କେବଳ ତା'ଠାରୁ ଆମେ ସୁରକ୍ଷାର ଆଶା କରିବା। ଯେ ନିଜେ ସର୍ପବିଷରେ ଜର୍ଜରିତ ସେ ଅନ୍ୟକୁ କିପରି ସର୍ପଠାରୁ ରକ୍ଷା କରିପାରିବ? ତେଣୁ,, ସର୍ବରକ୍ଷକ ହିଁ ମୋତେ ରକ୍ଷା କରିବେ। **ଯେ ଜଗତର ରକ୍ଷକଙ୍କୁ ନିଜର ରକ୍ଷକଭାବେ ସ୍ୱୀକାର କରିସାରିଛି, ତା'ର କେବେହେଲେ ପ୍ରମୋଦ ହେବାନାହିଁ। ଯାହାର ରକ୍ଷକ ଅବିନାଶୀ, ସେ ନଶ୍ୱର କ୍ଷୁଦ୍ର ସଂସାରୀ ଜୀବଠାରୁ ସୁରକ୍ଷାର ଆଶା କାହିଁକି କରିବ?** ହେ ପ୍ରଭୋ! ଆପଣ ଆଶୀର୍ବାଦ ଦିଅନ୍ତୁ, ମୁଁ ସେହି ସର୍ବାନ୍ତର୍ଯ୍ୟାମୀ ଲକ୍ଷ୍ମୀରମଣଙ୍କୁ ମୋର ସର୍ବସ୍ୱ ବୋଲି ଭାବି ମୋର ସୁରକ୍ଷା ଓ ଯୋଗକ୍ଷମର ସମସ୍ତ ଭାର ସମର୍ପଣ କରେ।"

ଅବଧୂତ ଦତ୍ତାତ୍ରେୟ ମୁନି ରାଜା ଯଦୁଙ୍କୁ କହୁଛନ୍ତି, "ରାଜନ୍! ସେହି ବେଶ୍ୟାର ବୈରାଗ୍ୟ ବିଷୟରେ ଦୃଢ଼ ନିଶ୍ଚୟ ହୋଇଥିବାର ଜାଣି ମୁଁ ବିଶେଷ ଆନନ୍ଦିତ ହେଲି। ମୁଁ ତାକୁ ସେହି ମୁହୂର୍ତ୍ତରୁ ଗୁରୁଭାବେ ସ୍ୱୀକାର କରିଛି। ସେ ମୋତେ ଏହି ଶିକ୍ଷା ଦେଇଛି ଯେ, **ସଂସାରୀ ଲୋକଠାରୁ କିଛି ଆଶା କରିବା ହିଁ ଦୁଃଖର କାରଣ। ସବୁଠାରୁ ନିରାଶ ହୋଇ କେବଳ ଭଗବାନଙ୍କ ଶରଣ କାମନା ଦ୍ୱାରା ହିଁ ପରମସୁଖ ଲାଭ ହେବ।** ଦେଖନ୍ତୁ, ସେହି ପିଙ୍ଗଳା ବେଶ୍ୟା ଯେ ପର୍ଯ୍ୟନ୍ତ କାମୁକ ପୁରୁଷମାନଙ୍କ ପ୍ରତି ଆଶା ରଖିଥିଲା ସେ ପର୍ଯ୍ୟନ୍ତ ନାନା ଦୁଃଶ୍ଚିନ୍ତା ଓ ଦୁଃଖରେ ତା'ର କାଳ କଟୁଥିଲା। କିନ୍ତୁ ଯେଉଁ ସମୟଠାରୁ ସମସ୍ତଙ୍କଠାରେ ନ୍ୟସ୍ତ ଆଶା ତୁଟାଇଦେଲା, ସେହିଠାରୁ ସେ ପ୍ରକୃତ ସୁଖ ଲାଭ କଲା। ସେ ପୂରାପୂରି ନିଶ୍ଚିନ୍ତ ହୋଇଗଲା। ମୁଁ ତାକୁ କହିଲି, 'ଆଚାର୍ଯ୍ୟେ! ମୁଁ ତୁମଠାରୁ ପ୍ରକୃତ ଶିକ୍ଷା ଗ୍ରହଣ କଲି। ତୁମେ ଆଜିଠାରୁ ମୋର ଆଚାର୍ଯ୍ୟା ହେଲ।'

ପିଙ୍ଗଳା ମୋର ଦୁଇପାଦ ଧରି କହିଲା, ''ବ୍ରହ୍ମନ୍! ଆପଣ ଏପରି କାହିଁକି କହୁଛନ୍ତି। ଆପଣ ସମସ୍ତଙ୍କର ଗୁରୁ। ଜ୍ଞାନୋଦୟ ହେବାପରେ ଗୁରୁ ଓ ଶିଷ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ରହେନାହିଁ। ଏହି ଶିକ୍ଷାଦେବା ନିମିତ୍ତ ଆପଣ ମୋତେ ଗୁରୁଭାବେ ସମ୍ବୋଧନ କରୁଛନ୍ତି। ହେ ବ୍ରହ୍ମନ୍! ମୁଁ ଆପଣଙ୍କ ଉପଦେଶ ଅନୁସାରେ ଅନ୍ତରାତ୍ମାକୁ ସଦ୍‌ଗୁରୁଭାବେ ସ୍ୱୀକାର କରୁଛି।' ଏହାକହି ସେ ମୋର ପାଦପୂଜା କଲା। ରାତି ହୋଇଥିବାରୁ ମୁଁ ସେଠାରେ ଅଧିକ ସମୟ ରହିବାକୁ ଉଚିତ ମନେକଲି ନାହିଁ। ମୁଁ ତା' ଘରୁ ଚାଲି ଆସିବା ମାତ୍ରେ ଲକ୍ଷ୍ୟକଲି ପିଙ୍ଗଳା ନିଜ ଶେଯରେ ଗାଢ଼ ନିଦରେ ଶୋଇଗଲା। ଚିନ୍ତା ଥିଲେ ନିଦ ହୁଏନାହିଁ କିନ୍ତୁ ନିଶ୍ଚିନ୍ତ ହୋଇଯିବାରୁ ପିଙ୍ଗଳା ଗଭୀର ନିଦ୍ରାରେ ଶୋଇଗଲା। ଚିନ୍ତା ଥିଲେ ନିଦ ହୁଏନାହିଁ। କିନ୍ତୁ ନିଶ୍ଚିନ୍ତ ହୋଇଯିବାରୁ ପିଙ୍ଗଳା ଗଭୀର ନିଦ୍ରାରେ ଶୋଇପଡ଼ିଲା। ସୁସ୍ଥ ପୁରୁଷ ହିଁ ସୁଖସ୍ୱପ୍ନ ରହିତ ନିଦ୍ରା ଭୋଗ କରିଥାଏ। ପିଙ୍ଗଳା ବେଶ୍ୟାର ଆଉକିଛି ଚିନ୍ତାର କାରଣ ନଥିଲା। ସେହି ସମୟଠାରୁ ମୁଁ ତାକୁ ଗୁରୁଭାବେ ଗ୍ରହଣ କରିଛି।''

ମହାରାଜ ଯଦୁ କହିଲେ, ''ମହାଶୟ! ପୃଥିବୀଠାରୁ ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ସତରଜଣ ଗୁରୁଙ୍କଠାରୁ ଗ୍ରହଣ କରିଥିବା ଶିକ୍ଷା ବିଷୟରେ ବୁଝାଇ ମୋର ଅଜ୍ଞାନ ଦୂର କରିଛନ୍ତି। ବର୍ତ୍ତମାନ ଦୟାକରି କୁହନ୍ତୁ, ଆପଣ କୁରର ପକ୍ଷୀଠାରୁ କି ଶିକ୍ଷା ଲାଭ କଲେ ?''

ସୂତ ଶୌନକାଦି ମୁନିମାନଙ୍କୁ କହୁଛନ୍ତି, ''ହେ ମହର୍ଷିଗଣ! ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତର ଦେଇ ଅବଧୂତ ଯାହା କହିଥିଲେ ତାହା ମନଦେଇ ଶ୍ରବଣ କର।''

## ଛପ୍‌ପୟ

କରି କରି ପଶ୍ଚାତ୍ତାପ ପିଙ୍ଗଲା ଅତିଶୟ ରୋୟୀ।
ଆଶା ଛୁଟୀ ସୁଖୀ ଭଈ ଅତି ସୁଖତେଁ ସୋୟୀ॥
ଆଶା ମେ ହୀ ଦୁଃଖ ନିରାଶା ସୁଖ କୀ ଜନନୀ।
ପାବୈ ଫଲ ନର ଅବସି ହୋହି ଜାକୀ ଜସ କରନୀ॥
ଶୁଭ ଶିକ୍ଷା ନିରପେକ୍ଷତା, କୀ ବେଶ୍ୟା ଗୁରୁ ତେ ଲଈ।
କହୁଁ କୁରର ପକ୍ଷୀ କଥା, ଜୋ ମେରେ ସନ୍ମୁଖ ଭଈ॥



# କୁରର ପକ୍ଷୀ ଗୁରୁମୋର

**ସାମିଷଂ କୁରରଂ ଜଘ୍ନୁର୍ବଲିନୋ ଯେ ନିରାମିଷାଃ।**
**ତଦାମିଷଂ ପରିତ୍ୟେଜ୍ୟ ସ ସୁଖଂ ସମବିନ୍ଦତ।।** ★

[ଶ୍ରୀଭା.୧୧ସ୍କ, ୬ଅ, ୨ଶ୍ଳୋକ]

**ଛପ୍‌ପୟ**

ମାସଂଖଣ୍ଡ ଲୈ କୁରର ବେଗତେ ନଭମହଁ ଜାବୈ।
ମେରୋ ହୈ ଜିହ ମାଂସ ସୋଚି ଅତି ହିୟେ ସିହାବୈ।।
ଇତନେ ମେ କଛୁ ବଲୀ ବର୍ହିଗ ଉଡ଼ିକେ ଇତ ଆୟେ।
ନିରଖି ମାଂସ ହିୟ ଲୋକ ବଢ୍ୟୋ ଚୀନତ ସବ ଧାୟେ।।
ମାର ପରୈ ତୋଉ ନ ତଜୈ, କ୍ଷତ ବିକ୍ଷତ ତନୁ ହ୍ୱୈ ଗୟୋ।
କର୍‌ୟୋ ତ୍ୟାଗ ଜବ ବିବଶ ହ୍ୱୈ, ତବ ଅତି ଆନନ୍ଦିତ ଭୟୋ।।

ଆମେମାନେ ଧନ ସମ୍ପଦ ଓ ଭୋଗ୍ୟବସ୍ତୁ ସଂଗ୍ରହ କରୁଛୁ। ଏହାଦ୍ୱାରା ଆମେ କେବଳ ଧନ ବା ବସ୍ତୁ ସଂଗ୍ରହ କରୁ ନ ଥାଏ, ବାସ୍ତବରେ ଧନ ସହିତ ବହୁପ୍ରକାର ବିପଦକୁ ମଧ୍ୟ ସଂଗ୍ରହ କରୁଥାଉ। ଆମ ପାଖରେ ଥିବା ଜିନିଷ ଅନ୍ୟ ପାଖରେ ନ ଥିଲେ ଅନ୍ୟମାନେ ମନେ ମନେ ଈର୍ଷ୍ୟାନ୍ୱିତ ହୁଅନ୍ତି। ଏହା ଫଳରେ ଆମର ପଡ଼ୋଶୀ ମଧ ଆମର ଶତ୍ରୁତା ଆଚରଣ କରେ। ଶତ୍ରୁତାପୋଷଣ କରୁଥିବା ଭଳି ବ୍ୟକ୍ତି ଦୁର୍ବଳ ହୋଇଥିଲେ ମନେ ମନେ ଖରାପ ଭାବି ରହିଯାଏ। କିନ୍ତୁ ସେ ସବଳ ହୋଇଥିଲେ ସମସ୍ତ ଉପାୟ ଅବଲମ୍ବନ କରି ସେହି ଧନ ବା ବସ୍ତୁକୁ ଅଧିକାର କରିବା ପାଇଁ ଯତ୍ନଶୀଳ ହୁଏ। ସଂଗ୍ରହ କରି ଯିଏ ନିଶ୍ଚିନ୍ତ ହେବାପାଇଁ ଚାହିଁବ, ସେ କେବେ ତାହା ହୋଇପାରିବ ନାହିଁ। ସର୍ପଥିବା ଗୃହରେ ଯେପରି କେହି ନିଶ୍ଚିନ୍ତ ଭାବେ ରହିପାରେ ନାହିଁ ସେହିପରି, ଧନସମ୍ପତ୍ତି ସଂଚୟ କରି ରଖିଥିବା ବ୍ୟକ୍ତି ନିଶ୍ଚିନ୍ତ ହୋଇପାରେ ନାହିଁ। କେବଳ ସଞ୍ଚୟକାରୀ କାହିଁକି, ତା' ସହିତ ସଂସର୍ଗରେ ଆସୁଥିବା ବ୍ୟକ୍ତି ମଧ ବିଭିନ୍ନ ପ୍ରକାର ଆଶଙ୍କା ମଧରେ କାଳ ଅତିବାହିତ କରେ। ତେଣୁ, ସଞ୍ଚୟ କରି ସଞ୍ଚିତ ବସ୍ତୁଠାରୁ ଦୂରରେ ରହିଲେ, ଏବଂ ସଞ୍ଚୟୀ ବ୍ୟକ୍ତି ସହିତ ଅନୁରାଗ ପୂର୍ଣ୍ଣ ସଂସର୍ଗ ନ ଥିଲେ ଲୋକ ନିଶ୍ଚିନ୍ତ ରହିପାରେ।

---



ପକ୍ଷୀଙ୍କ ମଧ୍ୟେ ବଳୀୟାର । ସ୍ୱଭାବେ ପ୍ରଚଣ୍ଡ କୁରର ।।
ନିତ୍ୟେ ମାରଇ ନାନାପକ୍ଷୀ । ଜୀବନ ପୋଷେ ମାଂସ ଭକ୍ଷି ।।
ସେ ପୁଣି ନିତ୍ୟେ ପକ୍ଷୀମାରେ । ମାଂସ ଭକ୍ଷଇ ନେଇ ପରେ ।।
କେବଳ ଶ୍ରମ ମାତ୍ର ସାର । ନ କରେ ଉଚିତ ଆହାର ।।
ଏ ଯେତେ ଦ୍ରବ୍ୟ ପରିଗ୍ରହ । ସର୍ବ ତୁ ଜାଣ ଦୁଃଖମୟ ।।
ଏ ଘେନି ଜ୍ଞାନୀ ଅକିଞ୍ଚନେ । ନିଶ୍ଚିନ୍ତେ ରହେ ସୁଖମନେ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କନ୍ଧ ୧୦ମ. ଅ]

ଶ୍ରୀ ଗୋବର୍ଦ୍ଧନ ତଳେ ଜଣେକ ବୈରାଗୀ ସାଧୁ ରହୁଥିଲେ । ତାଙ୍କ ବୈରାଗ୍ୟ ବିଷୟକ ଖ୍ୟାତି ଶୁଣି ଜଣେକା ରାଣୀ ସାଧୁଙ୍କୁ ଦର୍ଶନ କରିବା ପାଇଁ ଆସିଲେ । ମହାତ୍ମା କାହାରିଠାରୁ କିଛି ଗ୍ରହଣ କରୁ ନ ଥିଲେ । ତେଣୁ ରାଣୀ ସାଧୁଙ୍କ ପାଦତଳେ ପ୍ରଣାମ ଜଣାଇ ଚାଲିଗଲେ । ଏହି ସମ୍ବାଦ ପାଇ ରାତିରେ ଦଳେ ଚୋର ସାଧୁଙ୍କ ପାଖରେ ପହଞ୍ଚି ବହୁତ ମାରଧର କଲେ । ସେମାନେ କହିଲେ, 'ରାଣୀ ତୁମକୁ କ'ଣ ଦେଇଛନ୍ତି ? ସେ ନିଶ୍ଚୟ ବହୁତ ଧନରତ୍ନ ଦେଇଥିବେ ।' ସାଧୁ ଉତ୍ତର ଦେଲେ, 'ସେ ମୋତେ କିଛି ଦେଇନାହାନ୍ତି ।' ଚୋରମାନେ କହିଲେ 'ସେ ତୁମର ଭକ୍ତ, ସେ କିଛି ନ ଦେଲେ କିମିତି ?' ଯାହାହେଉ ଶେଷରେ ସେମାନେ ମହାତ୍ମାଙ୍କୁ ଛାଡ଼ି ଚାଲିଗଲେ । ସେହିଦିନଠାରୁ ସାଧୁ ମହାରାଜ ଶ୍ରୀ ଗୋବର୍ଦ୍ଧନ ପରିତ୍ୟାଗ କରି ବୃନ୍ଦାବନରେ ଯାଇ ରହିଲେ ।

ଜଳ ସ୍ୱାଭାବିକ ଗତି ହେଉଛି ତଳକୁ । ସେଥିପାଇଁ ବିଶେଷ କିଛି ପ୍ରଯତ୍ନ କରିବାକୁ ପଡ଼େ ନାହିଁ । ସେହିପରି ମନୁଷ୍ୟ ବିଷୟବାସନା ପ୍ରତି ସ୍ୱଭାବତଃ ଆସକ୍ତ ହୋଇଥାଏ । ଉଚ୍ଚ ଭୂମିକୁ ଜଳ ବୁହାଇନେବାପାଇଁ ଯେପରି ଯତ୍ନ କରିବାକୁ ହୁଏ, ବୈରାଗ୍ୟ ପାଇଁ ସେହିପରି କଠୋର ସାଧନା କରିବାକୁ ପଡ଼େ । ସମସ୍ତେ ଶାନ୍ତି ଚାହାନ୍ତି । ତ୍ୟାଗ ଓ ବୈରାଗ୍ୟ ବିନା ଶାନ୍ତି ପାଇବା ଅସମ୍ଭବ । ତେଣୁ, ଜ୍ଞାତସାରରେ ହେଉ ଅଜ୍ଞାତସାରରେ ହେଉ, ଇଚ୍ଛା ଥାଉ ବା ନ ଥାଉ ସମସ୍ତେ ତ୍ୟାଗ ଓ ବୈରାଗ୍ୟର ଗୁରୁତ୍ୱ ଅନୁଭବ କରନ୍ତି । ସେଥିପାଇଁ ଜଣେ ତ୍ୟାଗୀ ବା ବୈରାଗୀକୁ ଦେଖିବାମାତ୍ରେ ସମସ୍ତେ ତାଙ୍କପ୍ରତି ଆକୃଷ୍ଟ ହେବା ଏକ ସ୍ୱାଭାବିକ ଘଟଣା । ଅନେକ ତ୍ୟାଗ ଦୀକ୍ଷାନେଇ ସାଧୁ ସଂସର୍ଗରେ ରହିବାକୁ ପସନ୍ଦ କରନ୍ତି । ଯଦି ସେହିଭଳି ତ୍ୟାଗୀର ସ୍ୱାର୍ଥ ବା ପରମାର୍ଥବଶତଃ ସଞ୍ଚୟ କରିବାର ପ୍ରବୃତ୍ତି ଜାଗ୍ରତ ହେବ, ତେବେ ତା'ର ସାଙ୍ଗସାଥୀମାନେ ହିଁ ଶତ୍ରୁତା ଆଚରଣ କରିବେ, ଏବଂ ମନେମନେ ତା' ପ୍ରତି ଈର୍ଷା କରିବାକୁ ଲାଗିବେ । ବିଷୟ ସଂଗ୍ରହ ହିଁ ଅଞ୍ଜନ ସଞ୍ଚୟ ତୁଲ୍ୟ । ତାହାର ସଂସର୍ଗରେ ଶରୀର କଳା ନ ହେଲେ ଲୁଗାପଟା ନିଶ୍ଚୟ କଳାହେବ । ବିଭିନ୍ନ ଅବତାର ମଧ୍ୟ ବିଷୟାସକ୍ତ ହୋଇ ନାନାବିଧ କଷ୍ଟ ଭୋଗ କରିଛନ୍ତି । ପରିଗ୍ରହ ହିଁ କ୍ଳେଶର ମୁଖ୍ୟ କାରଣ, ନୈମିଷାରଣ୍ୟବାସୀ ମୁନିମାନଙ୍କୁ ମହର୍ଷି ସୂତ କହୁଛନ୍ତି, ହେ ଋଷିଗଣ ! କୁରର ପକ୍ଷୀକୁ ଗୁରୁଭାବେ ସ୍ୱୀକାର କରି ଦତ୍ତାତ୍ରେୟ ମହାମୁନି ଯେଉଁ ଶିକ୍ଷାଲାଭ କରିଥିଲେ ତାହା ଯଦୁରାଜଙ୍କୁ ବୁଝାଇବାକୁ ଯାଇ କହିଲେ, "ହେ ରାଜନ୍ ! ଦିନେ ମୁଁ ଜଙ୍ଗଲରେ ବୁଲୁଥିଲି । ଏହି ସମୟରେ କୁରର ପକ୍ଷୀଟିଏ ମାଂସ ଖଣ୍ଡେ ଧରି ଉଡ଼ିଯାଉଥିବାର ଦେଖିଲି । ସେହି ସମୟରେ ଅନେକ ପକ୍ଷୀ ତାକୁ ଘେରିଯାଇଥିଲେ । ସେମାନଙ୍କ ପାଖରେ ମାଂସ ନ ଥିଲା । ସେମାନେ ସେହି ମାଂସଖଣ୍ଡିକ ପାଇବା ନିମିତ୍ତ ଉତ୍ସୁକ ଥିଲେ । ଜୀବର ସ୍ୱଭାବ ହେଉଛି, ଯାହା ସେ ଥରେ ମନରେ ଗ୍ରହଣ କରିନିଏ ବହୁ ଦୁଃଖକଷ୍ଟ ପାଇଲେ ବି ସେ ତାହା ଛାଡ଼ିପାରେ ନାହିଁ । ଅନ୍ୟ କେହି ତାକୁ ଚୋରାଇ ନେବ ତେବେ ଆମ ମନରେ ବହୁତ କଷ୍ଟ ଜାତ ହେବ । ବର୍ତ୍ତମାନ ଚିନ୍ତା କରି ଦେଖନ୍ତୁ, ସେ ଟଙ୍କା ଆମ ପାଖକୁ ଆସିବା ପୂର୍ବରୁ ଅନ୍ୟ କେଉଁଠି ଥିଲା । ଏବେ ମଧ୍ୟ କାହାରି ପାଖରେ ରହିଛି । **ଆମର ଦୁଃଖର କାରଣ ହେଉଛି ମମତା । ଯାହାର ଯେଉଁ ବସ୍ତୁ ପ୍ରତି ମମତା ଅଛି, ସେ ତାହା ତ୍ୟାଗ କରିବାକୁ କୁଣ୍ଠିତ ହୁଏ, ଏବଂ ସମସ୍ତ ଶକ୍ତି ପ୍ରୟୋଗପୂର୍ବକ ସେ ତା'ର ସୁରକ୍ଷା ପାଇଁ ଯତ୍ନକରେ । ଯେତେ କଷ୍ଟ ଧନସମ୍ପତ୍ତିର ସୁରକ୍ଷା ନିମିତ୍ତ ସହିବାକୁ ପଡ଼େ, ସେତେ କଷ୍ଟ ଧନ ଉପାର୍ଜନରେ ହୁଏନାହିଁ ।**

"ମାଂସ ଖଣ୍ଡିକ ଧରିଥିବା କୁରର ପକ୍ଷୀକୁ ଯେତେବେଳେ ଅନ୍ୟ ପକ୍ଷୀଗଣ ଘେରିଗଲେ ସେତେବେଳେ ସେ ବହୁକଷ୍ଟ ପାଇଲା । ଅନ୍ୟ ପକ୍ଷୀଗୁଡ଼ିକ ଥିଲେ ବଳୁଆ । ସେମାନେ କୁରର

ପ୍ରିୟ-ଭୋଜି ପକ୍ଷୀ ଉପରେ ଆକ୍ରମଣ ଆରମ୍ଭ କରିଦେଲେ। ଯେତେବେଳେ ସେ ଦେଖିଲା ସେହି ମାଂସ ଖଣ୍ଡିକ ପାଇଁ ତା'ର ପ୍ରାଣ ଯିବାକୁ ବସିଛି, ସେତେବେଳେ ପ୍ରାଣକୁ ମାଂସଠାରୁ ମନେକରି, ସେ ତାହା ଫିଙ୍ଗିଦେଲା। ପକ୍ଷୀମାନେ କୁରରକୁ ଛାଡ଼ି ସେହି ମାଂସ ଖଣ୍ଡିକ ପାଇବା ନିମିତ୍ତ ନିଜ ନିଜ ମଧ୍ୟରେ ସଂଘର୍ଷ ଆରମ୍ଭ କରିଦେଲେ। ମାଂସ ଫିଙ୍ଗିଦେଇ କୁରର ପକ୍ଷୀ ଶଙ୍କା, ଚିନ୍ତା, ଭୟ ଓ ଯାବତୀୟ ବିପତ୍ତିରୁ ମୁକ୍ତ ହେଲା। ଶିକ୍ଷା ପାଇଲି ଯେ, **ମାନବର ଯେଉଁ ଯେଉଁ ବସ୍ତୁ ଅଧିକ ପ୍ରିୟ, ଏବଂ ଯାହାପ୍ରତି ଅଧିକ ମମତା ଜାତ ହୁଏ ସେ ପ୍ରକାର ବସ୍ତୁ ସଞ୍ଚୟ କରିବା ହିଁ ଦୁଃଖର କାରଣ ହୁଏ।** ଏ ସଂସାରରେ ପୁଅ ସବୁଠାରୁ ପ୍ରିୟ। ଗର୍ଭରେ ଉଦୟଠାରୁ ଜନ୍ମ ପର୍ଯ୍ୟନ୍ତ ସେ ବହୁ ଦୁଃଖ ଦିଏ। ଜନନୀ ଗର୍ଭାବସ୍ଥାରେ ବହୁ ଦୁଃଖ ଭୋଗକରେ। ବିଶେଷ କରି ଜନ୍ମ ସମୟରେ ମା'ର କ୍ଳେଶ ଅବର୍ଣ୍ଣନୀୟ। କେହି କେହି ଏହି ସମୟରେ ଜୀବନ ମଧ୍ୟ ତ୍ୟାଗ କରିଥାନ୍ତି। ପୁତ୍ରଜନ୍ମ ପରେ ତା'ର ଲାଳନ ପାଳନରେ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼େ। ପୁଅ ଅଯୋଗ୍ୟ ହେଲେ ପିତାମାତାଙ୍କ ହୃଦୟ ଅହୋରାତ୍ର ଚିନ୍ତାଗ୍ନିରେ ଜଳୁଥାଏ। ପୁଅ ଯୋଗ୍ୟ ହେଲେ ତା ପ୍ରତି ମମତା ବଢ଼ିଯାଏ ଏବଂ ତା'ର ସୁଖ ସୁବିଧା ପାଇଁ ଦିନରାତି ବ୍ୟସ୍ତ ରହିବାକୁ ହୁଏ। ଯଦି ଅକାଳରେ ପୁତ୍ରର ମୃତ୍ୟୁ ହୁଏ, ତେବେ ମାତାପିତା ସାରାଜୀବନ ଦୁଃଖରେ କଟାନ୍ତି। ମାତାପିତାଙ୍କ ବ୍ୟତୀତ ପୁତ୍ର ଶୋକ ଅନ୍ୟ କେହି ଅନୁଭବ କରିପାରିବ ନାହିଁ। ସେହିପରି **ଧନ ଅତ୍ୟନ୍ତ ପ୍ରିୟବସ୍ତୁ। ଧନର ସଂଗ୍ରହ, ସଞ୍ଚୟ, ବ୍ୟୟ ଓ ସୁରକ୍ଷା ଅତୀବ କଷ୍ଟକର ବ୍ୟାପାର। ଧନବାନ୍ ସର୍ବଦା ଶଙ୍କିତ ଚିତ୍ତରେ ଥାଏ।** ରାଜା, ଚୋର, ଶତ୍ରୁ, ସମ୍ପର୍କୀୟ, ମିତ୍ର, ପଶୁପକ୍ଷୀ ଏପରିକି ନିଜଠାରୁ ମଧ୍ୟ ଧନୀର ଭୟଜାତ ହୁଏ। ଧନୀଲୋକ ସଭାସମିତି, ଅର୍ଥପ୍ରାର୍ଥୀ, ବନ୍ଧୁବାନ୍ଧବ ପ୍ରଭୃତିଙ୍କଠାରୁ ନିଜକୁ ଗୋପନ ରଖିବାକୁ ଶତ ଯତ୍ନ କରିଥାଏ। ଧନ କଷ୍ଟ ହେଲେ ଧନୀର ପ୍ରାଣାନ୍ତକ କଷ୍ଟହୁଏ ଏବଂ ଅନେକ ପାଗଳ ହୋଇଯାଆନ୍ତି। ବହୁଲୋକ ଜୀବନ ମଧ୍ୟ ତ୍ୟାଗ କରନ୍ତି। ତେଣୁ, ସଞ୍ଚୟ ହିଁ ଦୁଃଖର ମୂଳକାରଣ। ଏହାଜାଣି ଯେ ଦରିଦ୍ରଭାବ ଧାରଣ କରେ ଓ ମମତା ରହିତ ହୁଏ ସେ ସବୁଠାରୁ ସୁଖୀ। ନିର୍ଦ୍ଧନ ଧନପ୍ରାପ୍ତି ଆକାଂକ୍ଷାରେ ଦୁଃଖୀ ହୁଏ। କାରଣ ଧନ ଅର୍ଜ୍ଜନ କରିବା ପାଇଁ ଦରିଦ୍ର ଏକାନ୍ତ ଅସମର୍ଥ। କିନ୍ତୁ **ଧନାର୍ଜ୍ଜନରେ ସମର୍ଥ ଥାଇ ମଧ୍ୟ ଯେ ତାହା ତ୍ୟାଗ କରେ, ସେହିଁ ପ୍ରକୃତ ସୁଖଲାଭ କରେ।** କୁରର ପକ୍ଷୀ ମାଂସ ଖଣ୍ଡିକ ନେଇ ଆସିଥିଲା, କିନ୍ତୁ ସେଇଥିପାଇଁ ବିପଦ ଆସୁଥିବା ଦେଖି ସେ ତାହା ତ୍ୟାଗକରି ସୁଖୀ ହେଲା। ତେଣୁ, ସଞ୍ଚିତ ବସ୍ତୁକୁ ଯଥାର୍ଥଭାବେ ବିନିଯୋଗ କରି ଲୋକ ପ୍ରକୃତରେ ସୁଖୀ ହୁଏ।''

ସୂତ କହୁଛନ୍ତି, ''ହେ ମୁନିଗଣ! ଏହାପରେ ରାଜା ଯଦୁଙ୍କ ପ୍ରଶ୍ନର ଉତ୍ତର ଦେଇ ଦତ୍ତାତ୍ରେୟ ଅବଧୂତ ବାଳକଠାରୁ ଗ୍ରହଣ କରିଥିବା ଶିକ୍ଷା ପ୍ରସଙ୍ଗରେ ଯାହା କହିଥିଲେ ତାହା ଆପଣମାନେ ପ୍ରକୃତିସ୍ଥ ହୋଇ ଶ୍ରବଣ କରନ୍ତୁ।''

**ଛପ୍ପୟ**

ଶିକ୍ଷା ମୌନେ ଲଇ କରୈ ନହିଁ ଯଦି ସଂଚୟ ଧନ।
ଜୋ ଜୋ ସଂଚୟ କରୈ ରହୈ ତାହୀ ମହଁ ନିଜ ମନ॥
ଚିନ୍ତା ଶଙ୍କା ଲୋଭ ହୋହି ଭୟ ଧନତୈ ନିତ ନିତ।
ଧନ ଲୋଭୀ ବହୁ ରହୈ ଧନୀ କେ ପୀଛେ ଉତ ଇତ॥
କୁରର ସରିସ ସଂଗ୍ରହ କରୈ, ମାର ଖାଇଗୋ ସୋ ଅବସି।
ନିସକିଞ୍ଚନ ଅତି ସୁଖ ଲହୈ, ବାହ୍ୟାମୃତ ସାଗର ପ୍ରବସି॥